ଲେଖକ :
**ପଣ୍ଡିତ ନୀଳମଣି ମିଶ୍ର**
କ୍ୟୁରେଟର୍, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

ପ୍ରକାଶକ :
**ସୁଶ୍ରୀ ପ୍ରକାଶନୀ**
ଭୁବନେଶ୍ୱର-୧୪

ମୁଦ୍ରଣ :
**ଶ୍ରୀ ଅରବିନ୍ଦ ପ୍ରିଣ୍ଟିଂ ପ୍ରେସ୍**
ରାଜାବଗିଚା, କଟକ-୯

ପ୍ରଥମ ସଂସ୍କରଣ :
ଜୁନ୍, ୧୯୮୨

ମୂଲ୍ୟ : ଟ ୧୫-୦୦
ସାଦା ବନ୍ଧେଇ : ଟ ୧୩-୫୦

# ଅଭିମତ

**Shri Jugal Kishore Pattanaik**
Minister of State
Labour & Employment, Tourism,
Sports & Culture, Orissa.

Bhubaneswar
The 9th June 1982

ଓଡ଼ିଶାର ପ୍ରଥମ ଗୀତାଭିନୟ ପ୍ରଣେତା ରୂପେ ଉତ୍କଳ ଅନ୍ତର୍ଗତ ନଲାଙ୍ଗ-ନିବାସୀ ଜଗନ୍ନାଥ ପାଣି ସମଗ୍ର ଓଡ଼ିଶା ତଥା ଓଡ଼ିଶା ବାହାରେ ସୁପରିଚିତ ଥିଲେ । ତାଙ୍କ ଲିଖିତ ବହୁ ଗୀତାଭିନୟ ଓଡ଼ିଆ ନାଟ୍ୟଜଗତକୁ ଅନୁପ୍ରାଣିତ କରିଛି ।

ଯାଜପୁରନିବାସୀ ଗୋପାଳ ଦାସ ବଙ୍ଗଳା ଯାତ୍ରାଦଳର ଜନକ ଥିଲେ ମଧ୍ୟ ତାଙ୍କ ପ୍ରଣୀତ କୌଣସି ଓଡ଼ିଆ ଗୀତାଭିନୟ ଆଜିଯାଏଁ ମିଳିନାହିଁ । କିନ୍ତୁ ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଜଗନ୍ନାଥ ପାଣିଙ୍କ ପ୍ରତିଭା ଉଭୟ ଓଡ଼ିଆ ନାଟକ ତଥା କାବ୍ୟ ଜଗତକୁ ସମୁଜ୍ଜ୍ୱଳ କରିଛି ।

ପଣ୍ଡିତ ଶ୍ରୀ ନୀଳମଣି ମିଶ୍ର କବି ତଥା ନାଟ୍ୟକାର ଜଗନ୍ନାଥ ପାଣିଙ୍କ ସମ୍ବନ୍ଧରେ ବିଭିନ୍ନ ପତ୍ରପତ୍ରିକାରେ ଅନେକ ପ୍ରବନ୍ଧ ପ୍ରକାଶ କରିଛନ୍ତି । ତାଙ୍କ ପ୍ରଣୀତ ପ୍ରସ୍ତୁତ ପୁସ୍ତକଟି ଜଗନ୍ନାଥ ପାଣିଙ୍କ ପ୍ରତିଭା ସମ୍ବନ୍ଧରେ ଏକ ତଥ୍ୟମୂଳକ ଆଲୋଚନା ।

ଏହି ପୁସ୍ତକ ମାଧ୍ୟମରେ ଓଡ଼ିଶାର-ବଙ୍ଗ ସୁଧୀସମାଜ ଅଦ୍ୟାପି ଅନାଲୋଚିତ ପାଣିକବିଙ୍କ ପ୍ରତିଭାର ସମୁଚିତ ପରିଚୟ ପାଇପାରିବେ ବୋଲି ଆଶା କରେ ।

ତା ୯ । ୬ । ୮୨

ଯୁଗଳ ପଟ୍ଟନାୟକ

ପ୍ରତାଙ୍କର ସମୁଚିତ ପ୍ରଚ୍ଛଦର ଲାଗି ଯଥୋଚିତ ପ୍ରୟାସ କରିଛନ୍ତି । ସେ ପ୍ରସ୍ତୁତ ପୁସ୍ତକ ଉଦ୍ଦେଶ୍ୟରେ ଗୋଟିଏ ଶୁଭେଚ୍ଛା ବାର୍ତ୍ତା ଦେଇ ମୋତେ ଉତ୍ସାହିତ କରିଛନ୍ତି । ତେଣୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ବନ୍ଧୁ ଡକ୍ଟର ଭଗବାନ ପଣ୍ଡା ପାଣ୍ଡୁଲିପିଟି ଆମୂଳ ପାଠ କରି ଭ୍ରମ ସଂଶୋଧନ କରିଛନ୍ତି । ରାଜ୍ୟ ସଂଗ୍ରହାଳୟର ଶ୍ରୀମତୀ ମମତା ମିଶ୍ର ପାଣ୍ଡୁଲିପି ପ୍ରସ୍ତୁତରେ ସାହାଯ୍ୟ କରି ମୋର ଶ୍ରମ ଲାଘବ କରିଛନ୍ତି । ବନ୍ଧୁସମାଲୋଚକ ଡକ୍ଟର ଶ୍ରୀ କୃଷ୍ଣ ଚରଣ ବେହେରା ଓ ଡକ୍ଟର କ୍ଷେତ୍ରବାସୀ ନାୟକ କବି ଜଗନ୍ନାଥ ପାଣିଙ୍କ ସମ୍ବନ୍ଧରେ ଆହୁରି ତଥ୍ୟମୂଳକ ଆଲୋଚନା କରିବା ଲାଗି ମୋତେ ପ୍ରେରଣା ଦେଇଛନ୍ତି । ତେଣୁ ଆଜି ଏହି ଅବସରରେ ମୁଁ ସେମାନଙ୍କୁ ଧନ୍ୟବାଦ ଜଣାଉଛି ।

ପରିଶେଷରେ ଓଡ଼ିଶାର ବିଜ୍ଞ ସୁଧୀସମାଜ ମୋ ପୁସ୍ତକ ପୁସ୍ତିକା ପାଠକରି ମୋତେ ବାରମ୍ବାର ସମୁତ୍ସାହିତ କରିଛନ୍ତି । ସେହିମାନଙ୍କ ବରଦ ହସ୍ତରେ ମୋର ଏହି ଆଲୋଚନାଟି ଟେକି ଦେଉଛି । ସେମାନେ ପ୍ରସ୍ତୁତ ପୁସ୍ତକଟିକୁ ଆଗ୍ରହରେ ପାଠକଲେ ମୋର ଶ୍ରମ ସାର୍ଥକ ହେବ ।

ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର
ସ୍ନାନପୂର୍ଣ୍ଣିମା
ଛଅ ଜୁନ୍ ଉଣେଇଶିଶହ ବୟାଅଶୀ

**ନୀଳମଣି ମିଶ୍ର**

# ସୂଚୀ

# କବି ଜଗନ୍ନାଥଙ୍କ ଜୀବନୀ

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରୁ ଆରମ୍ଭ କରି ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ ବହୁ କବି କୋବିଦ ଜନ୍ମଗ୍ରହଣ କରି ଓଡ଼ିଆ ସାହିତ୍ୟର ବହୁବିଧ ଉନ୍ନତି ସାଧନ କରିଥିଲେ ହେଁ, ସେମାନଙ୍କ ସମ୍ବନ୍ଧରେ ପୂର୍ଣ୍ଣାଙ୍ଗ ଆଲୋଚନା ଅଦ୍ୟାପି ଶେଷ ହୋଇନାହିଁ, କିମ୍ବା ସେହି ଆଲୋଚନା ଶେଷ ହେବା ମଧ୍ୟ ସହଜସାଧ୍ୟ ବ୍ୟାପାର ନୁହେଁ । କାରଣ ପ୍ରାଚୀନ କବିମାନଙ୍କ ଲିଖିତ ଶତ ସହସ୍ର ଦୁର୍ଲ୍ଲଭ ଗ୍ରନ୍ଥ ଓଡ଼ିଶାର ପୁରପଲ୍ଲୀରେ ଅବହେଳିତ ଅବସ୍ଥାରେ ପଡ଼ିରହିଛି ଏବଂ ଜନସାଧାରଣଙ୍କ ରକ୍ଷଣଶୀଳ ମନୋଭାବ ଯୋଗୁ ସେଗୁଡ଼ିକ ଲୋକଲୋଚନର ଗୋଚରକୁ ଆସିବା ସମ୍ଭବପର ହୋଇପାରୁନାହିଁ ।

ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ଓଡ଼ିଶା ଇଂରେଜମାନଙ୍କ ପ୍ରତ୍ୟକ୍ଷ ଶାସନାଧୀନରେ ରହିବା ପରଠାରୁ ଓଡ଼ିଶାର ସେହି କାବ୍ୟିକ ଶାଶ୍ୱତଧାରା ବହୁ ପରିମାଣରେ ବ୍ୟାହତ ହୋଇଥିଲା । ପୂର୍ବପରି ଶାସକ ଗୋଷ୍ଠୀର ପୃଷ୍ଠପୋଷକତାର ଅଭାବରେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗର କ୍ରମବର୍ଦ୍ଧମାନ ଉନ୍ନତି ସାଧିତ ହେବା ସମ୍ଭବ ହେଲା ନାହିଁ । କ୍ରମେ ସେହି ପ୍ରାଚୀନ କାବ୍ୟ ରଚନାର ଶୈଳୀ ବିସ୍ମୃତିର ଅତଳଗର୍ଭରେ ବିଲୀନ ହେବାକୁ ଲାଗିଲା । ତେଣୁ ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧଟି ଓଡ଼ିଆ ସାହିତ୍ୟର ଏକ ଅନ୍ଧକାରମୟ ଯୁଗ ବୋଲି କହିଲେ ଆଦୌ ଅସମୀଚୀନ ହେବନାହିଁ ।

ସେହି ଅନ୍ଧକାରମୟ ଯୁଗର ଘନତମିସ୍ରା ମଧ୍ୟରେ ଯେଉଁମାନେ ଆଲୋକ ବର୍ତ୍ତିକା ଜାଳି ଓଡ଼ିଆ ସାହିତ୍ୟର-ଗଗନାଙ୍ଗଣରେ ଉଜ୍ଜ୍ୱଳ-ରଶ୍ମି-ରେଖା ଖେଳାଇ ଦେବାର ପ୍ରୟାସ କରିଥିଲେ ସେମାନଙ୍କ ମଧ୍ୟରେ କବି ଜଗନ୍ନାଥ ପାଣି ଅନ୍ୟତମ କୃତୀ ସାଧକରୂପେ ପରିଚିତ ।

ବାଲେଶ୍ୱର ଜିଲ୍ଲାର ଭଦ୍ରକ ତହସିଲ ଅନ୍ତର୍ଗତ ନଲାଙ୍ଗ ନାମକ ଗୋଟିଏ ଘଞ୍ଚ ଲୋକବସତି ପୂର୍ଣ୍ଣ ଗ୍ରାମ ଅଛି । ଗ୍ରାମଟି ଭଦ୍ରକ କଚେରୀଠାରୁ ଅନ୍ୟୁନ ସାତ କିଲୋମିଟର ଦୂରରେ ଜାତୀୟ ରାଜପଥ ଅର୍ଥାତ୍ ଲୋକ ପ୍ରଚଳିତ 'ଶ୍ରୀ ଜଗନ୍ନାଥ ସଡ଼କ' ଧାରରେ ଅବସ୍ଥିତ । ସେହି ଗ୍ରାମରେ କବି ଜଗନ୍ନାଥ ପାଣି ଜନ୍ମଗ୍ରହଣ କରିଥିଲେ । କେତେକ ଅନୁସନ୍ଧାନରୁ ଜଣାଯାଏ ଯେ, ସନ ୧୬୪୩ ସାଲ ମହାବିଷୁବ ସଂକ୍ରାନ୍ତିରେ କବି ଜଗନ୍ନାଥ ଭୂମିଷ୍ଠ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଭଗବାନ ଓ ମାତାଙ୍କ ନାମ ରଙ୍ଗବତୀ । କବି ଜଗନ୍ନାଥଙ୍କ ବଂଶଧରଙ୍କଠାରୁ ଶୁଣାଯାଏ ଯେ, ବହୁଦିନ ଧରି ଅନପତ୍ୟ ରହିବା ପରେ ଓଡ଼ିଶାର ବଡ଼ଠାକୁର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅସୀମ କରୁଣା ଫଳରେ, ନିଷ୍ଠାପର ସେବକ ସେବିକା ଭଗବାନ ପାଣି ଓ ରଙ୍ଗବତୀ ଦେବୀଙ୍କ କୋଳ ମଣ୍ଡନ କରି ଗୋଟିଏ ପୁତ୍ର ସନ୍ତାନ ଜାତ ହୋଇଥିଲା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଆଶୀର୍ବାଦରୁ ପୁତ୍ରଟିଏ ଜାତ ହୋଇଥିବାରୁ ପିତାମାତା ଓ ଆତ୍ମୀୟ ସ୍ୱଜନମାନେ ଶିଶୁଟିର ନାମକରଣ କରିଥିଲେ ଜଗନ୍ନାଥ ।

ଦୀର୍ଘଦିନର ଅନପତ୍ୟତା ପରେ ଗୋଟିଏ ପୁତ୍ର ସନ୍ତାନ ଜାତ ହୋଇଥିବାରୁ ପିତା ମାତାଙ୍କ ମନରେ ଆନନ୍ଦର ଉତ୍ସ କୂଳଲଙ୍ଘନ କରିଥିଲା ଏବଂ ଉଭୟ ପିତାମାତା ତଥା ଆତ୍ମୀୟସ୍ୱଜନ ପୁତ୍ରଟିକୁ ଅତି ଯତ୍ନରେ ପାଳନ କରିବାକୁ ଲାଗିଲେ । 'ଲାଳୟେତ୍ ପଞ୍ଚବର୍ଷାଣି' ନୀତିକୁ ଭୁଲିଯାଇ ସ୍ନେହାଧିକ୍ୟ ହେତୁରୁ ସନ୍ତାନକୁ ଅଧିକ ଆଦର ଯତ୍ନ କଲେ ବାଳକ କେବେହେଲେ ବିଦ୍ୟାପଠନ ପ୍ରତି ଆଗ୍ରହୀ ହୁଏନାହିଁ । ସେହିପରି ବିଦ୍ୟାରମ୍ଭର ବୟସ ହୋଇ ଯାଇଥିଲେ ହେଁ, 'ଏକୋଇରବଲା ବିଶିକେଶନ'କୁ ଦୃଷ୍ଟିର ଅନ୍ତରାଳକୁ ଛାଡ଼ିବାରେ ପିତାମାତା ଆଦୌ ପ୍ରସ୍ତୁତ ହେଲେନାହିଁ । ଯା'ହେଉ, ସାତ ଆଠ ବର୍ଷ ବୟସରେ ବାଳକ ଜଗନ୍ନାଥ ଗ୍ରାମ୍ୟ ଚାହାଳୀରେ ପ୍ରବିଷ୍ଟ ହୋଇଥିଲେହେଁ, ପିତାମାତା ତଥା ଅନ୍ୟାନ୍ୟ ଆତ୍ମୀୟସ୍ୱଜନଙ୍କ ମମତାଧିକ୍ୟରେ ସେ ପାଠପଢ଼ା ପ୍ରତି ଆଦୌ ମନୋଯୋଗୀ ହୋଇ ନ ଥିଲେ । ଶୁଣାଯାଏ, ବାଳକ ଜଗନ୍ନାଥ ବାର ବର୍ଷ ବୟସ ପର୍ଯ୍ୟନ୍ତ ଚାହାଳୀରେ ପାଠ ପଢ଼ି ମଧ୍ୟ ଓଡ଼ିଆ ବର୍ଣ୍ଣମାଳାର ସମ୍ୟକ୍ ଜ୍ଞାନାର୍ଜନ କରି ପାରି ନ ଥିଲେ । କୈଶୋର ବୟସରେ ପାଠପଢ଼ା ପ୍ରତି ପୁତ୍ରର ବିମୁଖତା ଲକ୍ଷ୍ୟ କରି ପିତା ଭଗବାନ ଅତ୍ୟନ୍ତ ବିବ୍ରତ ହୋଇପଡ଼ିଲେ ଏବଂ ନାନାପ୍ରକାର ଉପାୟ ଅବଲମ୍ବନ କରି ପୁତ୍ର ଜଗନ୍ନାଥର ମନୋଭାବ ପରିବର୍ତ୍ତନ କରିବାରେ ଅସମର୍ଥ ହୋଇ ଶେଷରେ ତାଡ଼ନା ଦେଇ ପାଠ ପଢ଼ାଇବାକୁ ଚେଷ୍ଟା କଲେ । ମାତ୍ର ସେଥିରେ ମଧ୍ୟ ବିଶେଷ

ଫଳ ହେଲା ନାହିଁ । ତେଣୁ ଅତ୍ୟନ୍ତ ମନସ୍ତାପର ସହିତ ପୁଅ ଜଗନ୍ନାଥଙ୍କୁ ଗୃହାଳୀରୁ ଉଠାଇ ଆଣି ବଂଶଗତବିଦ୍ୟା 'କର୍ମକର୍ମାଣି'ରେ ପାରଙ୍ଗମ କରାଇବାଲାଗି ପିତା ଭାଗବତ ପାଣି ନିଜେ 'ଅମର' 'ଜୁମର' ଓ ଅନ୍ୟାନ୍ୟ ମନ୍ତ୍ରାଦି ଶିକ୍ଷା ଦେବାକୁ ଲାଗିଲେ । କିନ୍ତୁ ସେଥିରେ ମଧ୍ୟ ଆଶାଜନକ ସୁଫଳ ଫଳିବାର ଲକ୍ଷଣ ଦେଖାଗଲା ନାହିଁ । ତନ୍ଦ୍ରୁ ପୁତ୍ରର ଆଚରଣରେ ପିତା ଓ ଆତ୍ମୀୟ ସ୍ୱଜନ ମର୍ମାହତ ହୋଇପଡ଼ିଲେ ଏବଂ ଚପଳମତି ଜଗନ୍ନାଥଙ୍କୁ ନାନାପ୍ରକାର ତିରସ୍କାର ବାଣୀ, ତାଙ୍କ କାର୍ଯ୍ୟକଳାପ ପ୍ରତି ଘୃଣାଭାବ ଓ ବିଦ୍ରୂପ ପ୍ରକାଶ କଲେ । ବାଳକ ଜଗନ୍ନାଥ ପରିବାର ଓ ଆତ୍ମୀୟ ସ୍ୱଜନଙ୍କ ନିନ୍ଦା ଓ କଟୂକ୍ତିରେ ଅତିଷ୍ଠ ହୋଇଉଠିଲେ ଏବଂ ପରିଶେଷରେ ସେ ପ୍ରାଣପଣ ଚେଷ୍ଟାକରି ବିଦ୍ୟାର୍ଜନ କରିବା ଲାଗି ପ୍ରତିଜ୍ଞାବଦ୍ଧ ହେଲେ । ଦିନେ ହଠାତ୍ ତାଙ୍କ ମନରେ ଏକ ଦିବ୍ୟଜ୍ଞାନ ଉଦୟ ହେଲା । ସେ ନଳାଙ୍ଗ ଗ୍ରାମରେ ପ୍ରତିଷ୍ଠିତ ବିଗ୍ରହ 'ନଳେଶ୍ୱର ମହାଦେବ'ଙ୍କ ମନ୍ଦିର ପ୍ରାଙ୍ଗଣରେ ବସି ସରସ୍ୱତୀ ମନ୍ତ୍ର ଜପ କରିବାକୁ ଲାଗିଲେ । ଶୁଣାଯାଏ, ବାଳକ ଜଗନ୍ନାଥ ଏକନିଷ୍ଠ ଭାବରେ ଅନଶନ ବ୍ରତ ପାଳନପୂର୍ବକ ଏକୋଇଶ ଦିନ କାଳ ମନ୍ତ୍ର ଜପ କରି ଦୈବାନୁଗ୍ରହ ଲାଭ କରିବାରେ ସଫଳକାମ ହୋଇପାରିଲେ ।

ତା' ପରେ ପରେ ଜଗନ୍ନାଥଙ୍କର ବିଦ୍ୟାପଠନ ପ୍ରତି ପ୍ରଗାଢ଼ ଅନୁରାଗ ଜାତ ହେଲା ଏବଂ ସେ ଅଳ୍ପ ଆୟାସରେ ବହୁ ବିଦ୍ୟା ଅର୍ଜନ କରିବାରେ ସକ୍ଷମ ହେଲେ । ଖୁବ୍ ଅଳ୍ପକାଳ ମଧ୍ୟରେ 'ଅମରକୋଷ', 'ଜୁମର ବ୍ୟାକରଣ', 'ଛନ୍ଦ ଶାସ୍ତ୍ର' ଓ 'ଅଳଙ୍କାର ଶାସ୍ତ୍ର' ଆଦିରେ ସେ ବ୍ୟୁତ୍ପନ୍ନ ହୋଇ ଉଠିଲେ । ବାଳକ ଜଗନ୍ନାଥ ଆତ୍ମୀୟସ୍ୱଜନମାନଙ୍କୁ ଚମତ୍କୃତ କରାଇ ଦେଇ ସୁନ୍ଦର ଭାବରେ ଉପେନ୍ଦ୍ର ଭଞ୍ଜ, ଯାମିନୀସିଂହାର, ଦୀନକୃଷ୍ଣ ଓ ଜୟଦେବ ଆଦି କବିଙ୍କ କବିତାମାନ ଅନର୍ଗଳ କଣ୍ଠସ୍ଥ କରି ସମସ୍ତଙ୍କୁ ଶୁଣାଇଥିଲେ । ଦିନକୁ ଦିନ ତାଙ୍କର ବିଦ୍ୱତ୍ତା ଓ ଅଲୌକିକ ପ୍ରତିଭାରେ କେବଳ ପରିବାରବର୍ଗ ତଥା ଆତ୍ମୀୟସ୍ୱଜନ କାହିଁକି, ଆଖପାଖ ଅଞ୍ଚଳର ଲୋକମାନେ ମଧ୍ୟ ବିସ୍ମିତ ହୋଇଉଠିଲେ ।

ବାଳକ ଜଗନ୍ନାଥଙ୍କୁ ମାତ୍ର ଷୋହଳ ବର୍ଷ ବୟସରେ ବିବାହିତ ଜୀବନ-ଯାପନ କରିବାକୁ ପଡ଼ିଥିଲା । ପିତାମାତାଙ୍କର ଆଶା ଓ ଆକାଙ୍କ୍ଷାର ପରିପୂରଣ ଲାଗି ସେ କୈଶୋର ବୟସରେ ସାଂସାରିକ ବନ୍ଧନରେ ଆବଦ୍ଧ ହୋଇଥିଲେହେଁ ବିଦ୍ୟାଚର୍ଚ୍ଚାରୁ ଆଦୌ ବିରତ ହୋଇ ନ ଥିଲେ । ଶେଷରେ ବିଦ୍ୟାଧ୍ୟୟନ ଓ ଶାସ୍ତ୍ରଚର୍ଚ୍ଚା କବି ଜଗନ୍ନାଥଙ୍କର ଏକ ବ୍ୟସନରେ ପରିଣତ ହେଲା । ସେ ଅନ୍ୟାନ୍ୟ ଗୃହକର୍ମ ପ୍ରତି ବିମୁଖ ହୋଇ ବିଦ୍ୟାଧ୍ୟୟନରେ ଲାଗିପଡ଼ିଲେ । ସରସ୍ୱତୀ ଦେବୀଙ୍କର

ଅପାର କରୁଣା ଓ ପୂର୍ବଜନ୍ମର ତପସ୍ୟା ଫଳରେ ବିଦ୍ୟାଚର୍ଚ୍ଚା ତଥା ଶାସ୍ତ୍ରଜ୍ଞାନ ଆହରଣ ପ୍ରତି ତାଙ୍କର ଯେଉଁ ପ୍ରଗାଢ଼ ଶ୍ରଦ୍ଧା ଜନ୍ମିଲା, ସେଥିର ସେ ପୂର୍ଣ୍ଣ ଉପଯୋଗ କରିବାରେ ଲାଗିଲେ । ବିବାହ ପରେ ପ୍ରାୟ ସତର ବର୍ଷ ବୟସରେ ସେ ବିଭିନ୍ନ କାବ୍ୟ, ବ୍ୟାକରଣ, ପୁରାଣ, ଛନ୍ଦ ପୁସ୍ତକ ଅଧ୍ୟୟନ କରି ଅତ୍ୟନ୍ତ ବ୍ୟୁତ୍ପନ୍ନ ହୋଇ ଉଠିଲେ । ସେତେବେଳେ ଓଡ଼ିଶାର କାବ୍ୟ ଗଗନରେ ଅର୍ଜ୍ଜୁନ ଦାସ, ନରସିଂହ ସେଣ, କାର୍ତ୍ତିକ ଦାସ, ଧନଞ୍ଜୟ ଭଞ୍ଜ, ବିଷ୍ଣୁ ଦାସ, ସାଲବେଗ, କୃଷ୍ଣ ଦାସ, ଉପେନ୍ଦ୍ର ଭଞ୍ଜ, ଘନ ଭଞ୍ଜ, ସାଧୁଚରଣ ବ୍ରହ୍ମା, ବନମାଳୀ ଦାସ, ଅଭିମନ୍ୟୁ ସାମନ୍ତସିଂହାର, ଭକ୍ତଚରଣ ଆଦି ମହାକବିମାନେ ଦେଦୀପ୍ୟମାନ ଗ୍ରହର ସଦୃଶ ଉଜ୍ଜ୍ୱଳ କିରଣ ପ୍ରଦାନରେ ଦୀପ୍ତିମନ୍ତ ହୋଇଥିଲେ । କବି ଜଗନ୍ନାଥଙ୍କର ଅଳ୍ପ ପୂର୍ବବର୍ତ୍ତୀ କବିସୂର୍ଯ୍ୟ ବଳଦେବ ରଥ, ରଘୁନାଥ ପରିଚ୍ଛା, ଗୋପାଳକୃଷ୍ଣ ପ୍ରଭୃତି ଓଡ଼ିଶାର ପୁରପଲ୍ଲୀରେ ବିଶେଷ ଖ୍ୟାତନାମା କବିରୂପେ ସୁନାମ ଅର୍ଜନ କରିଥା'ନ୍ତି । କବି ଜଗନ୍ନାଥ ପାଣି ଉତ୍ତର ଓଡ଼ିଶାର ଏକ ସମୃଦ୍ଧ ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେହେଁ, ତାଙ୍କର ପ୍ରଗାଢ଼ ଶ୍ରଦ୍ଧା ଓ ବିଦ୍ୟାନୁରାଗ ଯୋଗୁ ପୂର୍ବବର୍ତ୍ତୀ ଓ ସମସାମୟିକ କବିମାନଙ୍କ କବିତା ପ୍ରତି ଅତ୍ୟନ୍ତ ଅନୁରାଗୀ ହୋଇ ଉଠିଲେ ଏବଂ ସେମାନଙ୍କ ଛାନ୍ଦ, ଚମ୍ପୂ ଆଦି ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକୁ କଣ୍ଠସ୍ଥ କରି ଲୋକମାନଙ୍କୁ ଚମତ୍କୃତ କରାଉଥିଲେ । କେବଳ ସେତିକି ନୁହେଁ, ତତ୍କାଳୀନ ସମାଜରେ ଆଦୃତ ସାରଳା ଦାସଙ୍କ ରାମାୟଣ, ମହାଭାରତ, ବିଲଙ୍କା ରାମାୟଣ, ଚଣ୍ଡୀ ପୁରାଣ, ବଳରାମ ଦାସଙ୍କ ଜଗମୋହନ ରାମାୟଣ, ଅଚ୍ୟୁତାନନ୍ଦଙ୍କ ହରିବଂଶ, ଅତିବଡ଼ି ଜଗନ୍ନାଥ ଦାସଙ୍କ ଭାଗବତ ତଥା ପୀତାମ୍ବର ଦାସଙ୍କ ନୃସିଂହ ପୁରାଣ ଆଦି ପାଠ କରି ପୌରାଣିକ ଆଖ୍ୟାୟିକା ଗୁଡ଼ିକ ପ୍ରତି ସଚେତନ ହୋଇଥିଲେ । କୈଶୋର ବୟସରେ ନିତାନ୍ତ ଉଦ୍ଧତ ତଥା ବିଦ୍ୟାଭ୍ୟାସ ପ୍ରତି ବିମୁଖ ଯୁବକ ଜଗନ୍ନାଥଙ୍କ କଣ୍ଠରୁ ପ୍ରାଚୀନ କାବ୍ୟ କବିତା ଓ ପୌରାଣିକ ଆଖ୍ୟାନମାନ ଶ୍ରବଣ କରି ନିଜାଙ୍ଗ ଗ୍ରାମର ଅଧିବାସୀ ତଥା ଆଖପାଖ ଅଞ୍ଚଳର ଲୋକମାନେ ବିସ୍ମିତ ତଥା ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ନିଜର ଆତ୍ମୀୟସ୍ୱଜନ ତଥା ବନ୍ଧୁବାନ୍ଧବଙ୍କୁ ବିସ୍ମୟ ସାଗରରେ ବୁଡ଼ାଇ ଯୁବକ ଜଗନ୍ନାଥ ଶାସ୍ତ୍ରଚର୍ଚ୍ଚା ଓ ଜ୍ଞାନ ଆହରଣର ଉନ୍ନତ ସୋପାନରେ ପହଞ୍ଚିବା ସଙ୍ଗେ ସଙ୍ଗେ ସାଂସାରିକ ବନ୍ଧନରେ ରହି ପାରିବାରିକ ସୁଖ ସୁବିଧା ପ୍ରତି ଯତ୍ନବାନ୍ ହୋଇଥିଲେ ।

କବିଙ୍କର ବିବାହ ଭଦ୍ରକ ସହର ଉପକଣ୍ଠରେ ଥିବା ଗରଦପୁର ନାମକ ଗ୍ରାମରେ ହୋଇଥିଲା । ତାଙ୍କ ପତ୍ନୀଙ୍କ ନାମ ଥିଲା ପାଟଦେଈ । କାବ୍ୟ କବିତାଦିର

ରସ ଆସ୍ୱାଦନ ଏବଂ ନବଯୌବନା ପତ୍ନୀ ପାଟଦେବୀଙ୍କ ପ୍ରେମାନୁବନ୍ଧନରେ କବିଙ୍କର ଯୌବନତରୀ ଆନନ୍ଦ ସାଗର ମଧ୍ୟରେ ଅନୁକୂଳ ପବନର ମନ୍ଦମଧୁର ହିଲ୍ଲୋଳରେ ଜୀବନର ଲକ୍ଷ୍ୟ ପୂର୍ତ୍ତି ଉଦ୍ଦେଶ୍ୟରେ ଅଗ୍ରସର ହେବାକୁ ଲାଗିଲା ।

ତତ୍କାଳୀନ ସମାଜରେ, ବିବାହର ଅବ୍ୟବହିତ ସମୟ ମଧ୍ୟରେ ପତ୍ନୀ ସନ୍ତାନବତୀ ନହେଲେ କେବଳ ସ୍ୱାମୀ ନୁହନ୍ତି, ପରିବାରର ଶାଶୁ, ଶ୍ୱଶୁର, ଜାଆ, ନଣନ୍ଦ, ଏପରିକି ପାଖ ପଡ଼ିଶାଙ୍କର କଟୂକ୍ତିରେ ସ୍ତ୍ରୀକୁ ଶରବ୍ୟ ହେବାକୁ ପଡ଼େ । ଯୁବକ ଜଗନ୍ନାଥଙ୍କର ପ୍ରିୟତମା ପତ୍ନୀ ପାଟଦେବୀଙ୍କୁ ସେହିପରି ଦୁର୍ଦ୍ଦଶାଗ୍ରସ୍ତ ଜୀବନ ମଧ୍ୟରେ କାଳ ଯାପନ କରିବାକୁ ପଡ଼ିଲା । ବିବାହ ପରେ କେତେବର୍ଷ ସ୍ୱାମୀଙ୍କ ସ୍ନେହାନୁରାଗ ପାଇ ଅତି ଆନନ୍ଦରେ କାଳାତିପାତ କରିଥିଲେ ହେଁ କିଛିଦିନ ପରେ ତାଙ୍କ ଜୀବନ 'ସନ୍ତାନ ବିହୁନେ' ନୀରସ ବୋଧ ହେଲା । ଶାଶୁ ଶ୍ୱଶୁର, ପାଖ ପଡ଼ିଶାଙ୍କର ପ୍ରଚ୍ଛନ୍ନ ବାକ୍ୟବାଣ ଆଉ ସେ ଅଧିକକାଳ ସହ୍ୟ କରି ନ ପାରି, ସ୍ୱାମୀଙ୍କୁ ଦ୍ୱିତୀୟା ପତ୍ନୀ ଗ୍ରହଣ କରିବା ଲାଗି ପ୍ରବର୍ତ୍ତାଇଲେ । ସପତ୍ନୀ ଜ୍ୱାଳା ବରଂ ସହ୍ୟ, କିନ୍ତୁ ଏକ ସଂପନ୍ନ ପରିବାରରେ ନବଜାତ ଶିଶୁ ସନ୍ତାନର କ୍ରନ୍ଦନରୋଳ ବ୍ୟତୀତ ଘର ଯେପରି ମହାଶ୍ମଶାନତୁଲ୍ୟ ବୋଧହୁଏ, ସେ ପ୍ରକାର ଦୁଃଖମୟ ଜୀବନ-ଯାପନ ଲାଗି ପାଟଦେବୀ ଆଦୌ ପ୍ରସ୍ତୁତ ହେଲେନାହିଁ । ଧୀରେ ଧୀରେ ସେ ଏ ପ୍ରକାର ସନ୍ତାନ-ସନ୍ତତିହୀନ ଜୀବନ ଯାପନରେ ଅତିଷ୍ଠ ହୋଇ ଉଠିଲେ ଏବଂ ଦ୍ୱିତୀୟ ବିବାହ ଲାଗି ସ୍ୱାମୀଙ୍କୁ ଏକପ୍ରକାର ବାଧ୍ୟ କଲେ ।

ଦୈବଯୋଗକୁ ପାଟଦେବୀଙ୍କର କନିଷ୍ଠା ଭଗ୍ନୀ ସୁନା ବିବାହଯୋଗ୍ୟ ବୟସରେ ପଦାର୍ପଣ କରିଥାଏ । ପାଟଦେବୀ ସ୍ୱାମୀଙ୍କୁ କୌଣସି ପ୍ରକାରେ ବୁଝାଇ ଶୁଝାଇ ପିତ୍ରାଳୟକୁ ଗମନ କରି ନିଜ ପିତାମାତାଙ୍କ ଆଗରେ କାନ୍ଦି, ନିଜ ଜୀବନର ଦୁଃଖ କାହାଣୀ କହିବସିଲେ ଏବଂ ଅନ୍ୟ ଗୋଟିଏ ଘରୁ ଜଣେ ସ୍ତ୍ରୀ ଆସି ନିଜର ସପତ୍ନୀ ହୋଇ ତାଙ୍କ ଉପରେ ଦାଉ ସାଧି ବସିଲେ ଜୀବନ କେତେ ଦୁର୍ବହ ଓ କଷ୍ଟମୟ ହୋଇଉଠିବ, ସେ ସମ୍ବନ୍ଧରେ ପିତାମାତାଙ୍କୁ ଅବଗତ କରାଇ, ସାନ ଭଉଣୀ ସୁନାକୁ ସପତ୍ନୀ କରି ନେବାର ନିଜ ଅଭିଳାଷ ପ୍ରକାଶ କଲେ । ସେ ସମୟରେ ଏକାଧିକ ପତ୍ନୀ ଗ୍ରହଣ କରିବା ସମାଜ ଚକ୍ଷୁରେ ଆଦୌ ଦୂଷଣୀୟ ନଥିଲା । ଏ ପକେ, ନିଜର ସନ୍ତାନବତୀ ପତ୍ନୀ ଘରେ ଥାଉଁ ଥାଉଁ ଦ୍ୱିତୀୟ ଦାର ଗ୍ରହଣ କରିବା ଆଭିଜାତ୍ୟର ଚିହ୍ନରୂପେ ଗୃହୀତ ହେଉଥିଲା । ବିଶେଷତଃ ଆଜିକାଲି ପରି ସେ କାଳରେ ବଡ଼କୁଟୁମ୍ବ କିମ୍ବା ଏକାଧିକ ପତ୍ନୀ ଗୃହର ଭାରସ୍ୱରୂପ ନଥିଲା ଏବଂ ସମାଜ ମଧ୍ୟ ଏ ପ୍ରକାର କାର୍ଯ୍ୟକୁ ଅକୁଣ୍ଠ ସମର୍ଥନ ଜଣାଉଥିଲା । ତେଣୁ ସପତ୍ନୀର

ଲକ୍ଷଣାରେ ତୃତୀୟକ ନାରୀ ଗାଦି ଗାଦି ତାକ ଛାଡ଼ୁଥିଲେ ଏବଂ ସେ ପ୍ରକାର କଳ୍ପନାରେ ଅତ୍ୟନ୍ତ ଧୈର୍ଯ୍ୟଶୀଳା ଓ ସହନଶୀଳା ନାରୀ ମଧ୍ୟ ଅଙ୍କିତ ହୋଇ ଉଠୁଥିଲେ । ବେଳେବେଳେ ନିଜ ଗର୍ଭରୁ ସନ୍ତାନସନ୍ତତି ହେବାର କୌଣସି ଆଶା ନ ଦେଖି ଗୃହ ତଥା ବଂଶର ମାନମର୍ଯ୍ୟାଦା ଏବଂ ପରମ୍ପରାର ରକ୍ଷା ନିମିତ୍ତ ସପତ୍ନୀଜ୍ୱାଳାକୁ ମୁଣ୍ଡପାତି ସହିନେବାର ପଣ କରି, ଦ୍ୱିତୀୟ ବିବାହ କରି ବଂଶରକ୍ଷା କରିବା ଲାଗି ବହୁ ନାରୀ ସ୍ୱାମୀଙ୍କୁ ପ୍ରବର୍ତ୍ତାଉଥିଲେ । ଅବଶ୍ୟ ଏ ପ୍ରକାର ଉଦାହରଣ ବିରଳ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହି ମନୋଭାବରେ ପ୍ରଣୋଦିତା ହୋଇ ପାଟଦେବୀ ପିତାମାତା, ଶାଶୁଶ୍ୱଶୁର ଓ ସ୍ୱାମୀଙ୍କ ଅନୁମତିକ୍ରମେ ନିଜର ସାନ ଭଉଣୀ ସୁନାକୁ ସପତ୍ନୀରୂପେ ପାଇ ଗୌରବ ଅନୁଭବ କଲେ ।

ଦୁଇଟି ପତ୍ନୀଙ୍କୁ ସମଦୃଷ୍ଟିରେ ଦେଖି ଗୃହ ଜଞ୍ଜାଳ ନିର୍ଦ୍ୱନ୍ଦ୍ୱରେ ଚଳାଇବା ଏକ ଦୁରୂହ ବ୍ୟାପାର ହୋଇଥିଲେ ହେଁ, ଶାସ୍ତ୍ରଦର୍ଶୀ ଯୁବକ ଜଗନ୍ନାଥ ନିଜ ଜୀବନର ଆଦର୍ଶ ମାର୍ଗରେ ଅନୁପ୍ରାଣିତ ହୋଇ ଅତ୍ୟନ୍ତ ସରଳତା ତଥା ନିରାଡ଼ମ୍ବରତା ମଧ୍ୟରେ ଜୀବନ ନୌକାଟିକୁ ଧୀର-ମନ୍ଥର ଗତିରେ ଚଳାଇବାକୁ ସମର୍ଥ ହୋଇଥିଲେ । ପ୍ରକୃତରେ ଦେଖିବାକୁ ଗଲେ, ଏଥିରେ ଯୁବକ ଜଗନ୍ନାଥଙ୍କର ଯେତେ କୃତିତ୍ୱ ନଥିଲା, ତତୋଽଧିକ ଆନ୍ତରିକତା ଥିଲା ତାଙ୍କ ପ୍ରଥମା ପତ୍ନୀ ସହନଶୀଳା ପାଟ ଦେବୀଙ୍କର । ସେ ନିଜର ସାନ ଭଉଣୀ ସୁନାଦେବୀଙ୍କୁ ଅତ୍ୟନ୍ତ ଆଦର ଯତ୍ନରେ ପ୍ରତିପାଳନ କରି ବଂଶରକ୍ଷାର ମହନୀୟ ଆଦର୍ଶ ଉପସ୍ଥାପିତ କରିବାରେ ଟିକିଏ ହେଲେ ତ୍ରୁଟି କରିନଥିଲେ ।

ଯା'ହେଉ, ପାଟଦେବୀଙ୍କର ଆଶା ପୂର୍ଣ୍ଣ ହେଲା । ସାନ ଭଉଣୀ ସୁନାଦେବୀଙ୍କ ଗର୍ଭରୁ ତିନୋଟି ପୁତ୍ରସନ୍ତାନ ଜନ୍ମଲାଭ କଲେ । ପ୍ରଥମ ପୁତ୍ରର ନାମ ସାଗର ପାଣି, ଦ୍ୱିତୀୟ ପୁତ୍ରର ନାମ ସୁଦର୍ଶନ ପାଣି ଓ ତୃତୀୟ ପୁତ୍ରର ନାମ ପୁରୁଷୋତ୍ତମ ପାଣି । ସୁନାଦେବୀ କେବଳ ମାତ୍ର ଥିଲେ ତିନିଗୋଟି ପୁତ୍ରର ଜନ୍ମଦାତ୍ରୀ, କିନ୍ତୁ ସ୍ନେହମୟୀ ପାଟଦେବୀ ସେମାନଙ୍କର ଲାଳନପାଳନ ଓ ରକ୍ଷଣାବେକ୍ଷଣର ଦାୟିତ୍ୱ ବହନ କରିଥିଲେ । ଏହିପରି ଭାବରେ ଜଗନ୍ନାଥ ପାଣିଙ୍କର ସାଂସାରିକ ଜୀବନ ମହାସୁଖରେ ଅମୃତମୟ ହୋଇଉଠିଲା ।

ସାଂସାରିକ ବିଷୟ ବାସନାରେ ଲିପ୍ତ ଥାଇ ମଧ୍ୟ ସାଧକ ଜଗନ୍ନାଥ ଶାସ୍ତ୍ରାଭ୍ୟାସ ଓ ଗ୍ରନ୍ଥାଲୋଚନାରୁ ବିରତ ହୋଇ ନଥିଲେ । କେବଳ ପ୍ରାଚୀନ

ଗ୍ରନ୍ଥଚର୍ଚ୍ଚାରେ ତାଙ୍କ ବିଦ୍ୟାଲୋଚନା ସୀମିତ ହୋଇନଥିଲା । ସେ ପୂର୍ବସୂରୀମାନଙ୍କ ପଦାଙ୍କଅନୁସରଣ ଅବଲମ୍ବନରେ ପୁସ୍ତକରଚନା କରିବାରେ ମନ ବଳାଇଥିଲେ । ଆଜି କାଲିର ବିଦ୍ୱାନ୍‌ମାନଙ୍କ ପରି ବିଭିନ୍ନ ଉପାଧିରେ ଭୂଷିତ ହୋଇ କେବଳ ମାତ୍ର ଜୀବିକା ଉପାର୍ଜନକାଙ୍କ୍ଷୀ ବା ବୃତ୍ତିଭୋଗୀ ହେବାକୁ ସେକାଳର ଲୋକମାନେ ପ୍ରୟାସ କରୁନଥିଲେ । ସେମାନେ ବିଦ୍ୟାର୍ଜନ ଦ୍ୱାରା ନିଜ ଜୀବନକୁ ଚରିତାର୍ଥ କରିବା ସଙ୍ଗେ ସଙ୍ଗେ ଜନସାଧାରଣରେ ସେହି ଜ୍ଞାନରଶ୍ମିକୁ ବିକିରଣ କରି ଲୋକମାନଙ୍କ ମଧ୍ୟରେ ଅଜ୍ଞାନତାରୂପକ ଅନ୍ଧକାରକୁ ଦୂର କରିବାରେ ସମର୍ଥ ହୋଇଥିଲେ । ତେଣୁ ସେକାଳର ବିଦ୍ୱାନ୍, ଗୁଣୀ ଓ ପ୍ରତିଭାବାନ୍ ବ୍ୟକ୍ତିମାନେ ସାଂସାରିକ କର୍ମଜଞ୍ଜାଳ ମଧ୍ୟରେ ଯେତେ ବ୍ୟସ୍ତ ରହିଲେ ମଧ୍ୟ ନା କାହିଁକି, ନିଜ ଜ୍ଞାନରାଶିର ପରିପ୍ରକାଶ ପାଇଁ କିଛି ନା କିଛି ରଚନା କରୁଥିଲେ । ତା' ହୋଇ ନଥିଲେ ଆଜି ଆମ୍ଭମାନଙ୍କ ସମ୍ମୁଖରେ ପୂର୍ବସୂରୀମାନଙ୍କ ରଚିତ ବେଦ, ତନ୍ତ୍ର, ଜ୍ୟୋତିଷ, ଦର୍ଶନ, କାବ୍ୟ, ବ୍ୟାକରଣ, ଅଳଙ୍କାରାଦି ଶାସ୍ତ୍ର ଏତେ ବିପୁଳ ସଂଖ୍ୟାରେ ଦେଖା ଯାଉ ନଥାନ୍ତା । ସେହି ପରମ୍ପରା ଓ ଉଦ୍ଦୀପନାରେ ପ୍ରେରିତ ହୋଇ ଶାସ୍ତ୍ରଦର୍ଶୀ ଜଗନ୍ନାଥ ପାଣି ପୁସ୍ତକ ରଚନାରେ ମନବଳାଇଥିଲେ । ଶୁଣାଯାଏ, କବି ଜଗନ୍ନାଥ ପାଣି ପ୍ରଥମେ ରାମାୟଣ ଓ ତତ୍ପରେ ମହାଭାରତର ଅନୁବାଦ କରିଥିଲେ । ଅନ୍ୟ କେତେକଙ୍କ ମତରେ ରାମାୟଣ ଓ ମହାଭାରତ କବିଙ୍କର ଶେଷ ଜୀବନର ସାଧନା । ଆଜିକାଲି କବି ଜଗନ୍ନାଥଙ୍କ ନାମରେ ଭଣିତ ରାମାୟଣ ଯାଜପୁର ଓ ଭଦ୍ରକ ଅଞ୍ଚଳରେ କେତେକ ସ୍ଥାନରେ ଥିବାର ଖବର ମିଳେ । ଖୁବ୍ ସମ୍ଭବତଃ ତାହା ପ୍ରକାଶ ପାଇନାହିଁ । କିନ୍ତୁ କବିଙ୍କ ରଚିତ ମହାଭାରତର ସମ୍ପୂର୍ଣ୍ଣ ଅଷ୍ଟାଦଶପର୍ବ ମିଳୁ ନଥିଲେହେଁ, ରାଜ୍ୟ ସଂଗ୍ରହାଳୟରେ କର୍ଣ୍ଣ, ଶଲ୍ୟ, ଗଦା, କାର୍ତ୍ତିକିକା, ପଶା, ମୂଷଳୀ, ତୀର୍ଥ, ଅଶ୍ୱମେଧ ଓ ସ୍ୱର୍ଗାରୋହଣ ପର୍ବ ସଂରକ୍ଷିତ ହୋଇଛି । କବି ଜଗନ୍ନାଥ ମହାଭାରତର ସ୍ୱର୍ଗାରୋହଣ ପର୍ବ ଲେଖିଥିବାରୁ ଦୃଢ଼ଭାବରେ ମତ ଦେଇ ହୁଏ ଯେ ସେ ନିଶ୍ଚିତ ଭାବରେ ଆଦ୍ୟ, ମଧ୍ୟ, ସଭା, ଆରଣ୍ୟକ, ବିରାଟ, ଉଦ୍ୟୋଗ, ଭୀଷ୍ମ, ଦ୍ରୋଣ ଆଦି ପର୍ବ ଲେଖିଥିଲେ ଏବଂ ସେହି ପର୍ବ ଗୁଡ଼ିକ ହୁଏତ କିଛିଦିନ ମଧ୍ୟରେ ଆମର ହସ୍ତଗତ ହୋଇପାରେ । ଏତଦ୍‌ବ୍ୟତୀତ କବିଙ୍କ ରଚିତ 'ପ୍ରମୋଦ ଚନ୍ଦ୍ରମଣି' କାବ୍ୟ, ଗୁଣ୍ଡିଚା ବିଜେ, ଯଶୋଦା କୋଇଲି, ଚଉପଦୀ ରତ୍ନାବଳୀ ପ୍ରଭୃତି ଖଣ୍ଡକାବ୍ୟ ଓ କବିତାସଙ୍କଳନ ତଥା ଦକ୍ଷଯଜ୍ଞ, ସୀତା ବନବାସ, ଧ୍ରୁବଚରିତ, ସୁଭଦ୍ରା ପରିଣୟ, ପ୍ରହ୍ଲାଦ ଚରିତ, ବଳଙ୍କା ଚରିତ, ହାରାବତୀ ହରଣ, ଉଷାବତୀ ହରଣ, ପାରିଜାତ ହରଣ ପ୍ରଭୃତି ଗୀତାଭିନୟ ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ ହୋଇଛି । ଏହା ବ୍ୟତୀତ କବି ଜଗନ୍ନାଥ ପାଣିଙ୍କ ରଚିତ ଆହୁରି ଅନେକ ପୁସ୍ତକ ରହିଛି । ପ୍ରସଙ୍ଗକ୍ରମେ ସେଗୁଡ଼ିକ ସମ୍ବନ୍ଧରେ ଆଲୋଚନା କରାଯିବ ।

କବି ଜଗନ୍ନାଥ ପାଣିଙ୍କର ମନ କେବଳ ଏହି ଗ୍ରନ୍ଥଗୁଡ଼ିକ ରଚନା କରି ପରିତୃପ୍ତ ହେଲନାହିଁ । ସେ ଓଡ଼ିଶାର ପରମ୍ପରାକ୍ରମେ ଚାଲି ଆସୁଥିବା 'ଲୀଳା' ଗୁଡ଼ିକର ଅନୁକରଣରେ ଗୋଟିଏ ନାଟ୍ୟଦଳ ଗଠନ କଲେ ଏବଂ ଗୀତାଭିନୟ ପୁସ୍ତକ ରଚନା କରି ନିଜ ନିର୍ଦ୍ଦେଶନାରେ ସେଗୁଡ଼ିକୁ ଓଡ଼ିଶାର ପୁରପଲ୍ଲୀରେ ପ୍ରଚାର କରାଇଲେ । କବି ଜଗନ୍ନାଥଙ୍କ ପୂର୍ବରୁ ଯେତେ ଖଣ୍ଡି ଲୀଳା ଗ୍ରନ୍ଥ ରଚିତ ହୋଇଥିଲା ତା' ମଧ୍ୟରେ ଅଧିକାଂଶ ଦକ୍ଷିଣ ଓଡ଼ିଶାରେ ରଚିତ ହୋଇଥିଲା । ବିଶେଷତଃ ପୁରୀର ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବକ ବିଶ୍ୱନାଥ ଖୁଣ୍ଟିଆଙ୍କ ରଚିତ ରାମଲୀଳା ଓଡ଼ିଶାର ପୁରପଲ୍ଲୀରେ ବିଶେଷ ଖ୍ୟାତି ଅର୍ଜନ କରିଥିଲା । ସେହି ରାମଲୀଳା 'ବିଶି ରାମଲୀଳା' ନାମରେ ପ୍ରସିଦ୍ଧି ଲାଭ କରିଛି । ଏତଦ୍‌ବ୍ୟତୀତ ରଘୁନାଥ ଦାସଙ୍କ ରଚିତ ରାମଲୀଳା ବା 'ଦକ୍ଷିଣୀ ରାମଲୀଳା' ଟିକଳୀ ରାଜା କୃଷ୍ଣଚନ୍ଦ୍ର ରାଜେନ୍ଦ୍ର ଓ ପୀତାମ୍ବର ରାଜେନ୍ଦ୍ରଙ୍କ ରଚିତ ରାମଲୀଳା ବା 'ଟିକଳୀ ରାମଲୀଳା' ସେ କାଳରେ ଓଡ଼ିଶାରେ ସର୍ବତ୍ର ଅଭିନୀତ ହେଉଥିଲା । ରାମଲୀଳା ବ୍ୟତୀତ 'କୃଷ୍ଣଲୀଳା', 'ଭରତ ଲୀଳା', 'ପ୍ରହ୍ଲାଦ ଚରିତ' ଆଦି ସ୍ଥାନେ ସ୍ଥାନେ ଅଭିନୀତ ହେଉଥିଲା; କିନ୍ତୁ ଉତ୍ତର ଓଡ଼ିଶାରେ ସେତେବେଳେ 'ମୋଗଲ ତାମ୍‌ସା' ବିଶେଷ ଲୋକପ୍ରିୟ ହୋଇଉଠିଥିଲା । ମୋଗଲକାଳୀନ ଶାସନର ପ୍ରଶଂସାତ୍ମକ ବର୍ଣ୍ଣନା, ଉର୍ଦ୍ଦୁ ଓ ଫାର୍‌ସୀରେ ରଚିତ 'ମୋଗଲ ତାମ୍‌ସା' ବାଲେଶ୍ୱର ଓ କଟକ ଜିଲ୍ଲାର କେତେକ ସ୍ଥାନରେ ଆଡ଼ମ୍ବର ସହକାରେ ଅଭିନୀତ ହେଉଥିଲା । ପରବର୍ତ୍ତୀ କାଳରେ ସେହି 'ମୋଗଲ ତାମ୍‌ସା'ର ଅନୁକରଣରେ 'ପୀର ତାମ୍‌ସା', 'ଯୋଗୀ ତାମ୍‌ସା' ଓ 'ଚଉଡ଼ା ତାମ୍‌ସା' ଅଭିନୀତ ହେଲା । କିନ୍ତୁ ସେ ଗୃରୋଷ୍ଟିଯାକ ତାମ୍‌ସାରେ ମୋଗଲକାଳୀନ ବେଶଭୂଷା, ନାଟକୀୟ କଥୋପକଥନରେ ଉର୍ଦ୍ଦୁ ଓ ଫାର୍‌ସୀର ପ୍ରଭାବ ବିଶେଷ ପରିଲକ୍ଷିତ ହେଉଥିଲା । ଓଡ଼ିଶାରେ ଭଦ୍ରକ ଏକ ମୁସଲ୍‌ମାନ ଅଧ୍ୟୁଷିତ ଅଞ୍ଚଳ ହୋଇଥିବାରୁ ସେଠାରେ ଉପରୋକ୍ତ ଋରୋଷ୍ଟିଯାକ ତାମ୍‌ସା ବିଭିନ୍ନ ଗ୍ରାମରେ ଅଦ୍ୟାବଧି ଅଭିନୀତ ହେଉଛି । ଖୁବ୍ ସମ୍ଭବତଃ ହିନ୍ଦୁ ଆଚାର-ସଂସ୍କାରରେ ପ୍ରତିପାଳିତ ଓ 'ନଳାଙ୍ଗ' ଗ୍ରାମର ଅଧିଷ୍ଠିତ ଦେବ ନଳେଶ୍ୱର ମହାଦେବଙ୍କ ସେବକ କବି ଜଗନ୍ନାଥ ପାଣିଙ୍କ ମନରେ ଏହି ବୈଦେଶିକ ସଂସ୍କୃତି ସମ୍ବଳିତ ତାମ୍‌ସା ଗୁଡ଼ିକ ଗଭୀର ଦୁଃଖର ରେଖାପାତ କରିଥିଲା । ତେଣୁ ସେ କେତେଗୁଡ଼ିଏ 'ଲୀଳା' ବା 'ଗୀତିନାଟ୍ୟ' ରଚନା କରି ନିଜଦ୍ୱାରା ସଗଠିତ ନାଟ୍ୟଦଳ ମାଧ୍ୟମରେ ଓଡ଼ିଶାର ପୁରପଲ୍ଲୀରେ ସେଗୁଡ଼ିକର ପ୍ରଚାର କରାଇବା ଲାଗି ବିଶେଷ ତତ୍ପର ହୋଇଉଠିଥିଲେ ।

ଶୁଣାଯାଏ, ଅଠାଇଶ ବର୍ଷ ବୟସରେ ଖ୍ରୀ: ଅ: ୧୮୭୪ ମସିହାରେ କବି ଜଗନ୍ନାଥ ପାଣି ତାଙ୍କ ନିଜ ନାଟ୍ୟଦଳ ସହିତ ଓଡ଼ିଶାର ବିଭିନ୍ନ ସ୍ଥାନ ପରିଭ୍ରମଣ କଲେ । ସର୍ବତ୍ର ତାଙ୍କ ନାଟ୍ୟଦଳ ଅଭିନନ୍ଦିତ ହେଲା । ଓଡ଼ିଶାର ଜନସାଧାରଣ ତାଙ୍କ ରଚିତ ଗୀତିନାଟ୍ୟ ଓ ସୁଆଙ୍ଗ ପ୍ରଭୃତି ଦେଖି ବିମୁଗ୍ଧ ହୋଇଯାଇଥିଲେ ।

ପ୍ରାଚୀନ ଓଡ଼ିଶାରେ ଗଜପତି ରାଜାଙ୍କ ଦରବାର ଓ ମୁକ୍ତିମଣ୍ଡପ ଶାସ୍ତ୍ର ଚର୍ଚ୍ଚା ଓ ପାଣ୍ଡିତ୍ୟପରୀକ୍ଷାର କ୍ଷେତ୍ର ଥିଲା । କବି, ଲେଖକ, ଗୁଣୀ, ବରେଣ୍ୟ ବ୍ୟକ୍ତିମାନେ ସେଠାରେ ନିଜର ଜ୍ଞାନ ଗରିମା ଓ କାବ୍ୟ କବିତାଦିର ପରୀକ୍ଷା କରାଇ ବହୁବିଧ ଉପାଧିମାନ ଲାଭ କରିବା ସଙ୍ଗେ ସଙ୍ଗେ ବଡ଼ପଣ୍ଡା, କବିଭୂଷଣ, କବିବର, କବିଚନ୍ଦ୍ର ଆଦି ପଦପଦବୀରେ ଭୂଷିତ ହେଉଥିଲେ । କିନ୍ତୁ ମୋଗଲ ଆକ୍ରମଣ ପରେ ଗଜପତି ରାଜଦରବାରର ମହତ୍ତ୍ୱ ବିଶେଷ ରହିଲା ନାହିଁ ଏବଂ 'ମୋଗଲ ଗୋଳ' ଭୟରେ ଲୋକେ ପୁରୀର ମୁକ୍ତିମଣ୍ଡପକୁ ଆସି ବିଦ୍ୟା ପରୀକ୍ଷା ଦେବା ମଧ୍ୟ ସହଜସାଧ୍ୟ ହେଲା ନାହିଁ । ମୋଗଲମାନଙ୍କ ପରେ ମରହଟ୍ଟା ଶାସନ ଯଦିଓ ଓଡ଼ିଶାର ସାଂସ୍କୃତିକ ପରିବେଶର ପରିପନ୍ଥୀ ନଥିଲା, ତଥାପି ସେମାନଙ୍କ ଶୋଷଣ ଦ୍ୱାରା ସାଧାରଣ ଲୋକେ ଆତଙ୍କିତ ହୋଇ ଉଠିଥିଲେ । ସେହି ଶାସନର ମୂକସାକ୍ଷୀ ରୂପେ ଅଦ୍ୟାପି 'ମରହଟ୍ଟୀ ଶାସନ' 'ମରହଟ୍ଟୀ ଅମଳ' 'ମରହଟ୍ଟୀ କଥା' ପ୍ରଭୃତି ଆମ ଭାଷାରେ କେତୋଟି ପ୍ରବଚନ ବ୍ୟବହୃତ ହେଉଛି । ତତ୍ପରେ ଇଂରେଜମାନଙ୍କ ଆଗମନ ଭାରତର କେତୋଟି ଅଞ୍ଚଳ ପକ୍ଷରେ ଯଦିଓ ଶୁଭ ସଙ୍କେତର ଧ୍ୱନି ଶୁଣାଇଲା, ତଥାପି ଓଡ଼ିଶା ପକ୍ଷରେ ତାହା ବିଶେଷ ଲାଭଜନକ ହୋଇନଥିଲା । ଦୁର୍ଦ୍ଧର୍ଷ ଓଡ଼ିଆ ପାଇକଦଳ ଇଂରେଜମାନଙ୍କ ଆଗମନକୁ ସାଦରେ ସ୍ୱାଗତ ନ ଜଣାଇ ପ୍ରବଳ ପ୍ରତିରୋଧ କରିଥିବାରୁ, ଇଂରେଜ ଶାସକମାନେ ଏ ଦେଶର ଭାଷା ଓ ସଂସ୍କୃତି କ୍ଷେତ୍ରରେ ଆଶାନୁରୂପ ପ୍ରୋତ୍ସାହନ ପ୍ରଦାନ କରି ନଥିଲେ । କିନ୍ତୁ ସୌଭାଗ୍ୟବଶତଃ ଇଂରେଜମାନଙ୍କ ପରୋକ୍ଷ ଶାସନରେ ଥାଇ ଦେଶୀୟ ରାଜ୍ୟଗୁଡ଼ିକର ରାଜାମାନେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସମୁନ୍ନତି ଲାଗି ନିଜନିଜର ସାଧ୍ୟମତେ ଚେଷ୍ଟା କରିଥିଲେ ଏବଂ ସେ ସମୟରେ ଓଡ଼ିଶାର ଯେ କୌଣସି ଅଞ୍ଚଳର କବି, କୋବିଦ, ଗୁଣୀ, ବରେଣ୍ୟ ଶିଳ୍ପୀ, ନାଟ୍ୟକାରମାନଙ୍କୁ ପୁରସ୍କୃତ କରିବା, ପଦପଦବୀରେ ଭୂଷିତ କରିବା, ଗଡ଼ଜାତ ରାଜାମାନଙ୍କର ଏକ ବିଳାସରେ ପରିଣତ ହୋଇଥିଲା । ତେଣୁ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଗୁଣୀ ଓ ବରେଣ୍ୟ ବ୍ୟକ୍ତିମାନେ ଗଡ଼ଜାତ ଅଞ୍ଚଳକୁ ଯାଇ ନିଜର ଜ୍ଞାନ ପ୍ରଦର୍ଶନ କରୁଥିଲେ । ଶିଳ୍ପୀ ନାଟ୍ୟକାର, ପାଲାଗାୟକ, ଦାସକାଠିଆ ଗାୟକ ପ୍ରଭୃତି ଗଡ଼ଜାତ ରାଜାଙ୍କ ଦରବାରରେ ନିଜନିଜର କଳା ପ୍ରଦର୍ଶନ କରି ସମାଦୃତ ହେଉଥିଲେ ।

କବି ଜଗନ୍ନାଥ ପାଣିଙ୍କର ନାଟ୍ୟଦଳ ଓଡ଼ିଶାର ବିଭିନ୍ନ ସ୍ଥାନରେ 'ଲୀଳା' ବା 'ଗୀତନାଟ୍ୟ' ପ୍ରଦର୍ଶନ କରି ଗଡ଼ଜାତ ଅଞ୍ଚଳରେ ଲୀଳା ଅଭିନୟ କରିଥିଲେ । ସେହି ଲୀଳା ପ୍ରଦର୍ଶନ ସମୟରେ ସେ ମୁଖ୍ୟତଃ ଧ୍ରୁବଚରିତ, ପ୍ରହ୍ଲାଦଚରିତ, ପାରିଜାତ ହରଣ, ବଳି-ବାମନ, ସୀତା ବନବାସ, ନଳ-ଦମୟନ୍ତୀ, ଦକ୍ଷଯଜ୍ଞ ଆଦି ଲୀଳା ପ୍ରଦର୍ଶନ କରିଥିଲେ । ଏହା ସହିତ ଗୋପାଲ ଗୋପାଳୁଣୀ, ବାବୁ ବାବୁଆଣୀ, କେଳା କେଳୁଣୀ, ଧୋବା ଧୋବଣୀ, ମୋଗଲ ଗହଣୀ ପ୍ରଭୃତି ସ୍ୱ-ରଚିତ ପ୍ରହସନ ଗୁଡ଼ିକର ପ୍ରଦର୍ଶନ କରି ଜନସାଧାରଣ ତଥା ରାଜାମାନଙ୍କୁ ଖୁସି କରାଉଥିଲେ ।

ଜନଶ୍ରୁତିରୁ ଜଣାଯାଏ—ମହାକବି କାଳିଦାସଙ୍କ ପରି ମହାଦେବୀ ସରସ୍ୱତୀ ଓ ନଳେଶ୍ୱର ମହାଦେବଙ୍କ କୃପାରୁ କବି ଜଗନ୍ନାଥ ପାଣି ତ୍ରିକାଳଦର୍ଶୀ ହୋଇ ପାରିଥିଲେ । ସେ ମାନସଚକ୍ଷୁରେ ବହୁ ରହସ୍ୟପୂର୍ଣ୍ଣ ଘଟଣାର ରହସ୍ୟ ଉଦ୍‌ଘାଟନ କରିପାରୁଥିଲେ ଏବଂ ସେହି ମନ୍ତ୍ର ପ୍ରଭାବରୁ ସେ ଅଲୌକିକ ଧୀଶକ୍ତିସମ୍ପନ୍ନ ଓ ଭବିଷ୍ୟତବକ୍ତା ରୂପେ ପ୍ରସିଦ୍ଧି ଲାଭ କରିଥିଲେ । ଲୋକମୁଖରୁ ଶୁଣାଯାଏ, ଥରେ କୌଣସି ଏକ ଗଡ଼ଜାତରେ ଲୀଳା ପ୍ରଦର୍ଶନ କରୁଥିବା ସମୟରେ ପ୍ରସଙ୍ଗକ୍ରମେ 'ଅସୂର୍ଯ୍ୟଂପଶ୍ୟା ରାଜମହିଷୀ'ଙ୍କର ରୂପ ବର୍ଣ୍ଣନା କରିବସିଲେ । କବିଙ୍କ ମୁଖରୁ ଅନ୍ତଃପୁରବାସିନୀ ସ୍ୱରାଜମହିଷୀଙ୍କର ଅବିକଳ ରୂପବର୍ଣ୍ଣନା ଶୁଣି ରାଜା ଅତ୍ୟନ୍ତ ସନ୍ଦେହମନା ହୋଇଉଠିଲେ । ମହାରାଣୀଙ୍କ ସହିତ କବିଙ୍କର ଗୋପନୀୟ ସମ୍ପର୍କ ଥିବାରୁ ଅନୁମାନ କରି ସେ ପରଦିନ ଏକାନ୍ତରେ କବିଙ୍କୁ ଡାକି ଉପଯୁକ୍ତ ଦଣ୍ଡବିଧାନର ଆଜ୍ଞା ଶୁଣାଇ ଦେଲେ । କିନ୍ତୁ ତ୍ରିକାଳଦର୍ଶୀ କବି ଜଗନ୍ନାଥ ଏଥିରେ ତିଳେ ମାତ୍ର ଭୟଭୀତ ନ ହୋଇ ସରସ୍ୱତୀଙ୍କ ବର ପ୍ରସାଦରୁ ସେ ଅଦ୍ଭୁତ ଧୀସମ୍ପନ୍ନ ଓ ତ୍ରିକାଳଦର୍ଶୀ ହୋଇପାରିଛନ୍ତି ବୋଲି ରାଜାଙ୍କ ଆଗରେ ବ୍ୟକ୍ତକଲେ । ତହିଁ ରାଜା ଏଥିରେ ବିଶ୍ୱାସ ନକରି ଆଦେଶ ଦେଇ କହିଲେ —"ଯଦି ତୁମେ ତ୍ରିକାଳଦର୍ଶୀ, ଯଦି ତୁମେ ଅଲୌକିକ ପ୍ରତିଭାସମ୍ପନ୍ନ, ତାହାହେଲେ, ମୁଁ କେଉଁ ରାଜବଂଶରେ ଜନ୍ମଗ୍ରହଣ କରିଛି, ତାହାର ମୂଳପୁରୁଷ କେଉଁଠି ଏବଂ ସେହି ବଂଶର କୌଣସି ଏକ ମହନୀୟ ଚରିତ୍ରର ଅବଲମ୍ବନରେ ତୁମେ ଯଦି ଆଜି ଦିନକ ମଧ୍ୟରେ ଗୋଟିଏ ଲୀଳା ବା ଗୀତନାଟ୍ୟ ରଚନା କରି ଆଜି ରାତିରେ ପ୍ରଦର୍ଶନ କରିପାରିବ ତାହାହେଲେ ମୁଁ ତୁମକୁ ଦଣ୍ଡବିଧାନରୁ ମୁକ୍ତଦେବି, ନଚେତ୍ ରାଜାଜ୍ଞା କେବେହେଲେ ଅନ୍ୟଥା ହେବନାହିଁ ।"

ଏପରି ନିଷ୍ଠୁର ରାଜାଜ୍ଞା ପାଇ ମଧ୍ୟ କବି ଜଗନ୍ନାଥ ପାଣି ଆଦୌ ବିଚଳିତ ହୋଇନଥିଲେ, ବରଂ ଅତ୍ୟନ୍ତ ଉତ୍ସାହ ସହକାରେ ରାଜପରୀକ୍ଷାର ସମ୍ମୁଖୀନ ହେବା ଲାଗି ଅଣ୍ଟାଭିଡ଼ି ଆକୁଳ କଣ୍ଠରେ ନିଜର ଇଷ୍ଟ ଦେବତା ଶ୍ରୀ ନଳେଶ୍ୱରଙ୍କୁ

ତଥା ଦେବୀ ସରସ୍ୱତୀଙ୍କୁ ପ୍ରାର୍ଥନା କରିଥିଲେ । ହଠାତ୍ ତାଙ୍କ ମନ ମଧ୍ୟରେ ସୀଗ୍ରବାଣଙ୍କ ଚରିତ୍ର ଅବଲମ୍ବନରେ ଏକ ଗୀତିନାଟ୍ୟ ରଚନା କରିବା ଲାଗି ପ୍ରେରଣା ଜାଗ୍ରତ ହେଲା । ସେ ମାତ୍ର ବାର ଘଣ୍ଟା ମଧ୍ୟରେ ସୀଗ୍ରବାଣଙ୍କ ଚରିତ ଅବଲମ୍ବନରେ 'ରଣଜିତ୍ ରାଜା ଉପାଖ୍ୟାନ' ଶୀର୍ଷକ ଏକ ଗୀତିନାଟ୍ୟ ରଚନା କଲେ ଏବଂ ସେହି ରାତିରେ ପୂର୍ବରୁ କୌଣସି ପ୍ରକାର ପ୍ରସ୍ତୁତି ନକରି ଗୀତିନାଟ୍ୟଟିକୁ ମଞ୍ଚସ୍ଥ କଲେ । କବି ଜଗନ୍ନାଥଙ୍କର ଏତାଦୃଶ କାବ୍ୟପ୍ରତିଭା ଦେଖି ହଜାର ହଜାର ଦର୍ଶକ ସ୍ତମ୍ଭୀଭୂତ ହୋଇଗଲେ । ନିଜେ ରାଜା ଉଦ୍ଧବ ପକ୍ଷରେ କବିଙ୍କର ଦକ୍ଷତା ଓ ତାଙ୍କ ଦଳର ଅଭିନେତାମାନଙ୍କର ଚମତ୍କାର ଅଭିନୟର ଭୂୟସୀ ପ୍ରଶଂସା କରି ପାଟ ଓ କୁଣ୍ଡଳ ଅର୍ପଣ କଲେ ଏବଂ ରାଜାଙ୍କ ନିର୍ଦ୍ଦେଶରେ ରାଜପଣ୍ଡିତ ମହୋଦୟ କବି ଜଗନ୍ନାଥ ପାଣିଙ୍କୁ 'କବିବର' ଉପାଧିରେ ଭୂଷିତ କଲେ । ଏହିପରି ଭାବରେ ଓଡ଼ିଶାର ବହୁ ରାଜଦରବାର ଓ ସମ୍ଭ୍ରାନ୍ତ ଜମିଦାରବର୍ଗଙ୍କ ଦ୍ୱାରା କବି ଜଗନ୍ନାଥ ପାଣି ପୁରସ୍କୃତ ହୋଇଥିଲେ ଏବଂ ଓଡ଼ିଶାର ପୁରପଲ୍ଲୀରେ ତାଙ୍କ ନାଟ୍ୟଦଳର ତଥା ତାଙ୍କ ରଚନାର ଭୂୟସୀ ପ୍ରଶଂସା କରାଯାଉଥିଲା ।

ଦୀର୍ଘ ୩୦ ବର୍ଷ ଧରି ଓଡ଼ିଶାର ନାଟ୍ୟ ଜଗତକୁ କବି ଜଗନ୍ନାଥ ପାଣି ଯେଉଁ ମହାର୍ଘ ଦାନ ଦେଇଯାଇଛନ୍ତି, ତାହା ଓଡ଼ିଶାବାସୀଙ୍କ ପକ୍ଷରେ ଅବିସ୍ମରଣୀୟ ।

ଓଡ଼ିଶାର କୃତିସନ୍ତାନ ଜଗନ୍ନାଥ ପାଣି କେବଳ ଜଣେ କବି ରୂପେ ପ୍ରଖ୍ୟାତ ନ ଥିଲେ, ସେ ଜଣେ ପରମ-ସାଧକ ରୂପେ ଉକ୍ତ ଅଞ୍ଚଳରେ ଅତ୍ୟନ୍ତ ପ୍ରସିଦ୍ଧି ଲଭ କରିଥିଲେ । ଶୁଣାଯାଏ, ଜଗନ୍ନାଥ ପାଣି 'ନଲାଙ୍ଗ' ଗ୍ରାମରେ ପ୍ରତିଷ୍ଠିତ ବିଗ୍ରହ ନଳେଶ୍ୱର ମହାଦେବଙ୍କୁ ଆରାଧନାରେ ସନ୍ତୁଷ୍ଟ କରି, ତାଙ୍କ ଅନୁଗ୍ରହରୁ ଥରେ ସେ ନିଜେ ଏକ ଦୁରାରୋଗ୍ୟ ବ୍ୟାଧିରୁ ମୁକ୍ତହୋଇଥିଲେ ଏବଂ ବହୁ ଲୋକଙ୍କୁ ମଧ୍ୟ ରୋଗମୁକ୍ତ କରୁଥିଲେ ।

ଏ ସଂସାରରେ ଜନ୍ମ ହୋଇ କେହି କେବେ ଚିରଦିନ ଲାଗି ଅମର ହୋଇ ରହିପାରେ ନାହିଁ । ଜନୈକ କବିଙ୍କ ଭାଷାରେ କହିବାକୁ ଗଲେ—

ମର୍ତ୍ତ୍ୟ ମଣ୍ଡଳେ ଜାତ ହୋଇ
ଦେବତା ହୋଇଲେ ମରଇ ।

× × ×

ମଣିଷ ମରିବ ଦିନେ,
ସାର୍ଥକ ମରଣ ତା'ର

ଜନ୍ମ ହୋଇ ଦେବତା ବି ମରେ
ଯାହାଲାଗି ମାଟି ଗୋଡ଼ି ଝୁରେ ।

ବାଲ୍ୟ ଓ କୈଶୋରରେ ଛନ୍ଦ, ଯୌବନରେ ବିଦ୍ୟାଭ୍ୟାସ ଓ ପ୍ରଭୂତ ଯଶ ଅର୍ଜନ କରି କବି ଜଗନ୍ନାଥ ପାଣି ବାର୍ଦ୍ଧକ୍ୟର ପ୍ରଥମ ପାଦରେ ମାତ୍ର ଏକଷଠୀ ବର୍ଷ ବୟସରେ ସନ ୧୮୯୭ ମସିହା, ଡିସେମ୍ବର ୧୧ ତାରିଖ ସୋମବାର କୃଷ୍ଣ ତ୍ରୟୋଦଶୀରେ ଇହଧାମ ତ୍ୟାଗ କରି ଅମର ଲୋକର ଯାତ୍ରୀ ହୋଇଥିଲେ । ଏହିଭଳି ଗୁଣୀ ଲୋକଙ୍କର ଆବଶ୍ୟକତା ମଧ୍ୟ ସ୍ୱର୍ଗରେ ଅନୁଭୂତ ହେଲା । ସେଇଥିଲାଗି ବୋଧହୁଏ କବି ଜଗନ୍ନାଥ ପାଣିଙ୍କର ଅକାଳ ବିୟୋଗ ସମ୍ପନ୍ନ ହେଲା । କବି ଆଉ କିଛିଦିନ ବଞ୍ଚିଥିଲେ ହୁଏତ ତାଙ୍କ ପୂର୍ଣ୍ଣ ଅନୁଭୂତିମୟ ଜୀବନର କାହାଣୀ ଆମ ଆଗରେ ପରିବେଷଣ କରିବା ଲାଗି ସୁବିଧା ପାଇଥାଆନ୍ତେ; କିନ୍ତୁ ତାହା ସମ୍ଭବ ହେଲା ନାହିଁ । ଆଜି ଜଗନ୍ନାଥ ପାଣିଙ୍କ ସମ୍ବନ୍ଧରେ ଯାହାକିଛି ଆଲୋଚନା କରାଯାଉଛି କେବଳ କିମ୍ବଦନ୍ତୀ ଓ ଆଖପାଖର ବୟୋଜ୍ୟେଷ୍ଠ ଲୋକମାନଙ୍କର ମତାମତ ଉପରେ ନିର୍ଭର କରି କରାଯାଉଛି । ଆଜିସୁଦ୍ଧା କବି ଜଗନ୍ନାଥ ପାଣିଙ୍କ ଜୀବନୀ ସମ୍ବନ୍ଧରେ କୌଣସି ପୁସ୍ତକ ପ୍ରକାଶ ପାଇଥିବା ଲେଖକ ଜାଣେନାହିଁ, ହୁଏତ କେଉଁଠି ତାଙ୍କ ଜୀବନ-ଚରିତ ସମ୍ବଳିତ ପୁସ୍ତକ ଲୋକଲୋଚନର ଅଗୋଚରରେ ରହିଥାଇପାରେ ।



# ଜଗନ୍ନାଥ ପାଣିଙ୍କ ବହୁମୁଖୀ ପ୍ରତିଭା

କବି ଜଗନ୍ନାଥ ପାଣିଙ୍କ ଜୀବନୀରୁ ଜଣାଯାଏ ଯେ, ସେ ତାଙ୍କ ଜୀବଦ୍ଦଶା ମଧ୍ୟରେ ଅନେକ ଗୀତାଭିନୟ, ଛାନ୍ଦ, ଚଉପଦୀ, କୋଇଲି, ଭଜନ ଓ ପୁରାଣ ଆଦି ରଚନା କରିଛନ୍ତି । ସେହି ପୁସ୍ତକ ଗୁଡ଼ିକ ମଧ୍ୟରେ ଅଳ୍ପ କେତେଖଣ୍ଡି ପୁସ୍ତକ ପ୍ରକାଶପାଇଥିଲା; ଖୁବ୍ ସମ୍ଭବତଃ ସେଗୁଡ଼ିକ ବର୍ତ୍ତମାନ ସୁପ୍ରାପ୍ୟ ନୁହେଁ । ବର୍ତ୍ତମାନ ତାଙ୍କର ଜନ୍ମସ୍ଥାନ ନଲାଙ୍ଗ (ଭଦ୍ରକ) ଓ ଓଡ଼ିଶାର ଅନ୍ୟାନ୍ୟ କେତେକ ଅଞ୍ଚଳରୁ କବିଙ୍କ ଲିଖିତ କେତେଖଣ୍ଡି ପୁସ୍ତକ ମିଳୁଛି । ଶୁଣାଯାଏ—କବିଙ୍କ ଉତ୍ତର-ଦାୟାଦ କେତେଖଣ୍ଡି ପୋଥି ସାଇତି ରଖିଛନ୍ତି । ଜଗନ୍ନାଥ ପାଣିଙ୍କ ଲିଖିତ ସମୁଦାୟ ପୁସ୍ତକ ସଂଗୃହୀତ ହେବା ଆଦୌ ସହଜସାଧ୍ୟ ବ୍ୟାପାର ନୁହେଁ । ଏଥିଲାଗି ବିଭିନ୍ନ ସ୍ଥାନରେ ଅନୁସନ୍ଧାନ କରିବାକୁ ପଡ଼ିବ । ତେବେ ଯାହାହେଉ, ଯେଉଁ କେତେଖଣ୍ଡି ପୁସ୍ତକ ମିଳିଛି ତନ୍ମଧ୍ୟରେ ମାତ୍ର ପନ୍ଦର ଖଣ୍ଡି ପୁସ୍ତକ ତଥା କେତେକ ଭଜନ ଓ ଚଉପଦୀ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂଗୃହୀତ ହୋଇ ରହିଛି । ତାଙ୍କ ଲିଖିତ ଗୀତାଭିନୟ ଗୁଡ଼ିକ ଛାନ୍ଦ ଆକାରରେ ଲେଖା ଯାଇଥିଲେ ହେଁ, ବିଶ୍ୱନାଥ ଖୁଣ୍ଟିଆଙ୍କ ରାମଲୀଳା, ଚକଡ଼ୀ ରାମଲୀଳା, ବଡ଼ଗଡ଼ ରାମଲୀଳା ଓ ଅନୁଗୁଳ ରାମଲୀଳା ପରି ସେଗୁଡ଼ିକୁ ସହଜରେ ଗୀତନାଟ୍ୟ ରୂପେ ଅଭିନୟ କରାଯାଇପାରିବ । କବି ଜଗନ୍ନାଥ ସ୍ୱ-ରଚିତ ଦକ୍ଷଯଜ୍ଞ, ଧ୍ରୁବ ଚରିତ ପ୍ରଭୃତି ପୁସ୍ତକ ଗୁଡ଼ିକୁ ଗୀତନାଟ୍ୟ ଆକାରରେ ଓଡ଼ିଶାରେ ସର୍ବତ୍ର ଅଭିନୟ କରାଇ ତତ୍କାଳୀନ ସମାଜରେ ପ୍ରସିଦ୍ଧି ଲାଭ କରିଥିଲେ । କବିଙ୍କ ରଚିତ ଗୀତାଭିନୟ ପୁସ୍ତକ ଗୁଡ଼ିକୁ ଉଭୟ ଦୃଶ୍ୟ କାବ୍ୟ ଓ ଶ୍ରାବ୍ୟ କାବ୍ୟ ରୂପେ ଗ୍ରହଣ କଲେ ଅସମୀଚୀନ ହେବ ନାହିଁ । ଦୃଶ୍ୟ କାବ୍ୟ ପରି ଏହି ପୁସ୍ତକ ଗୁଡ଼ିକରେ ନାଟକୀୟ ଅଭିନେତା ଅଭିନେତ୍ରୀଙ୍କର କଥୋପକଥନ ପ୍ରାଚୀନ ରାଗ-ରାଗିଣୀରେ ଦିଆଯାଇଛି ଏବଂ ଶ୍ରାବ୍ୟ କାବ୍ୟ ପରି ନଗର, ସୌଧ, ଋତୁ, ପ୍ରଭାତ, ସନ୍ଧ୍ୟା, ନଦୀ, ପର୍ବତ ତଥା ନାୟକ-ନାୟିକାଙ୍କର ବେଶ ବର୍ଣ୍ଣନା ଏଥିରେ ସନ୍ନିବେଶିତ ହୋଇଛି । ଗୀତାଭିନୟର ପ୍ରାକ୍କାଳରେ, ମୁଖ୍ୟତଃ ସଂସ୍କୃତ ନାଟ୍ୟ ଶୈଳୀ, ସର୍ବଶ୍ରେଣୀୟ ସ୍ତରରେ ଅନୁସୃତ ହେଉଥିଲା । ରଙ୍ଗମଞ୍ଚରେ କୌଣସି ଅଭିନୟ

ଆରମ୍ଭ ହେବା ପୂର୍ବରୁ ପୂର୍ବରଙ୍ଗ, ସଭାପୂଜା, ମାଳୀପାଠ ପ୍ରଭୃତି କରାଯାଉଥିଲା । ତତ୍ପରେ ପ୍ରବେଶକ ଉପସ୍ଥିତ ହୋଇ ନାଟକର ବିଷୟବସ୍ତୁ ତଥା ପାତ୍ର ପ୍ରବେଶର ସୂଚନା ଦେଇ ରଙ୍ଗମଞ୍ଚରୁ ଚାଲିଯିବା ପରେ ପ୍ରକୃତ ନାଟକ ଆରମ୍ଭ ହେଉଥିଲା । ଏଠାରେ ଗୋଟିଏ ବିଷୟର ସୂଚନା ଦିଆଯାଇପାରେ ଯେ, ଓଡ଼ିଶାରେ ରଚିତ ପ୍ରାଚୀନ ଲୀଳାଗୁଡ଼ିକରେ ପାତ୍ରର ପ୍ରବେଶ ଓ ସେମାନଙ୍କର ବକ୍ତବ୍ୟ ଗୋଟିଏ ଗୀତରେ କରାଯାଉଥିଲା । ନିଜେ ଅଭିନେତା ରଙ୍ଗମଞ୍ଚକୁ ଆସିବାର ସୂଚନା ନିଜ ମୁଖରେ ଦେଇ ତା'ପରେ ନିଜର ନାଟକୀୟ ବକ୍ତବ୍ୟ ପ୍ରକାଶ କରୁଥିଲା । ଉଦାହରଣ ସ୍ୱରୂପ— ବିଶ୍ୱନାଥ ଖୁଣ୍ଟିଆଙ୍କର ରାମଲୀଳାରେ ହନୁମାନଙ୍କ ପ୍ରବେଶ ଓ ତାଙ୍କର ବକ୍ତବ୍ୟକୁ ନିଆଯାଇପାରେ—

"ଶିଂଶପା ବୃକ୍ଷର ଡାଳେ ହନୁ ମନେ ମନେ ଭାଳେ
କେମନ୍ତେ ଜାନକୀ ଜନକ ନନ୍ଦିନୀ ଦେଖିଲଇଁ ନେତ୍ର ତୋଳେ
ଆହା କି ଭାଗ୍ୟବଳେ !"

କେବଳ ବିଶ୍ୱନାଥ ଖୁଣ୍ଟିଆ ନୁହନ୍ତି, ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ଯେତେ ଲୀଳା ରଚିତ ହୋଇଥିଲା, ପ୍ରାୟ ସବୁଥିରେ ଏହି ଦୃଷ୍ଟାନ୍ତ ଢ଼େର ଅଧିକେ ଦେଖିବାକୁ ମିଳେ । ଆଜିକାଲି ପରି ରଙ୍ଗମଞ୍ଚର ଶୈଳ୍ପିକ ବିକାଶ ସେ ଯୁଗରେ ହୋଇ ନ ଥିବାରୁ ଲୀଳା ଗୁଡ଼ିକର ଅଭିନେତା ନିଜ ଆଗମନର ସୂଚନା ନିଜ ମୁଖରେ ଦେଉଥିଲେ । ଏ ପ୍ରକାର ଶୈଳୀ କେବଳ ଯେ ଓଡ଼ିଶାରେ ଅନୁସୃତ ହେଉଥିଲା ତା' ନୁହେଁ, ଭାରତର ଅନ୍ୟାନ୍ୟ ଅଞ୍ଚଳରେ ସମସାମୟିକ ଲୀଳା ଗୁଡ଼ିକରେ ଏ ପ୍ରକାର ପ୍ରୟୋଗ ମଧ୍ୟ କରାଯାଉଥିଲା; ଏପରିକି ଉତ୍ତର-ଭାରତରେ ତୁଳସୀ ଦାସଙ୍କ ରଚିତ 'ରାମ ଚରିତ ମାନସ' ଓ ସୁର ଦାସଙ୍କ ରଚିତ 'ସୁର ସାଗର'ର ଗୀତ ଗୁଡ଼ିକୁ ଗୀତାଭିନୟ ମାଧ୍ୟମରେ ପ୍ରକାଶ କରାଯାଉଥିଲା । ଅଦ୍ୟାପି ଉତ୍ତର-ଭାରତର ରାମଲୀଳାରେ ଏହି ପଦ୍ଧତି ଚାଲିଆସୁଛି ।

ଓଡ଼ିଶାରେ ନାଟ୍ୟ ସାହିତ୍ୟର ବିକାଶଧାରା କେଉଁ ଯୁଗରୁ ଆରମ୍ଭ ହୋଇଥିଲା ସେ ସମ୍ବନ୍ଧରେ ସଠିକ୍ ମତ ଦେବା ସମ୍ଭବ ନୁହେଁ । ଅବଶ୍ୟ ଖ୍ରୀ: ପୂ: ପ୍ରଥମ ଦ୍ୱିତୀୟ ଶତାବ୍ଦୀ ବେଳକୁ ଓଡ଼ିଶାରେ ନାଟକ ପରିବେଷଣ କରାଯାଉଥିବାର ପ୍ରମାଣ ମିଳୁଅଛି । ଭୁବନେଶ୍ୱରର ଅନତି ଦୂରରେ ଅବସ୍ଥିତ ଉଦୟଗିରିରେ ପ୍ରାଚୀନ ରଙ୍ଗମଞ୍ଚର ସୂଚନା ମିଳୁଛି । ସେଠାରେ ପର୍ବତର ପାଦଦେଶରେ ଭରତ ମୁନିଙ୍କ ସୁବ୍ୟବସ୍ଥିତ ରଙ୍ଗମଞ୍ଚ ଅନୁସାରେ ମଞ୍ଚ ନିର୍ମାଣ କରାଯାଇ, ସର୍ବସାଧାରଣଙ୍କ

ଲାଗି ନାଟ୍ୟ ପରିବେଷଣ କରାଯାଉଥିବାର ପ୍ରମାଣ ମିଳୁଛି । ଆଜକୁ ଦୁଇ ହଜାର ବର୍ଷ ତଳେ ଓଡ଼ିଶାର ଏକ କେନ୍ଦ୍ରସ୍ଥଳ ପ୍ରାଚୀନ କଳିଙ୍ଗ ନଗରରେ ନାଟ୍ୟାଚାର୍ଯ୍ୟ ଭରତ ମୁନିଙ୍କ ନିର୍ଦ୍ଧାରିତ ପ୍ରମାଣ ଅନୁସାରେ ରଙ୍ଗମଞ୍ଚ ନିର୍ମାଣ ହୋଇଥିବାରୁ ଅନୁମାନ କରାଯାଏ ଯେ, ନିଶ୍ଚିତ ଭାବରେ ସେକାଳର ନାଟ୍ୟାଚାର୍ଯ୍ୟମାନେ ନାଟକ ରଚନା କରି ସର୍ବସାଧାରଣଙ୍କ ଲାଗି ପରିବେଷଣ କରୁଥିବେ । ଅବଶ୍ୟ ସେହି ସମୟରେ ଲିଖିତ କୌଣସି ନାଟକର ସନ୍ଧାନ ଆମର ହସ୍ତଗତ ହୋଇନାହିଁ । କିନ୍ତୁ ଏହା ନିଶ୍ଚିତ ଭାବରେ କୁହାଯାଇପାରେ ଯେ, ନାଟକ ରଚନା ବ୍ୟତୀତ ରଙ୍ଗମଞ୍ଚର ପରିକଳ୍ପନା ଆଦୌ ସମ୍ଭବ ହୁଅନ୍ତା ନାହିଁ ।

ମୁରାରି ମିଶ୍ରଙ୍କ ରଚିତ 'ସମ୍ପୂର୍ଣ୍ଣ ରାମାୟଣ'ର ବିଷୟବସ୍ତୁ ଉପରେ ଆଧାରିତ 'ଅନର୍ଘ ରାଘବ ନାଟକ' ଓଡ଼ିଶାରେ ରଚିତ ହୋଇଥିଲା ଏବଂ ଉକ୍ତ ନାଟକଟି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ପ୍ରଧାନ ଯାତ୍ରା ଗୁଣ୍ଡିଚା ଉତ୍ସବରେ ସର୍ବସାଧାରଣଙ୍କ ଲାଗି ଉପସ୍ଥାପିତ ହୋଇଥିଲା । କବି ମୁରାରି ମିଶ୍ର ଓଡ଼ିଶାର ଅଧିବାସୀ ହୋଇ ନଥିଲେ, ତାଙ୍କ ନାଟକଟିକୁ କାଶୀ, କନୌଜ, କାଶ୍ମୀର, କାଞ୍ଚି ଆଦି ପ୍ରଖ୍ୟାତ ସ୍ଥାନରେ ଅଭିନୀତ କରାଇଥାନ୍ତେ । କିନ୍ତୁ ସେ ଓଡ଼ିଶାର ଅଧିବାସୀ ହୋଇଥିବାରୁ ତାଙ୍କ ରଚିତ ନାଟକଟିକୁ ଶ୍ରୀ ବଡ଼ଠାକୁରଙ୍କ ଯାତ୍ରାରେ ଉପସ୍ଥାପିତ କରିଥିଲେ । ଏହା ପରେ କୃଷ୍ଣ ମିଶ୍ର ନାମକ ଜଣେ ନାଟ୍ୟକାର "ପ୍ରବୋଧ ଚନ୍ଦ୍ରୋଦୟ" ଶୀର୍ଷକ ଏକ ନାଟକ ରଚନା କରିଥିବାର ପ୍ରମାଣ ମିଳେ । ଉକ୍ତ ନାଟକଟି ଖ୍ରୀଷ୍ଟୀୟ ଦଶମ ଏକାଦଶ ଶତାବ୍ଦୀରେ ରଚିତ ହୋଇଥିଲା । ଦାର୍ଶନିକ ଚିନ୍ତାଧାରାର ପରିପ୍ରକାଶ ହିଁ ନାଟକର ମୁଖ୍ୟ ବିଷୟବସ୍ତୁ । ଏହି ଦୁଇଟି ନାଟକ ପରେ ଓଡ଼ିଶାରେ ଆହୁରି ଅନେକ ସଂସ୍କୃତ ନାଟକ ରଚିତ ହୋଇଥିଲା । ସେମାନଙ୍କ ମଧ୍ୟରେ 'ସାହିତ୍ୟଦର୍ପଣ'ର ପ୍ରଣେତା ବିଶ୍ୱନାଥ କବିରାଜଙ୍କର ଚନ୍ଦ୍ରକଳା ନାଟିକା, କପିଳେନ୍ଦ୍ର ଦେବଙ୍କ ରଚିତ 'ପରଶୁରାମ ବିଜୟ' (ବ୍ୟାୟୋଗ), ଗଜପତି ପୁରୁଷୋତ୍ତମ ଦେବଙ୍କ ନାମରେ ଭଣିତ 'ଅଭିନବ ବେଣୀ ସଂହାର', 'ଜାନକୀ ପ୍ରମୋଦ', କବିଡିଣ୍ଡିମ ଜୀବଦେବ ଆଚାର୍ଯ୍ୟଙ୍କର 'ଭକ୍ତ ବୈଭବ' ନାଟକ ଓ 'ଉତ୍ସାହବତୀ' ନାଟିକା, ରାୟ ରାମାନନ୍ଦ ପଟ୍ଟନାୟକଙ୍କର 'ଶ୍ରୀ ଜଗନ୍ନାଥ ବଲ୍ଲଭ ନାଟକ', ଜୟଦେବଙ୍କ (ଜୀବଦେବଙ୍କ ପୁତ୍ର) 'ପୀୟୂଷ ଲହରୀ' ନାଟିକା, ଗଜପତି ରାମଚନ୍ଦ୍ର ଦେବଙ୍କ ପ୍ରଣୀତ 'ଶ୍ରୀକୃଷ୍ଣ-ଭକ୍ତ-ବାତ୍ସଲ୍ୟ' ନାଟକ, ସଦାଶିବ ଉଦ୍‌ଗାତାଙ୍କର 'ପ୍ରମୁଦିତ ଗୋବିନ୍ଦ', କବି ଅନାଦି ମିଶ୍ରଙ୍କର 'ମଣିମାଳା' ନାଟିକା ପ୍ରଭୃତି ଓଡ଼ିଶାରେ ରଚିତ ହୋଇଥିଲା । ଅବଶ୍ୟ କବିରାଜ ଜୟଦେବଙ୍କ ରଚିତ ଗୀତଗୋବିନ୍ଦଟିକୁ ଗୋଟିଏ ଗୀତାଭିନୟ ରୂପେ ଗ୍ରହଣ କରାଯାଇପାରେ । ଏ ସମ୍ବନ୍ଧରେ ବହୁ ଆଲୋଚକ ମତ ପୋଷଣ କରିଛନ୍ତି ।

ସେହି ଦୃଷ୍ଟିରୁ 'ଅଭିନବ ଗୀତଗୋବିନ୍ଦ', 'ମୁକୁନ୍ଦ ବିଳାସ', 'କୃଷ୍ଣ ଲୀଳାମୃତ' 'ଶିବ ଲୀଳାମୃତ' ଆଦି ଓଡ଼ିଶାରେ ରଚିତ ଗୀତିନାଟ୍ୟ ଗୁଡ଼ିକୁ ଗୀତାଭିନୟ ରୂପେ ଗ୍ରହଣ କରାଗଲେ ଅସମୀଚୀନ ହେବନାହିଁ । ଏହି ସଂସ୍କୃତ ନାଟ୍ୟ ପରମ୍ପରାର ଶୈଳୀରେ ଅନୁପ୍ରାଣିତ ହୋଇ ଓଡ଼ିଆ କବିମାନେ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀରୁ ବିଭିନ୍ନ ଲୀଳା ରଚନା କରିଥିଲେ । ଆହୁରି ମଧ୍ୟ ଅନେକାଂଶରେ ଜଣାଯାଏ, ବଳରାମ ଦାସଙ୍କ ରଚିତ 'ଲକ୍ଷ୍ମୀ ପୁରାଣ' କଥୋପକଥନ ଛଳରେ ଲେଖାଯାଇଥିବାରୁ, ତାହା ସଂସ୍କୃତ ରୂପକ ବିଭାଗର 'ଭାଣ' ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ହୋଇପାରେ । ପ୍ରକୃତରେ ଦେଖିବାକୁ ଗଲେ ଶ୍ରୀ ଜଗନ୍ନାଥ, ବଳରାମ, ସେବକବୃନ୍ଦ, ଅଷ୍ଟବେତାଳ, ଯୋଗୀ ଆଦି ଅଭିନେତା, ମହାଲକ୍ଷ୍ମୀ ଓ ତାଙ୍କର ଦାସୀ ପରିବାର ପ୍ରଭୃତି ଅଭିନେତ୍ରୀଙ୍କ ମଧ୍ୟରେ କଥୋପକଥନ ହେଉଛି ଲକ୍ଷ୍ମୀପୁରାଣର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ସେହି ଦୃଷ୍ଟିରୁ ତାହାକୁ ଓଡ଼ିଆ ସୁଆଙ୍ଗ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରି ଆଲୋଚକ ଡକ୍ଟର ମାନସିଂହ ଯେଉଁ ମତ ଦେଇଛନ୍ତି, ତାହା ଅତ୍ୟନ୍ତ ଯୁକ୍ତିଯୁକ୍ତ ବୋଲି ମନେହୁଏ । ଏହି ଦେଶରେ ଶ୍ରୀରାମ ଶ୍ରୀକୃଷ୍ଣଙ୍କ ଚରିତ ଅବଲମ୍ବନରେ ରାମଲୀଳା, କୃଷ୍ଣଲୀଳା, ଭାରତଲୀଳା ଓ ନୃସିଂହଲୀଳା (ପ୍ରହ୍ଲାଦ ନାଟକ) ଆଦି ବିଭିନ୍ନ କବିଙ୍କ ଦ୍ୱାରା ଲିଖିତ ହୋଇ ପୁରପଲ୍ଲୀରେ ଅଭିନୀତ ହେଲା । ସେହି ଭାବଧାରାରେ ଅନୁପ୍ରାଣୀତ ହୋଇ କବି ଜଗନ୍ନାଥ ପାଣି ଗୀତାଭିନୟ ଗୁଡ଼ିକ ରଚନା କରିଥିଲେ ।

ସଂସ୍କୃତ ରୂପକର ଦଶପ୍ରକାର ଭେଦ ଓ ଅଠର ପ୍ରକାର ଉପରୂପକ ମଧ୍ୟରେ କବି ଜଗନ୍ନାଥ ପାଣିଙ୍କ ଗୀତାଭିନୟଗୁଡ଼ିକ ଉପରୂପକ କୋଟିରେ ଅନ୍ତର୍ଭୁକ୍ତ । ତାଙ୍କ ଗୀତାଭିନୟ ଗୁଡ଼ିକରେ ନାୟକ ଦେବତା, ଅସୁର ଓ ମାନବ ତଥା ନାୟିକା ମଧ୍ୟ ଏହିପରି ତିନି ଶ୍ରେଣୀର ଥିବାର ଦେଖାଯାଏ । କବି ଗୀତିନାଟ୍ୟ ଗୁଡ଼ିକର ଆରମ୍ଭରେ ମଙ୍ଗଳାଚରଣ ସୂଚକ କେତୋଟି ପଦ ଲେଖି ପ୍ରତିପାଦ୍ୟ ବିଷୟର ସୂଚନା ଦେଇଛନ୍ତି । ସେ ପ୍ରତ୍ୟେକ ଘଟଣା ଗୁଡ଼ିକୁ ଅଙ୍କ ଓ ଦୃଶ୍ୟ ଭାବରେ ବିଭକ୍ତ ନକରି ଗୋଟିଏ ଗୋଟିଏ ଗୀତକୁ 'ଛାନ୍ଦ' ନାମରେ ନାମିତ କରିଛନ୍ତି । ଗୋଟିଏ ଦୃଶ୍ୟର ପରିସମାପ୍ତି ପରେ ଅନ୍ୟ ଦୃଶ୍ୟର ଆରମ୍ଭ ସେ ଗୋଟିଏ ସ୍ୱତନ୍ତ୍ର ଗୀତରେ କରିଛନ୍ତି ଏବଂ ପ୍ରାୟ ଅଧିକାଂଶ ଗୀତର ଆରମ୍ଭରେ ନାଟ୍ୟଶାସ୍ତ୍ରର ପ୍ରବେଶକ ଅନୁସାରେ ଉପକ୍ରମ କରିଛନ୍ତି । ସେଥିରୁ ଜଣାଯାଏ, କବି ଉଭୟ ଶ୍ରାବ୍ୟ କାବ୍ୟ ତଥା ଦୃଶ୍ୟ କାବ୍ୟକୁ ଆଖି ଆଗରେ ରଖି ନିଜର ପୁସ୍ତକ ଗୁଡ଼ିକୁ ରଚନା କରିଛନ୍ତି । ତେଣୁ ତାଙ୍କର ପୁସ୍ତକ ଗୁଡ଼ିକୁ ଉଭୟ ଦୃଶ୍ୟ ଓ ଶ୍ରାବ୍ୟ କାବ୍ୟର ଅନ୍ତର୍ଭୁକ୍ତ କରାଗଲେ ଆଦୌ ଅସମୀଚୀନ ହେବନାହିଁ ।

କବି ଜଗନ୍ନାଥ ପାଣିଙ୍କ ବହୁମୁଖୀ ପ୍ରତିଭା ସମ୍ବନ୍ଧରେ ବିଶେଷ ଆଲୋଚନା କରି ତାଙ୍କ ରଚିତ ପନ୍ଦରଖଣ୍ଡ ପୁସ୍ତକ ଓ ଦଶଖଣ୍ଡ କବିତା (ଅଦ୍ୟାପି ସଂଗୃହୀତ) ସମ୍ବନ୍ଧରେ ସ୍ୱତନ୍ତ୍ର ଆଲୋଚନା ହେବା ବିଧେୟ। ତା' ଫଳରେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ କବିଙ୍କର କିପରି ଦକ୍ଷତା ଥିଲା ତା'ର ଆଭାସ ମିଳିପାରିବ। ତେଣୁ କବି ଜଗନ୍ନାଥ ପାଣିଙ୍କ ଲିଖିତ ପ୍ରତ୍ୟେକ ପୁସ୍ତକ ଉପରେ ଗୋଟିଏ ଗୋଟିଏ ଅଧ୍ୟାୟ ପ୍ରସ୍ତୁତ ପୁସ୍ତକରେ ସନ୍ନିବେଶିତ ହୋଇଛି।

---

# ଦକ୍ଷଯଜ୍ଞ

ଦକ୍ଷଯଜ୍ଞ ସ୍ୱ ପ୍ରକଟି ଊଣଶତି ଛାନ୍ଦ ବା କଳ୍ପନାରେ ରଚିତ ଏକ ପୌରାଣିକ ଗୀତିନାଟ୍ୟ । ଏଥିରେ ନାୟକ ଦେବାଧିଦେବ ମହାଦେବ ଏବଂ ନାୟିକା ମହାସତୀ ପାର୍ବତୀ । ଅନ୍ୟାନ୍ୟ ଅଭିନେତା ଓ ଅଭିନେତ୍ରୀ ଭାବରେ ଭୃଗୁ, ଶୁକଦେବ ଭରଦ୍ୱାଜ ନାରଦ ଆଦି ମୁନି, ବ୍ରହ୍ମା ବୃହସ୍ପତି ଆଦି ଦେବତା, ଦୁର୍ଗା ଗଙ୍ଗା ଦକ୍ଷପତ୍ନୀ ଆଦି ଦେବୀଙ୍କର ସମାଗମ କରାଇ କବି ଗୀତନାଟ୍ୟଟିକୁ ଅତ୍ୟନ୍ତ ରୋଚକ କରାଇଛନ୍ତି । ପ୍ରଥମ ଛାନ୍ଦ ବା ଗୀତରେ ଦକ୍ଷପତ୍ନୀଙ୍କ ଜନ୍ମବାର୍ତ୍ତା, ଦ୍ୱିତୀୟ ଛାନ୍ଦରେ ଶିବଙ୍କଦ୍ୱାରା ଦକ୍ଷଙ୍କର ଅପମାନ, ଦକ୍ଷଙ୍କର ଶିବଙ୍କ ପ୍ରତି ଅଭିଶାପ ଏବଂ ନନ୍ଦୀଙ୍କ ଦ୍ୱାରା ଦକ୍ଷଙ୍କ ପ୍ରତି ଅଭିଶାପ, ତୃତୀୟ ଓ ଚତୁର୍ଥ ଛାନ୍ଦରେ ଗଙ୍ଗା ଓ ପାର୍ବତୀଙ୍କ କଳହ, ପଞ୍ଚମ ଛାନ୍ଦରେ ପାର୍ବତୀଙ୍କ ବିରୁଦ୍ଧରେ ଶିବଙ୍କ ନିକଟରେ ଗଙ୍ଗାଙ୍କ ଅଭିଯୋଗ ଓ ଶିବଙ୍କ ପ୍ରବୋଧନା, ଷଷ୍ଠ ଛାନ୍ଦରେ ଗଙ୍ଗାଙ୍କ ବିରୁଦ୍ଧରେ ଶିବଙ୍କଠାରେ ପାର୍ବତୀଙ୍କର ଅଭିଯୋଗ ଏବଂ ଶିବଙ୍କ ପ୍ରବୋଧନା, ସପ୍ତମ ଛାନ୍ଦରେ ଦକ୍ଷଙ୍କ ଯଜ୍ଞ ଆୟୋଜନ, ଶିବଙ୍କ ବ୍ୟତୀତ ତେତିଶକୋଟି ଦେବଦେବୀଙ୍କୁ ନିମନ୍ତ୍ରଣ, ଅଷ୍ଟମ ଛାନ୍ଦରେ ହରଗୌରୀଙ୍କୁ ଯଜ୍ଞ ନିମିତ୍ତ ନିମନ୍ତ୍ରଣ ଦେବାଲାଗି ଦକ୍ଷ ଓ ତାଙ୍କ ପତ୍ନୀ ପ୍ରସୂତି ଦେବୀଙ୍କ ଉକ୍ତିପ୍ରତ୍ୟୁକ୍ତି, ନବମ ଛାନ୍ଦରେ ପାର୍ବତୀଙ୍କ ସ୍ନାନ ଓ ବେଶ ବର୍ଣ୍ଣନା, ଦଶମ ଛାନ୍ଦରେ ଦକ୍ଷଯଜ୍ଞ ଭଙ୍ଗ ଲାଗି ନାରଦଙ୍କ କଳ୍ପନା, ପାର୍ବତୀଙ୍କ ଆଗରେ ଦକ୍ଷଙ୍କ ବିରୁଦ୍ଧରେ ଅଭିଯୋଗ, ଏକାଦଶ ଛାନ୍ଦରେ ପିତାଙ୍କ ବ୍ୟବହାର ଯୋଗୁ ପାର୍ବତୀଙ୍କ ରୋଦନ, ଦ୍ୱାଦଶ ଗୀତରେ ଭଗିନୀ ରେବତୀଙ୍କଦ୍ୱାରା ପାର୍ବତୀଙ୍କୁ ପ୍ରବୋଧନା, ତ୍ରୟୋଦଶ ଗୀତରେ ଯୋଗୀଶ୍ୱର ମହାଦେବଙ୍କୁ ରେବତୀଙ୍କର ଦର୍ଶନ ଓ ଭୟରେ ପଳାୟନ, ଚତୁର୍ଦ୍ଦଶ ଗୀତରେ ଯଜ୍ଞ ଦର୍ଶନକୁ ଯିବାଲାଗି ପାର୍ବତୀଙ୍କ ଅଳି ଓ ଶିବଙ୍କ ପ୍ରବୋଧନା, ପଞ୍ଚଦଶ ଗୀତରେ ଦକ୍ଷପୁର ଉଦ୍ଦେଶ୍ୟରେ ପାର୍ବତୀଙ୍କ ପ୍ରସ୍ଥାନ, ଷୋଡ଼ଶ ଗୀତରେ ମହାଦେବଙ୍କ ଆଦେଶରେ ଦେବୀଙ୍କ ପଛେ ପଛେ ନନ୍ଦୀଙ୍କ ଅନୁଗମନ, ସପ୍ତଦଶ ଗୀତରେ ନିଜ ଅଙ୍ଗରେ ଆଭରଣ ନଥିବା ହେତୁ ପାର୍ବତୀଙ୍କ ଖେଦ ଓ ଆଭରଣ ଦେଇ ଯିବା ଲାଗି କୁବେରଙ୍କୁ ନିମନ୍ତ୍ରଣ, ଅଷ୍ଟାଦଶ ଗୀତରେ କୁବେରଙ୍କ ପ୍ରଦତ୍ତ ଅଳଙ୍କାରର ବର୍ଣ୍ଣନା, ଊନବିଂଶ ଗୀତରେ ଶିବଙ୍କୁ ଗ୍ରନ୍ଥି

ଆସିଥିବାରୁ ପାର୍ବତୀଙ୍କ ଅନୁଶୋଚନା, ବିଂଶ ଛାନ୍ଦରେ ପାର୍ବତୀଙ୍କର ଯଜ୍ଞଶାଳାରେ ପ୍ରବେଶ ଓ ଦକ୍ଷପତ୍ନୀଙ୍କଦ୍ୱାରା ସମ୍ବର୍ଦ୍ଧନା, ଏକବିଂଶ ଛାନ୍ଦରେ ଅପର୍ଣ୍ଣାଙ୍କ ଅଳଙ୍କାର ଦେଖି ଭଗିନୀମାନଙ୍କର ଈର୍ଷ୍ୟା, ଦ୍ୱାବିଂଶ ଛାନ୍ଦରେ ଯଜ୍ଞଶାଳାପୁରରେ ପାର୍ବତୀଙ୍କ ପ୍ରବେଶ, ତ୍ରୟୋବିଂଶ ଗୀତରେ ପାର୍ବତୀଙ୍କୁ ଦେଖି ଦକ୍ଷଙ୍କ କ୍ରୋଧ ତଥା ଶିବନିନ୍ଦା, ଚତୁର୍ବିଂଶ ଛାନ୍ଦରେ ଶିବଙ୍କ ନିନ୍ଦା ଶୁଣି ପାର୍ବତୀଙ୍କ ଦେହ ତ୍ୟାଗ, ପଞ୍ଚବିଂଶ ଗୀତରେ ଉମାଙ୍କ ଆତ୍ମହତ୍ୟା ଶୁଣି ଦକ୍ଷପତ୍ନୀଙ୍କ ଶୋକ, ଷଡ୍‌ବିଂଶ ଛାନ୍ଦରେ ନାରଦଙ୍କ ଦ୍ୱାରା ଶିବଙ୍କ ଆଗରେ ପାର୍ବତୀଙ୍କ ମୃତ୍ୟୁ ବର୍ଣ୍ଣନା, ସପ୍ତବିଂଶ ଗୀତରେ ପାର୍ବତୀଙ୍କ ମୃତ୍ୟୁରେ ଶିବଙ୍କ କ୍ରନ୍ଦନ ଓ ମୂର୍ଚ୍ଛା, ଅଷ୍ଟବିଂଶ ଗୀତରେ ଶିବଙ୍କ କ୍ରୋଧ, ବୀରଭଦ୍ରଙ୍କ ଜନ୍ମ ତଥା ଯାଗଧ୍ୱଂସ ଲାଗି ରୁଦ୍ରଗଣଙ୍କ ଜନ୍ମ, ଊନବିଂଶ ଛାନ୍ଦରେ ବୀରଭଦ୍ରାଦି ରୁଦ୍ରଗଣଙ୍କଦ୍ୱାରା ଦକ୍ଷଯଜ୍ଞ ଭଙ୍ଗ ଏବଂ ତ୍ରିଂଶ ଛାନ୍ଦରେ ବ୍ରହ୍ମାଦି ଦେବତାମାନଙ୍କର କୈଳାସକୁ ଗମନ, ଶିବଙ୍କୁ ପ୍ରବୋଧନା, ଛାଗମସ୍ତକଧାରୀ ଦକ୍ଷଙ୍କ ନବଜନ୍ମ ଲାଭର ବର୍ଣ୍ଣନା କରି କବି ଜଗନ୍ନାଥ ପାଣି ଗୀତନାଟ୍ୟଟିକୁ ସର୍ବାଙ୍ଗ ସୁନ୍ଦର ଭାବରେ ପରିବେଷଣ କରିଛନ୍ତି ।

ସମୁଦାୟ ଗୀତନାଟ୍ୟଟିରେ ଅନେକ ଗୁରୁତ୍ୱପୂର୍ଣ୍ଣ ଦୃଶ୍ୟର ବର୍ଣ୍ଣନା କରାଯାଇଥିଲେ ହେଁ କେତୋଟି ବର୍ଣ୍ଣନା ସାଧାରଣ ସାମାଜିକଙ୍କ ଦୃଷ୍ଟିରେ ଅତ୍ୟନ୍ତ କୌତୂହଳୋଦ୍ଦୀପକ ତଥା ଉପଭୋଗ୍ୟ ହୋଇ ପାରିଛି । ତନ୍ମଧ୍ୟରେ ସର୍ବପ୍ରଥମେ ଗଙ୍ଗା ଓ ଚଣ୍ଡୀଙ୍କ ସପତ୍ନୀବାଦ ବର୍ଣ୍ଣନା କରି କବି ତତ୍କାଳୀନ ସମାଜରେ ସପତ୍ନୀ କଳହର ଯେଉଁ ଆଲେଖ୍ୟ ଉପସ୍ଥାପିତ କରିଛନ୍ତି, ତାହା ସବୁ ଶ୍ରେଣୀର ଦର୍ଶକ ଓ ଶ୍ରୋତାଙ୍କ ପକ୍ଷରେ ବେଶ୍ ଉପଭୋଗ୍ୟ ହୋଇଛି । ଉଦାହରଣ ସ୍ୱରୂପ ଚଣ୍ଡୀ ଓ ଗଙ୍ଗାଙ୍କର ଭର୍ତ୍ସନାମୂଳକ ଉକ୍ତି ପ୍ରତ୍ୟୁକ୍ତି ଏଠାରେ ପ୍ରଦତ୍ତ ହେଲା—

ଗଙ୍ଗା—ତ୍ରିପୁରାକୁଳେ ସର୍ବାଗ୍ରେ କି କଳଙ୍କ କଲୁ,
ଉଲଗ୍ନ ହୋଇଣ ଯତି ଛାତିରେ ଚଢ଼ିଲୁ ।

× × ×

ଚଣ୍ଡୀ—ହୁଁ ହୁଁ କାର କରି ଚଣ୍ଡୀ କହେ ପ୍ରଚଣ୍ଡରେ
କି କହିଲୁ ଜାହ୍ନବୀ ଲୋ କହ ଆଉ ଥରେ ।
ସ୍ୱାମୀ ସୋହାଗିନୀ ଏଡ଼େ କେବେ ହେଲୁ କହ...

× × ×

ଗଙ୍ଗା—ରଜ ଜେମା ହୋଇ ଲଜ ତୋର ନାହିଁ ମୁହଁ ଦେଖାଉ ଆଡ଼ୁରିଲେ ।
ବାରବୁଲି ଗଉଡ,
ଯାଆ ଯାଆ ମୋ ଘରୁ ବାହାରିଲେ ।

ଚଣ୍ଡୀ—ଆଲୋ ଭଗିରଥି, ଅଭାଗି ଦୁର୍ମତି କ ଭାଗୀ ହେଲି ମୁଁ ତୋର,
କାହାକୁ ଅଲଜ୍ଜା କହୁଲେ ନିର୍ଲଜ୍ଜା ଜଳ ଜଳ ଜଳଧାର ଲୋ,
ପଳା ପଳା ଭଷାଣି,
ଫଳାଫଳ ଦେବ ଏହିକ୍ଷଣି ଲୋ ।
× × ×
ଗଙ୍ଗା—କି କହିଲୁ କି କହିଲୁ ଆଉ ଥରେ କହନି ଲୋ କଳିହୁଡ଼ି !
କାଲି ତୋହିଲାଗି ଶିବଙ୍କୁ ସଭାରୁ ଦକ୍ଷ ଦେଲାପରା କାଢ଼ି ଲୋ ।
କେଡ଼େ କଳଙ୍କ ହେଲା,
ସ୍ତ୍ରିଷ୍ଟ ହୋଇ ରୁ ହେଲୁ ଲଙ୍ଗଳା ଲୋ ।
ଚଣ୍ଡୀ—ତୁଲୋ ଲଙ୍ଗଳି, ବାର ବାଙ୍କ ଗଳି, ଅମଙ୍ଗଳ ତୋ ମୁହାଁଣି,
ଯୁଆର ବାରେଣୀ ହେଲେ ତୋ ଉଜାଣି, ଉପରକୁ ଉଠେ ପାଣି ଲୋ ।
କୁଳ କଳଙ୍କି ଗଙ୍ଗା
ମହି ନଇରେ ବୁଡ଼ାଉ ଡଙ୍ଗା ଲୋ !
ଗଙ୍ଗା—ଏହି ମତି ଗର୍ବ କରି ପରାଭବ ପାଇଲୁ କେବେ ନ ଗଲା,
ବିଧାତା ଜାଣି ତୋ ଗଉର ରୂପକୁ ଛଡ଼ାଇ କାଳି ଲେପିଲା ଲୋ,
ଅଲୋ ଅଣ୍ଡିରାଚଣ୍ଡୀ !
ମୈଂଷାସୁରକୁ ମାଇଲୁ ଭଣ୍ଡି ଲୋ ।
ଚଣ୍ଡୀ—ବରପୁତ୍ରା ହୋଇ ହିଙ୍ଗୁଳାଟେ ଯାଇ ପାଶୋରିଲୁ ପୂର୍ବ କଥା
ଶିବ ଗୁଡ଼ି ପାଞ୍ଚ ତନୁକୁ ବରିଲୁ ହୋଇଣ ଅମରମତ୍ତା ଲୋ,
ଗଙ୍ଗା ବୋଇଲେ ଥିବ,
ଗାଙ୍ଗୀ ବୋଲି ବାରଣସୀ ଯିବ ଲୋ ।"

ସାଧାରଣ ପରିବାରେ ସପତ୍ନୀଙ୍କ କଳହରେ ଅଭାଗା ସ୍ୱାମୀର ଦୁଃଖ କହିଲେ ନସରେ । ଦୁଇ ସ୍ତ୍ରୀଙ୍କ ମଧ୍ୟରେ କଳହ ଲଗିଲେ ସ୍ୱାମୀ ବିଚରା ଅସହାୟ ହୋଇପଡ଼େ ଏବଂ ଉଭୟ ସ୍ତ୍ରୀଙ୍କୁ ସନ୍ତୁଷ୍ଟ କରିବାଲାଗି ସେ ଯଥାସମ୍ଭବ ଚେଷ୍ଟା କରେ । ସେହି ଅବସରରେ ଉଭୟ ପତ୍ନୀ ସ୍ୱାମୀଙ୍କଠାରୁ ନିଜର ଦାବୀ ଆଦାୟ କରିନିଅନ୍ତି ଏବଂ ବିଚରା ସ୍ୱାମୀ ଅସହାୟ ଅବସ୍ଥାରେ ପଡ଼ି ଜଣଙ୍କର ଅଗୋଚରରେ ଅନ୍ୟ ଜଣକୁ ସନ୍ତୁଷ୍ଟ କରିବାକୁ ଯାଇ ତା'ର ସମସ୍ତ ଦାବୀକୁ ମାନିନିଏ । ପ୍ରସ୍ତୁତ ପ୍ରସଙ୍ଗରେ ପ୍ରଦତ୍ତ ଗଙ୍ଗା ଓ ଗୌରୀଙ୍କ କଳହରେ ଶିବ ଅସହାୟ ହୋଇପଡ଼ିଛନ୍ତି । ଗଙ୍ଗାଙ୍କ ଦାବୀ ମାନିନେବାକୁ ଯାଇ ତାଙ୍କୁ ଚିରଦିନ ଲାଗି ମସ୍ତକରେ ଧାରଣ କରିଛନ୍ତି । ସତୀଙ୍କ ଅଭିଯୋଗମତେ ତାଙ୍କୁ ମଧ୍ୟ ପ୍ରବୋଧନା ଦେବାକୁ ଯାଇ, ତାଙ୍କୁ ସନ୍ତୁଷ୍ଟ କରାଇବା

ଉଦ୍ଦେଶ୍ୟରେ ଅର୍ଦ୍ଧାଙ୍ଗିନୀ ରୂପେ ଗ୍ରହଣ କରିଛନ୍ତି । ଏହି ପ୍ରସଙ୍ଗରେ କବି ଜଗନ୍ନାଥ ପାଣିଙ୍କ ରଚିତ ଶିବଙ୍କ ଆଗରେ ସତୀଙ୍କ ଅନୁଯୋଗ ଭାଷା ଓ ଭାବ ଦୃଷ୍ଟିରୁ ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଛି । କବି ଭାବାନୁକୂଳ ଭାଷା ଓ ଘଟଣାନୁକୂଳ ଭାବରାଜିର ସଂଯୋଜନା କରି କାବ୍ୟଟିକୁ ଅତ୍ୟନ୍ତ ମନୋରମ କରିଛନ୍ତି ।

ରଙ୍ଗ ଢଙ୍ଗ ହଙ୍ଗାମ ମୁଁ ସହି ନ ପାରିବି ।
ଦେଶାନ୍ତରୀ ହୋଇ ମେଷାରୂଢ଼େ ଝାସ ଦେବି ॥
କାଲି ଆସି କାଲିଆଣୀ ମାଲିକାଣୀ ହେଲି ।
ମୁଣ୍ଡମାଳିନୀ କାଳିନୀ ବୋଲି ଗାଳିଦେଲ ॥
ଜଗତେ ଜାଣନ୍ତି ଶମ୍ଭୁ ଘରେ ସୁଖ ଯେତେ ।
ଥାଉ ଆଉ ସୁଖ ଶଙ୍ଖ-ଶଙ୍ଖା ନାହିଁ ହାତେ ॥
ଅନ୍ନ ବିନା ଅନ୍ନଦା ମୁଁ ଅର୍ଣ୍ଣବରେ ଆସି ।
ସଦାଦିନେ ସଦାଶିବ କରେ ଏକାଦଶୀ ॥
ଜନକପୁରେ କନକ ଗଉରୀ ମୁଁ ଥିଲି ।
ଶମ୍ଭୁ ଘରେ ଆସି ଗାଳିଖାଇ କାଳୀ ହେଲି ॥
ରାଜବାଳା ପେଟଜାଳା ସହି ସହି ମୁହିଁ ।
ଭିକ୍ଷାଖାଇ ପଛକୁ ହୋଇଲି ସବାଖାଇ ॥
ତୈଳବିନା ନଟା ହୋଇ ଜଟା ହେଲା କେଶ ।
କହିଲେ ବସିବ ମୋଟା ପୋଟା ଗୋଟା ଦେଶ ॥
ପୁରମଥନ ଏପୁରେ କାର୍ଯ୍ୟ ନାହିଁ ମୋର ।
ରଙ୍ଗ ବଙ୍ଗାଳୁଣୀ ସଙ୍ଗ କରି ଘର କର ॥

ଶିବଙ୍କୁ ନିମନ୍ତ୍ରଣ ନଦେବା ଲାଗି ଦକ୍ଷଙ୍କ ପ୍ରତିଜ୍ଞା ଶୁଣି ଦକ୍ଷପତ୍ନୀ ଅତ୍ୟନ୍ତ କ୍ଷୋଭ ପ୍ରକାଶ କରିଛନ୍ତି । ଗୋଟିଏ ଶୁଭ କର୍ମରେ ଘରକୁ ଝିଅ ଜୋଇଁ ନ ଆସିଲେ ମା'ର ମନରେ ଯେଉଁ ଗଭୀର ଦୁଃଖ ଜାତ ହୁଏ, କବି ଜଗନ୍ନାଥ ତାହା ଦକ୍ଷପତ୍ନୀଙ୍କ ମୁଖରେ ପ୍ରକାଶ କରିଛନ୍ତି । ପରିଶେଷରେ ଦକ୍ଷଙ୍କର ଅଟଳ ପ୍ରତିଜ୍ଞା ଶୁଣି ଦକ୍ଷପତ୍ନୀଙ୍କର ମନରେ ମର୍ମନ୍ତୁଦ ବେଦନା ଜାତ ହୋଇଛି । ସେ ଝିଅର ଅବସ୍ଥା ଚିନ୍ତାକରି ଅତ୍ୟନ୍ତ ମର୍ମାହତ ହୋଇ କହିଛନ୍ତି—

"ମାନିନୀ ରତନ ଉମା ଶୁଣିଲେ ଏ ମାନ ।
ଜାଣିଲି ନିଶ୍ଚୟ ଆଉ ନ ରଖିବ ପ୍ରାଣ ।
ହେ ପ୍ରାଣନାଥ !
କନ୍ୟାହତ୍ୟା ହୋଇ କିମ୍ପା କର ଅବିହିତ ॥"

କେବଳ ସେତିକି ନୁହେଁ, ଗର୍ଭଧାରିଣୀ ଜନନୀ ବଞ୍ଚି ଥାଉ ଥାଉ ଘରର ଏକ ମନୋଜ୍ଞ ମହୋତ୍ସବ ବେଳେ ଝିଅ ଜ୍ୱାଇଁ ନ ଆସିବା ଫଳରେ, ଜଗତରେ ଯେଉଁ ତୁଣ୍ଡବାଇଦ ରଟିବ ତାହା ଚନ୍ଦ୍ରାଜିର ନାରଦଙ୍କୁ ପଠାଇବା ଲଗି ଦକ୍ଷପତ୍ନୀ ମନେ ମନେ ସ୍ଥିର କରିଛନ୍ତି ।

"କି ବୋଲି ବୋଲିବେ ଏହା ଶୁଣି ତ୍ରିଭୁବନ ।
ଗର୍ଭଧାରୀ ଜୀଇଥାଇ କଲୁ ଭିନ୍ନାଭିନ୍ନ
ଆହେ ପ୍ରାଣନାଥ,
ନାରଦଙ୍କୁ ପଠାଇବା ବୋଲେ ଜଗନ୍ନାଥ ।"

ହିମାଳୟକୁ ଯିବା ବାଟରେ କୁବେର ପାର୍ବତୀଙ୍କୁ ଅଭ୍ୟର୍ଥନା କରି ତାଙ୍କ ଶ୍ରୀଅଙ୍ଗରେ ବହୁବିଧ ଅଳଙ୍କାର ଖଞ୍ଜି ଦେଇଥିଲେ । ସେ ଅଳଙ୍କାର ଗୁଡ଼ିକ ମଧ୍ୟରେ ନେପାଳୀ ନୂପୁର, ଉତ୍କଳୀ ହଂସୁଳି, ଗୁଜରାଟୀ ଗୁଜୁରିମାଳ, ଗ୍ୱାଲିଅର ଗୋଲମହଲ, ବାର୍କି ରାଜ୍ୟର ବାଙ୍କିଆ, କଟକିରେ ଯାଚସର କଟକୀ ଚନ୍ଦ୍ରହାର, ହାଇଦ୍ରାବାଦୀ ହାର, ତେଲଙ୍ଗୀ ଗୋଠ, ମାନ୍ଦ୍ରାଜୀ ମୋହନ ଜଞ୍ଜିରି, ଯାଜପୁରୀ ବାଜୁବନ୍ଧ, ମଥୁରାର ବୀଣାରୂପ, ଦ୍ରାବଡ଼ ଦେଶର ତାଡ଼, କନୌଜ କଡ଼ୀ, କାମାକ୍ଷୀ ଚୂଡ଼ୀ, ପଞ୍ଜାବୀ ପହିଁଚ, ବାଲେଶ୍ୱରୀ ଦୁନାଗଜ୍ରୁ, ପାଞ୍ଚାଳର ପୋହଳା ଦୁନାଦାନା, ବଙ୍ଗଦେଶୀ ହାର, ଜୟପୁରୀ ମୋହର ହାର, ମୋହନପୁରୀ ମୋହନ ମାଳା, ବ୍ରହ୍ମଦେଶୀ କାଠହାର, କଲିକତା ଚମ୍ପାକଳୀ, ମୁର୍ଶିଦାବାଦ ହଂସୁଳୀ, ମଚ୍ଛଦେଶୀ ମଚ୍ଛମୁଦ, କର୍ଣ୍ଣାଟର କର୍ଣ୍ଣଫୁଲ, କାଶୀର କାପ, ହିନ୍ଦୁସ୍ଥାନୀ ନଥ, ମିଥିଳାର ମଥାମଣି, କାଉଁରି ଦେଶର ଚଉଁରି ଚନ୍ଦ୍ର ଝୁମ୍ପା ଆଦି ନିଜ ଭଣ୍ଡାରରୁ ବାହାରକରି ଚଣ୍ଡୀଙ୍କର ଶ୍ରୀଅଙ୍ଗରେ ମଣ୍ଡିଦେଇ କୁବେର ପାଦରେ ପଡ଼ିଥିଲେ ।

"ମିଥିଳାର ମଥାମଣି ମୋତିଜାଲି ସୀମନ୍ତିନୀ
କାଉଁରି ଚଉଁରି ଚନ୍ଦ୍ରଝୁମ୍ପା,
ସୁବର୍ଣ୍ଣ ମୁକୁଟ ଶିରେ ଚନ୍ଦ୍ରମଣି ମାଣିକ୍ୟରେ
ଅରୁଣ ଝଟକେ ଶମ୍ପା ଚମ୍ପା,
ହାମ୍ବୋର ଜଙ୍ଗାଲ ଶାଢ଼ୀ ବସନ୍ତ ଭଉଁରି ଧାଡ଼ି
ପିନ୍ଧାଇ କୁବେର ପାଦେ ପଡ଼େ,
ଆଭରଣ ଦେଖି ଦେବୀ ଆନନ୍ଦ ହୋଇଲେ କବି
ଜଗନ୍ନାଥ ଭଣେ ବେଶ ଛନ୍ଦେ ।"

ପାର୍ବତୀ ଅମୂଲ୍ୟ ରତ୍ନାଭରଣରେ ଭୂଷିତାହୋଇ ଦକ୍ଷପୁରରେ ପହଞ୍ଚିବାକ୍ଷଣି ତାଙ୍କର ଭଗ୍ନୀମାନେ ଅତ୍ୟନ୍ତ ଈର୍ଷାପରାୟଣା ହୋଇଉଠିଲେ । ତଥାପି ସେମାନେ ନିଜର ମନୋଭାବ ଗୋପନ ରଖି ପାର୍ବତୀଙ୍କୁ ସମ୍ବର୍ଦ୍ଧନା ଜଣାଇ ପୁରକୁ ନେଇଯିବା ଲାଗି ମାତା ପ୍ରସୂତୀ ଦେବୀଙ୍କ ସହିତ ଅଗ୍ରସର ହେଲେ । ସେହି ସମୟରେ ମାତାଙ୍କୁ ଦେଖି ଅଭିମାନିନୀ ପାର୍ବତୀଙ୍କ ହୃଦୟର କୋହ ଉଚ୍ଛୁଳି ପଡ଼ିଲା । ସେ ଅତ୍ୟନ୍ତ ଅଧୀର ହୋଇ ମା'ଙ୍କ ଆଗରେ ମନର ଅଭିମାନ-ପସରା ଖୋଲିଦେଲେ । ସାଧାରଣ ସାମାଜିକ ଜୀବନରେ ଝିଅମାନେ ପିତାମାତାଙ୍କର ଅବହେଳାବଶତଃ ଅଭିମାନ କରି ବସନ୍ତି ଏବଂ ସୁଯୋଗ ପାଇବା ମାତ୍ରେ ସେମାନଙ୍କର ଧୈର୍ଯ୍ୟର ବନ୍ଧ ଭାଙ୍ଗିଯାଏ । ଠିକ୍ ସେହିପରି ସତୀ ନିଜ ସ୍ୱାମୀଙ୍କର ଅପମାନରେ ଅତ୍ୟନ୍ତ ଅଭିମାନିନୀ ହୋଇ ଉଠିଥିଲେ । ମାତାଙ୍କର ଆଶ୍ୱାସନବାଣୀ ଶୁଣିବା ମାତ୍ରେ ସେ ନିଜର ମନୋଭାବ ବ୍ୟକ୍ତ କରି କହୁଛନ୍ତି—

"ମାନିନୀରତନ ଜନନୀ ଚରଣ ଧରିଣ କାନ୍ଦି କହଇ
ଗର୍ଭଧାରୀ ହୋଇ ତୋର ଦୟାନାହିଁ ମୋହଠାରେ କାହିଁପାଇଁ
ଗୋ ଜନନୀ,
ବଡ଼ କଠିନ ତୋ ହୃଦ ପୁଣି ।
ଚଉଦ ଭୁବନେ ଥିଲେ ଯେତିମାନେ ତାହାଙ୍କୁ ବରି ଆଣିଲୁ
ମୁଁ ପରା ସହୋଦ୍ର ଝିଅ ଥାଉଁ ଥାଉଁ ପଦେ ମୋତେ ନ କହିଲୁ
ଗୋ ଜନନୀ,
ପର ପ୍ରାୟ ମୋତେ କଲୁ ଆଣି ।
ଏହା ଯେବେ ଜାଣୁ କାହିଁକି ଆଜନ୍ମୁ ବିଷ ଦେଇ ନ ମାରିଲୁ
ଅଗାଧ ସିନ୍ଧୁରେ ହସ୍ତପଦ ବାନ୍ଧି କମ୍ପା ଭସାଇ ନ ଦେଲୁ
ଗୋ ଜନନୀ,
କାହିଁପାଇଁ କଲୁ ଅଭିମାନୀ ।"

ସ୍ନେହମୟୀ କନ୍ୟାର କରୁଣ କ୍ରନ୍ଦନ ଶୁଣି ଗର୍ଭଧାରିଣୀ ଜନନୀ ଦାକ୍ଷାୟଣୀଙ୍କର ମନରେ ଦାରୁଣ ଦୁଃଖ ଜାତ ହେଲା । ସେ କନ୍ୟାକୁ ଅନେକ ପ୍ରକାର ପ୍ରବୋଧନା ଦେଇ ତା'ର କ୍ରୋଧ ଓ ଅଭିମାନ ଦୂର କରିବା ଲାଗି ବହୁତ ବୁଝାଇ କହିଲେ । କିନ୍ତୁ କୌଣସି ପ୍ରକାରେ ପାର୍ବତୀଙ୍କର ଅଭିମାନ ବୁଝିଲା ନାହିଁ । ପରିଶେଷରେ ଜନନୀ ନିଜର ଦୋଷ ସ୍ୱୀକାର ପୂର୍ବକ କନ୍ୟାର ହସ୍ତ ଧରି କହିଲେ—

"ଅସରେ ସୁନ୍ଦରୀ ପୁରକୁ ଆସିବୁ ସେ ଦୋଷ ମନେ ନ ଧର
ଦୋଷ କଲେ ସିନା ଆମ୍ଭେ କରିଅଛୁ ନରିବା ଆସ ଆହାର,

ରେ ସୁନ୍ଦରି,
ଆସ ଧରୁଛି କର ତୋହର ।"

ତଥାପି ସ୍ୱାମୀଙ୍କ ଅପମାନରେ ଜର୍ଜରିତା ଦେବୀ ଉମାଙ୍କ ଅନ୍ତଃସ୍ଥ ମନ ଚଳେଇଲେ ମାତାଙ୍କ କାକୁତି ମିନତିରେ ମାନିଲା ନାହିଁ । ସେ ପ୍ରଥମେ ଯାଗ ଦେଖିବା ଲାଗି ଯଜ୍ଞଶାଳା ଆଡ଼କୁ ଅଗ୍ରସର ହେଲେ । ସେଠାରେ ଉପସ୍ଥିତ ହୋଇ ଯଜ୍ଞ ମଣ୍ଡପର ଶୋଭା ଦେଖି ପାର୍ବତୀ ଆନନ୍ଦିତା ହେବା ପରିବର୍ତ୍ତେ ଅତ୍ୟନ୍ତ କ୍ରୋଧାନ୍ୱିତା ହୋଇଉଠିଲେ ।

ଏହି ସମୟରେ ଧନମଦରେ ଉନ୍ମତ୍ତ ଦକ୍ଷପ୍ରଜାପତିଙ୍କର ଦୃଷ୍ଟି ନାନା ବେଶ-ଭୂଷଣରେ ସଜ୍ଜିତା ପାର୍ବତୀଙ୍କ ଉପରେ ପଡ଼ିଲା । ସେ ଅଭିମାନିନୀ କନ୍ୟାକୁ ଦେଖି ସାନ୍ତ୍ୱନା ଦେବା ପରିବର୍ତ୍ତେ, ନିତାନ୍ତ କଟୁକ୍ତି ପ୍ରକାଶ କରି ଶିବଙ୍କୁ ତାଚ୍ଛଲ୍ୟ ଭାଷାରେ ଉପର୍ଯ୍ୟନା କଲେ ।

"ଶିବପ୍ରାୟ ନିର୍ଲଜ୍ଜ ଏ ସଂସାରରେ ନାହିଁ ।
ମାନ ମହତ ସରମ କିଛି ନ ଜାଣଇ ॥
× × ×
ମିଛେ ଭାଙ୍ଗି ଖାଇ ଗଞ୍ଜି ମୋଟ କରି ବୁଲେ ।
ଭଣ୍ଡତପୀ ଦଣ୍ଡ ଧରି ଷଣ୍ଢ ଚଢ଼ି ବୁଲେ ॥
× × ×
ବନ୍ଧୁଚ୍ଛେଦ କଲି ଡେବେ ତାକୁ ନାହିଁ ଲାଜ ।
ମାଇପକୁ ସଜ କରି ପଠାଇଛି ଆଜ ॥"

ପିତାଙ୍କ ମୁଖରୁ ନିଜ ସ୍ୱାମୀଙ୍କର ନିନ୍ଦା ଶୁଣି ଉମା କ୍ରୋଧରେ ହତାହତ ଜ୍ଞାନ ହରାଇ ବସିଲେ । ପିତାଙ୍କ ଅପମାନବାଣରେ ଜର୍ଜରିତା ଦେବୀଙ୍କ ଆଖିରୁ ଝରଝର ହୋଇ ଲୁହଧାର ଗଡ଼ିପଡ଼ିଲା । ନାସାରୁ ଉଷ୍ଣନିଶ୍ୱାସ ନିର୍ଗତ ହେଲା । କୋପରେ ତାଙ୍କର ରକ୍ତିମ ଅଧର କମ୍ପିତ ହେବାକୁ ଲାଗିଲା । ସେ ନିଜର ପ୍ରାଣପ୍ରିୟ ସ୍ୱାମୀଙ୍କ ତୁଳନାରେ ପିତା ଦକ୍ଷପ୍ରଜାପତିଙ୍କୁ ନିତାନ୍ତ ତୁଚ୍ଛ ମନେକଲେ ଏବଂ ପିତାଙ୍କୁ ଧନମଦରେ ଜଣେ ଅହଂକାରୀ ପୁରୁଷ ବୋଲି ଜାଣିକରି ଅତ୍ୟନ୍ତ ନିଷ୍ଠୁର ବାଣୀ କହି ସେହିଠାରେ ଆତ୍ମହତ୍ୟା କଲେ ।

"କୋପେ କମ୍ପମାନ ଦେହ ରକ୍ତିମ ଅଧର ।
ଥରହର ହୋଇ କ୍ରୋଧେ କମ୍ପଇ ଶରୀର ॥
କହନ୍ତି ଜାଣିଣ ପିତା ପଥଭ୍ରଷ୍ଟ ହେଲୁ ।
ଧନମଦେ ଗର୍ବ ବହି ଶିବ ନିନ୍ଦା କଲୁ ॥

ବ୍ରହ୍ମା ବିଷ୍ଣୁ ଈଶ୍ୱର ଏ ଭିନ୍ନାଭିନ୍ନ ନାହିଁ ।
ଶିବଙ୍କୁ ଅଶିବ କହୁ ଏତେ ଅଜ୍ଞ ତୁହି ॥
× × ×
ଶିବପ୍ରାପ୍ତ ସ୍ୱାମୀ ମୋତେ ମିଳୁ ଜନ୍ମେ ଜନ୍ମେ ।
ତୋ ପରି ନିଷ୍ଠୁର ପିତା ନ ମିଳୁ ମୋ କର୍ମେ ॥"

'ଶିବପୁରାଣ' ଆଦିର ବର୍ଣ୍ଣନାନୁସାରେ ପାର୍ବତୀ ଦକ୍ଷପ୍ରଜାପତିଙ୍କ ଅପମାନରେ ବ୍ୟଥିତା ହୋଇ ଯଜ୍ଞ କୁଣ୍ଡରେ ଝାସ ଦେଇ ଆତ୍ମହତ୍ୟା କରିଥିଲେ । କିନ୍ତୁ ଶତାଧିକ ବର୍ଷ ତଳେ ଯଜ୍ଞକୁଣ୍ଡରେ ଝାସ ଦେବା ଦୃଶ୍ୟ ଅଭିନୟ ମାଧ୍ୟମରେ ରଙ୍ଗମଞ୍ଚରେ ଦେଖାଇବା ଆଦୌ ସହଜ ହୁଅନ୍ତା ନାହିଁ । ତେଣୁ ଚତୁର କବି ଜଗନ୍ନାଥ ପାଣି ଯୋଗାସନରେ ବସି ପ୍ରାଣାୟାମଦ୍ୱାରା ପବନରୋଧ କରି ଦେବୀ ଆତ୍ମହତ୍ୟା କରିଥିବାର ବର୍ଣ୍ଣନା କରିଛନ୍ତି ।

"ଏତେ କହି ଦେବୀ ଯାଇ ଈଶାନ୍ୟ ଭାଗରେ ।
ଯୋଗାସନେ ବସି ପ୍ରାଣାୟାମ ଚଳାଇଲେ ॥
ପଞ୍ଚଭୂତ ଆତ୍ମା ମଧ୍ୟେ ପ୍ରକୃତି କି ଛିଦି ।
ବ୍ରହ୍ମରନ୍ଧ୍ରେ ନେଇ ମନ ପବନ ନିରୋଧି ॥
ଶିବ ଶିବ ଉଚ୍ଚାରିଲେ ମୁଖେ ତିନିବାର ।
ପ୍ରାଣ ଛାଡ଼ିଗଲା ଗଡ଼ି ପଡ଼ିଲେ ମହୀର ॥"

ନାରଦଙ୍କଠାରୁ ପାର୍ବତୀଙ୍କ ନିଧନ ବାର୍ତ୍ତା ଶୁଣି ମହାଯୋଗୀଶ୍ୱର ହର ପତ୍ନୀ ବିୟୋଗ ଦୁଃଖରେ ସାଧାରଣ ମାନବ ପରି ମୂର୍ଚ୍ଛିତ ହୋଇ ପଡ଼ିଛନ୍ତି ଏବଂ ପରେ ଚେତନା ଲଭ କରି ପାର୍ବତୀଙ୍କ ଗୁଣ ବାହୁନି କ୍ରନ୍ଦନ କରିଛନ୍ତି । କବି ଶିବଙ୍କ ମନରେ ଦୁଃଖର ଭାବ ଉଦ୍ରେକ କରାଇ ଯେଉଁ ଦୃଶ୍ୟଟି ଅବତାରଣା କରିଛନ୍ତି, ତା'ଫଳରେ ସାମାଜିକଙ୍କ ମନରେ କରୁଣ ରସର ଉତ୍ସ ଉଦ୍‌ବେଳିତ ହୋଇଉଠିଛି । ସଂସ୍କୃତ ଶିବପୁରାଣ ଓ ଓଡ଼ିଆ ଶିବପୁରାଣରେ ସତୀଙ୍କ ଦେହତ୍ୟାଗ ସମ୍ବନ୍ଧରେ ଭିନ୍ନ ଭିନ୍ନ ମତ ରହିଛି । ବାସ୍ତବିକ ସଦ୍ୟୋକ୍ତ 'ଶିବପୁରାଣ'ରୁ ଜଣାଯାଏ ଯେ, ଦେବୀ ଶିବଙ୍କ ନିନ୍ଦା ଦକ୍ଷଙ୍କ ମୁଖରୁ ଶୁଣି, ତାଙ୍କ ଦ୍ୱାରା (ଦକ୍ଷଙ୍କ ଦ୍ୱାରା ) ଉତ୍ପାଦିତ ଶରୀର ତ୍ୟାଗକରି ହିମାଳୟ ଅଭିମୁଖେ ଗମନ କଲେ । କାରଣ ଦେବୀଙ୍କୁ ପୁତ୍ରୀରୂପରେ ପାଇବା ଲାଗି ପୂର୍ବରୁ ନଗାଧିରାଜ ହିମାଳୟ ଦୁସ୍ତର ତପସ୍ୟା ଆରମ୍ଭ କରିଥିଲେ ।

"ଇତ୍ୟୁକ୍ତ୍ୱା ପିତରଂ ରୁଷ୍ଟା ସତୀ ସଂତ୍ୟକ୍ତ୍ୱା ସାବ୍ୟଥା ।
ତଦୋତ୍ପନ୍ନଞ୍ଚ ତନୁଂ ତ୍ୟକ୍ତ୍ୱା ହିମବନ୍ତଂ ଯଯୌ ଗିରିମ୍ ।"

କିନ୍ତୁ ଏହି ପ୍ରସଙ୍ଗ ଓଡ଼ିଆ ଶିବପୁରାଣରେ ଅନ୍ୟପ୍ରକାର ବର୍ଣ୍ଣିତ ହୋଇଛି ।

"ଶିବଙ୍କୁ ଏକାଗ୍ର ଚିତ୍ତେ ଚିନ୍ତି ଦାକ୍ଷାୟଣୀ,
ପଡ଼ିଲେ ଯେ ଯାଗାନଳ ମଧ୍ୟେ ସେହି କ୍ଷଣି ।
ତା' ଦେଖି ସକଳେ ହାହାକାର କରୁଛନ୍ତି,
ଅନଳ କୁଣ୍ଡରେ ପଡ଼ି ଭସ୍ମ ହେଲେ ସତୀ ।"

କିନ୍ତୁ ଦେବୀଙ୍କ ମୃତ୍ୟୁ ପରେ ସାଧାରଣ ମାନବ ପରି ପତ୍ନୀର ଗୁଣ ବାହୁନି ଶିବଙ୍କ କ୍ରନ୍ଦନ ଅନ୍ୟତ୍ର ଦେଖାଯାଏନାହିଁ । ଏଠାରେ କବି ଜଗନ୍ନାଥ ଅଭିନୟ ଦର୍ଶନାର୍ଥୀ ମନରେ ପତିପତ୍ନୀ ସମ୍ପର୍କର ଏକ ମଧୁର ଚିତ୍ର ଅଙ୍କନ କରିଛନ୍ତି । ତା'ଦ୍ୱାରା କବି ସେଠାରେ ଉପସ୍ଥିତ ପ୍ରତ୍ୟେକ ଦର୍ଶକର ହୃଦୟ ଶୋକାଭିଭୂତ କରାଇ ସେମାନଙ୍କ ସହାନୁଭୂତି ଲାଭକରିଛନ୍ତି ।

"ମନା କଲି ମନା ନମାନି ସୁମନା ପାପିଷ୍ଠ ଯଜ୍ଞକୁ ଗଲୁ
କେଉଁ ଅନୁକୂଳେ ଯାଇଥିଲୁ ବେଳେ ଆଉ ଫେରି ନଆସିଲୁ ।
ଆରେ ନବ ବନିତା !
ମୋତେ ଦେଇଗଲୁ ଘୋର ଚିନ୍ତା ।
× × ×
ଦୁର୍ଗତିନାଶିନୀ ଦୁର୍ଗା ଦୁର୍ଗମରେ ଏ ଦୁର୍ଗତି ଆଣିଦେଲୁ ।
ଦରିଦ୍ର ବୋଲି କି ହାରିଦ୍ରବିରନା ବାଟରେ ବସାଇ ଗଲୁ ।
ଆରେ ଲାବଣ୍ୟନିଧି !
ଆଉ ନ ଦିଶଇ ମୋତେ ବୁଦ୍ଧି ।
× × ×
ଧିକ ମୋର ଜନ୍ମ ଧିକ ହିନ କର୍ମ ଧିକ ଏ ନିର୍ଲଜ୍ଜ ପ୍ରାଣ
ଧିକ ଏ ଜୀବନ ନ ଯାଇ ରହିଛି ଶୁଣିବାକୁ ତୋ ମରଣ ।
ଜଗନ୍ନାଥ କହଇ,
ଏବେ ଅରକ୍ଷ ହୋଇଲି ମୁହିଁ ।"

ଦେବୀଙ୍କର ଦେହତ୍ୟାଗ ପରେ ଶିବଙ୍କ କ୍ରୋଧ, ବୀରଭଦ୍ରର ଜନ୍ମ, ରୁଦ୍ର ଗଣଙ୍କର ଦକ୍ଷଯଜ୍ଞଶାଳାରେ ପ୍ରବେଶ ଓ ଦକ୍ଷଙ୍କର ଶିରଚ୍ଛେଦନ ବୃତ୍ତାନ୍ତ ପୁରାଣମାନଙ୍କରେ ଅତି ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଥିଲେ ହେଁ କବି ଜଗନ୍ନାଥ ପାଣି ତାହା ଗୋଟିଏ ଦୃଶ୍ୟରେ ଶେଷକରିଛନ୍ତି । ପାର୍ବତୀଙ୍କ ଦେହତ୍ୟାଗ ପରେ ଦକ୍ଷପତ୍ନୀଙ୍କ ଶୋକ, ଶିବଙ୍କ ଶୋକ ବର୍ଣ୍ଣନାତ୍ମକ ଦୃଶ୍ୟ ଦେଖାଇ ସାରିବା ପରେ, ସାମାଜିକମାନଙ୍କ

ହୃଦୟରେ ଯେଉଁ କରୁଣ ରସର ଉତ୍ସ ସୃଷ୍ଟି ହୋଇଥାଏ, ତାହା ବୀର ଓ ରୌଦ୍ର ରସର ପରିବେଷଣରେ ବିଲୋପ କରିବାକୁ ଗୀତନାଟ୍ୟ ପ୍ରଣେତା କବି ଜଗନ୍ନାଥ କେବେହେଲେ ଇଚ୍ଛା କରିନଥିଲେ । ଗୀତାଭିନୟରେ ଯେତେ ଦୋଷ ତ୍ରୁଟି ଥିଲେ ହେଁ, ପରିଶେଷରେ କବି କରୁଣ ରସାତ୍ମକ ଦୃଶ୍ୟ ପରିବେଷଣରେ ସେ ସବୁର ନିରାକରଣ କରିଛନ୍ତି । ସେଠାରେ ପୁଣି ଯଦି ବିସ୍ତୃତ ଭାବରେ ବୀର ଓ ରୌଦ୍ର ରସର ଅବତାରଣା କରିଥାନ୍ତେ, ତାହାହେଲେ ଅଲଙ୍କାର ଦୃଷ୍ଟିରୁ ରସ ପରିବେଷଣରେ ତ୍ରୁଟି ପରିଲକ୍ଷିତ ହୋଇଥାନ୍ତା । ତଦ୍‌ବ୍ୟତୀତ ସାମାଜିକମାନଙ୍କ ସହାନୁଭୂତି ମଧ୍ୟ ସେ ଲାଭ କରିପାରି ନଥାନ୍ତେ । ତେଣୁ କବିଙ୍କର 'ଦକ୍ଷଯଜ୍ଞ' ଗୀତାଭିନୟଟି ଏକ ସଫଳ ରଚନା ବୋଲି ମତ ଦିଆଗଲେ ଅସମୀଚୀନ ହେବ ନାହିଁ ।

'ଦକ୍ଷଯଜ୍ଞ' ଗୀତାଭିନୟ ବିଭିନ୍ନ ପୁରାଣର ଅବଲମ୍ବନରେ ରଚିତ ହୋଇଥିଲେ ହେଁ ଅନେକ ସ୍ଥଳରେ କବି ଜଗନ୍ନାଥ ନିଜର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନରେ ତ୍ରୁଟି କରିନାହାନ୍ତି । ତା'ର କାରଣ ସ୍ୱରୂପ ଏତିକି କୁହାଯାଇପାରେ ଯେ, ପୁରାଣ ବା କାବ୍ୟଗ୍ରନ୍ଥ କେବଳ ପଠନୋପଯୋଗୀ ହୋଇଥିବାରୁ କବିମାନେ ଯେ କୌଣସି ଦୁଃସାଧ୍ୟ ବର୍ଣ୍ଣନା, ଅଦ୍ଭୁତ ବର୍ଣ୍ଣନା, ଅତିମାନବୀୟ ଓ ଅମାନବୀୟ ଘଟନାବଳୀ ସହଜରେ ବର୍ଣ୍ଣନା କରିପାରନ୍ତି । କିନ୍ତୁ ଅଭିନୟ ମାଧ୍ୟମରେ ରଙ୍ଗମଞ୍ଚରେ ହଜାର ହଜାର ଦର୍ଶକଙ୍କ ସମ୍ମୁଖରେ ସେହିଭଳି କେତେକ ଅଲୌକିକ ଘଟଣାବଳୀର ପରିବେଷଣ କରିବା ଆଜକୁ ଶହେ ବର୍ଷ ପୂର୍ବେ ସମ୍ଭବ ହୁଅନ୍ତା ନାହିଁ । ଅବଶ୍ୟ ଆଜି କାଲି ଯୁଗରେ ଆଧୁନିକ ରଙ୍ଗମଞ୍ଚ ଓ ଚଳଚ୍ଚିତ୍ର ମାଧ୍ୟମରେ ବହୁ ଭୟଙ୍କର ଅସାଧ୍ୟ ତଥା ଅଲୌକିକ ଘଟଣାବଳୀ ଦର୍ଶକଙ୍କ ସମ୍ମୁଖରେ ପ୍ରସ୍ତୁତ କରିବା ସମ୍ଭବ ହୋଇପାରୁଛି । ତେଣୁ କବି ଜଗନ୍ନାଥ ପାଣି କେତେକ ଘଟଣାରେ ନିଜର ସ୍ୱାତନ୍ତ୍ର୍ୟ ଦେଖାଇ ଗୀତନାଟ୍ୟଟିକୁ ଲୋକପ୍ରିୟ କରାଇବା ପାଇଁ ଯଥାସମ୍ଭବ ଚେଷ୍ଟା କରିଛନ୍ତି ।

'ଦକ୍ଷଯଜ୍ଞ' ପୁସ୍ତକଟି ଗୀତାଭିନୟ ରୂପେ ରଚିତ ହୋଇଥିଲେ ହେଁ ସେଥିରେ ଭଞ୍ଜୀୟ କାବ୍ୟଶୈଳୀର କେତେକ ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । କବି ସମ୍ରାଟ୍ ଭଞ୍ଜଙ୍କ କାବ୍ୟଗୁଡ଼ିକ ଦେଶରେ ପ୍ରଚଳିତ ହେବା ପରେ ପରବର୍ତ୍ତୀକାଳୀନ କବି କୋବିଦଗଣ ସେମାନଙ୍କ କାବ୍ୟ କବିତାକୁ ଭଞ୍ଜୀୟ ଶୈଳୀରେ ରଚନା କରିବାକୁ ଲାଗିଲେ । କବି ଉପେନ୍ଦ୍ର ଭଞ୍ଜ ଜଣେ ପ୍ରଖ୍ୟାତ ଶାବ୍ଦିକ ହୋଇଥିବାରୁ, ସେ ତାଙ୍କର କାବ୍ୟଗୁଡ଼ିକରେ ଶବ୍ଦ ପ୍ରୟୋଗର ବହୁ ଅଭିନବ କୌଶଳ ପ୍ରୟୋଗ କରିଥିଲେ । ତଦ୍‌ବ୍ୟତୀତ ଭଞ୍ଜ ଜଣେ ଅସାଧାରଣ ସଂସ୍କୃତଜ୍ଞ ହୋଇଥିବାରୁ,

ତାଙ୍କ ରଚନାରେ ସେ ସଂସ୍କୃତ ଅଳଙ୍କାର ଗ୍ରନ୍ଥର ନିୟମଗୁଡ଼ିକୁ ପ୍ରୟୋଗ କରିବାରେ ଯଥାପରୋନାସ୍ତି ଚେଷ୍ଟା କରିଥିଲେ ।

କବି ଜଗନ୍ନାଥ ପାଣି ପ୍ରାଚୀନ କାବ୍ୟଗୁଡ଼ିକ ଅଧ୍ୟୟନ କରି ଗୀତିନାଟ୍ୟ ଓ କାବ୍ୟ ରଚନା କରିଥିବାରୁ ତାଙ୍କ ରଚନାରେ ମଧ୍ୟ ପ୍ରାଚୀନ କାବ୍ୟଗୁଡ଼ିକର ଶବ୍ଦବିନ୍ୟାସ ଛଟା ବହୁଳ ମାତ୍ରାରେ ହୋଇଥିବାର ପରିଲକ୍ଷିତ ହୁଏ ।

ପ୍ରାଚୀନ ଓ ମଧ୍ୟଯୁଗୀୟ କାବ୍ୟଗୁଡ଼ିକରେ ଅନୁପ୍ରାସ ବିନ୍ୟାସ ଏକ ମହତ୍ତ୍ୱପୂର୍ଣ୍ଣ ଶୈଳୀ ବୋଲି ଗୃହୀତ ହେଉଥିଲା । ତଦ୍‌ବ୍ୟତୀତ 'ଯମକ'ର ବ୍ୟବହାର ମଧ୍ୟ କମ୍ ହେଉନଥିଲା । ଯମକ ଓ ଅନୁପ୍ରାସ ବ୍ୟତୀତ ମଧ୍ୟଯୁଗୀୟ କବିମାନେ ଶୃଙ୍ଖଳା, ବିରୋଧାଭାସ, ଶ୍ଳେଷ, ଗୋମୂତ୍ର, ଅଭୂତ ଉପମା ଆଦିର ବ୍ୟବହାର କରି ନିଜ କବିତ୍ୱର ପରାକାଷ୍ଠା ଦେଖାଉଥିଲେ ।

କବି ଜଗନ୍ନାଥ ପାଣି 'ଦକ୍ଷଯଜ୍ଞ' ପରି ଖଣ୍ଡିଏ ସର୍ବସାଧାରଣ ବୋଧଗମ୍ୟ ଗୀତିନାଟ୍ୟ ଲେଖିବାକୁ ଯାଇ ମଧ୍ୟ ମଧ୍ୟଯୁଗୀୟ କାବ୍ୟଶୈଳୀକୁ ଭୁଲିଯାଇନାହାନ୍ତି; ଏପରିକି ଗୀତିନାଟ୍ୟରେ ଯେଉଁଠି ସାମାଜିକମାନଙ୍କ ମନରେ ହାସ୍ୟରସ ସଞ୍ଚାର କରିବାର ବିଷୟ, ସେଠାରେ ମଧ୍ୟ ଯମକ ଓ ଅନୁପ୍ରାସର ପ୍ରୟୋଗ କରିଛନ୍ତି ।

ଉଦାହରଣ ସ୍ୱରୂପ : ଗୀତିନାଟ୍ୟର ଚତୁର୍ଥ ଗୀତ ଅର୍ଥାତ୍ ଗଙ୍ଗା ଓ ପାର୍ବତୀଙ୍କ ମଧ୍ୟରେ କଳହ ଚାଲିଥିବା ବେଳେ ସେ ସୁନ୍ଦର ଭାବରେ ପଦ ପ୍ରୟୋଗ କରି ଉଭୟ ଶ୍ରୋତା ଓ ଦର୍ଶକଙ୍କ ମନରେ ଆନନ୍ଦ ସଞ୍ଚାର କରିପାରିଛନ୍ତି ।

"ଛୁଲେ ଲଙ୍ଗୁଳୀ ବାରବାଙ୍କ ଗଳି ଅମଙ୍ଗଳୀ ତୋ ମୁହାଁଣି,
ମୁଅର ବାରେଣି ହେଲେ ତୋ ହଜାଣି ଉପରକୁ ଉଠେ ପାଣି,
ଲୋ କୁଳକଳଙ୍କି ଗଙ୍ଗା ।"

ଏଠାରେ ଲ, ଳ ଓ ଣ ର ପ୍ରୟୋଗରେ କବି ଯେଉଁ ଦକ୍ଷତା ଦେଖାଇଛନ୍ତି ତାହା ପାଠକ ପକ୍ଷରେ ଅତ୍ୟନ୍ତ ଶ୍ରୁତି ସୁଖକର ହୋଇଛି । ଆହୁରି ମଧ୍ୟ ସମୁଦାୟ ପୁସ୍ତକରେ ସେପ୍ରକାର ପ୍ରୟୋଗ ବିରଳ ନୁହେଁ ।

"ବାମଦେବ ବାମ କହେ ବାମନେତ୍ରୀ ବାମା
× × ×
ଗଙ୍ଗା ଦଙ୍ଗା ହଙ୍ଗାମ ମୁଁ ସହି ନ ପାରିବି ।
× × ×

କାଲି ଆସି ଯାଜ୍ଞଆଣୀ ମାଲନାଣୀ ହେଲା
ମୁଣ୍ଡମାଳିକା କାଳିକା ବୋଲି ଗାଳି ଦେଲା ॥
× × ×
ମନାକଲି ମନା ନ ମାନି ସୁମନା ପାପିଷ୍ଠ ଯଜ୍ଞକୁ ଗଲୁ
× × ×
ଦୁର୍ଗତିନାଶିନୀ ଦୁର୍ଗା ଦୁର୍ଗମରେ ଏ ଦୁର୍ଗତି ଆଣିଦେଲୁ ଇତ୍ୟାଦି ।"

କବି ଜଗନ୍ନାଥ ପାଣିଙ୍କର ଜୀବନୀ ପ୍ରସଙ୍ଗରେ କୁହାଯାଇଛି ଯେ, ସେ ନିଜ ଗ୍ରାମ 'ନଳାଙ୍ଗ'ର ପ୍ରତିଷ୍ଠିତ ଗ୍ରାମଦେବଙ୍କର ପରମ ଉପାସକ ଥିଲେ ଏବଂ ତାଙ୍କର ଆରାଧନାରେ ସେ ଅନେକ ଅସାଧ୍ୟ ସାଧନ କରିବାରେ ସକ୍ଷମ ହୋଇଥିଲେ । ଏହାର ପ୍ରମାଣ ସ୍ୱରୂପ 'ଦକ୍ଷଯଜ୍ଞ' ପୁସ୍ତକର କିଂଶ ଗୀତଟିକୁ ନିଆଯାଇପାରେ । ବୀରଭଦ୍ର ଓ ରୁଦ୍ରଗଣଙ୍କ ଦ୍ୱାରା ଦକ୍ଷପ୍ରଜାପତିଙ୍କର ଯଜ୍ଞଭଗ୍ନ ଓ ଦକ୍ଷ ବଧ ସମ୍ପାଦନ ହେବା-ପରେ ବ୍ରହ୍ମା ବିଷ୍ଣୁ ଆଦି ଦେବଗଣ ରୁଦ୍ରଙ୍କର ସ୍ତୁତି ଆରମ୍ଭ କରିଥିଲେ । ଶିବଙ୍କର ନାମ ମଧ୍ୟରେ 'ନଳେଶ୍ୱର' ଶବ୍ଦ କୁତ୍ରାପି ପରିଦୃଷ୍ଟ ହେଉନଥିଲେ ମଧ୍ୟ କବି ଜଗନ୍ନାଥ ଏଠାରେ ଶିବଙ୍କ ନାମ ମଧ୍ୟରେ ଉକ୍ତ ନାମକୁ ଉଲ୍ଲେଖ କରିଛନ୍ତି ।

"ନମୋ ନମୋ ଚନ୍ଦ୍ରମୌଳି ଯୋଗୀନ୍ଦ୍ର ଈଶ୍ୱର ।
ନମୋ ନମୋ ନୀଳକଣ୍ଠ 'ନଳେଶ୍ୱର' ହର ॥"

ଏଠାରେ ପ୍ରସଙ୍ଗକ୍ରମେ କୁହାଯାଇପାରେ ଯେ, ବହୁ ପ୍ରାଚୀନ କାଳରେ ଓଡ଼ିଶାରେ ଜୈନ ଓ ବୌଦ୍ଧଧର୍ମ ପ୍ରତିଷ୍ଠା ଲାଭ କରିଥିଲା । କିନ୍ତୁ ଖ୍ରୀଷ୍ଟୀୟ ସପ୍ତମ, ଅଷ୍ଟମ ଶତାବ୍ଦୀ ବେଳକୁ ସର୍ବଭାରତୀୟ ସ୍ତରରେ ଶୈବଧର୍ମର ଉତ୍‌ଥାନ ସଙ୍ଗେ ସଙ୍ଗେ ଓଡ଼ିଶାରେ ମଧ୍ୟ ଶୈବ, ପାଶୁପତ ମତର ପରିପ୍ରଚାର ବିଶେଷ ଭାବରେ ହେଲା । ବିଶେଷତଃ ଭୌମକର ରାଜବଂଶର ଶେଷ କେତେଜଣ ଦାୟାଦ ତଥା ସୋମବଂଶର ଯଯାତି, ଲଲାଟେନ୍ଦୁ ପ୍ରଭୃତି ପ୍ରସିଦ୍ଧ ଶୈବ-ମତାବଲମ୍ବୀମାନଙ୍କର ପ୍ରଭାବ ଯୋଗୁ ଶୈବଧର୍ମ ଓଡ଼ିଶାରେ ରାଜଧର୍ମ ତଥା ରାଷ୍ଟ୍ରଧର୍ମରେ ପରିଣତ ହୋଇଥିଲା । ତେଣୁ ସୁଦୂର କୋରାପୁଟଠାରୁ ମୟୂରଭଞ୍ଜ ତଥା ସୋନପୁରଠାରୁ ସମୁଦ୍ର ସୀମା ପର୍ଯ୍ୟନ୍ତ ସମଗ୍ର ଓଡ଼ିଶାରେ ବହୁ ଶିବ ମନ୍ଦିର ପ୍ରତିଷ୍ଠା ହୋଇଥିଲା । ଏପରିକି ପ୍ରତି ଗ୍ରାମରେ ଗୋଟିଏ ଲେଖାଏ ଶିବ ମନ୍ଦିର ନିର୍ମିତ ହୋଇ ଏ ଦେଶରେ ଶୈବ ମତବାଦର ବୈଶିଷ୍ଟ୍ୟ ପ୍ରତିପାଦନ କରିଥିଲା । ତେଣୁ ବୋଧହୁଏ ଓଡ଼ିଶାରେ ଏପରି କୌଣସି ପ୍ରାଚୀନ ଗ୍ରାମ ନାହିଁ, ଯେଉଁଠାରେ ଆରାଧ୍ୟଦେବ ରୂପେ ଶିବଲିଙ୍ଗର ପ୍ରତିଷ୍ଠା କରା ନ ଯାଇଛି । ଭୁବନେଶ୍ୱରର ଲିଙ୍ଗରାଜ, ମୁକ୍ତେଶ୍ୱର, କେଦାରେଶ୍ୱର, ସିଦ୍ଧେଶ୍ୱର, ପରଶୁରାମେଶ୍ୱର, ସୁବର୍ଣ୍ଣ କାଳେଶ୍ୱର ମନ୍ଦିର ପରି ଅବଶ୍ୟ ପ୍ରତ୍ୟେକ ଗ୍ରାମରେ

ଗଗନଚୁମ୍ବୀ ମନ୍ଦିର ପ୍ରତିଷ୍ଠା କରାଯିବା ସମ୍ଭବ ନୁହେଁ, ତଥାପି ଗ୍ରାମଦେବ ରୂପେ ପ୍ରତ୍ୟେକ ପ୍ରାଚୀନ ଗ୍ରାମରେ ଗୋଟିଏ ଲେଖାଏ ଶିବ ମନ୍ଦିର ରହିଛି ଏବଂ ଗ୍ରାମର ନାମାନୁସାରେ କିମ୍ବା ଅନ୍ୟ କୌଣସି ବୈଶିଷ୍ଟ୍ୟ ଘଟଣା ଅନୁସାରେ ସେଠାକାର ଶିବଲିଙ୍ଗର ନାମକରଣ କରାଯାଇଛି । ତେଣୁ ନଳାଙ୍ଗ ଗ୍ରାମର ଇଷ୍ଟଦେବଙ୍କ ନାମ 'ନଳେଶ୍ୱର' ହୋଇଛି । ସେ ନାମ ଶିବଙ୍କର 'ସହସ୍ର ନାମ ସ୍ତୋତ୍ର' ବା ଅନ୍ୟ କୌଣସି ପ୍ରାଚୀନ ଗ୍ରନ୍ଥରେ ରହିବା ସମ୍ଭବ ନୁହେଁ । କବି ଜଗନ୍ନାଥ ପାଣି ମହାପ୍ରଭୁ 'ନଳେଶ୍ୱର'ଙ୍କ ପ୍ରସାଦରୁ କବି ଓ ସିଦ୍ଧପୁରୁଷ ହୋଇଥିବାରୁ ସ୍ୱ-ରଚିତ ଗୀତିନାଟ୍ୟରେ 'ନଳେଶ୍ୱର'ଙ୍କ ନାମ ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ଶିବଙ୍କର ନାମ ଜପ କରି ମୁକ୍ତିଲାଭ କରିବାର ବାଞ୍ଛା ପ୍ରକାଶ କରିଛନ୍ତି ।

"ଓଁ ନମଃଶିବାୟ ବୋଲି ଶିବ ନାମ ଧରି
ବୋଲେ ଜଗନ୍ନାଥ ଜୀବ ଯିବ କି ମୋହରି ।"

(ଦକ୍ଷଯଜ୍ଞ, ତ୍ରିଂଶ ଗୀତ)

ଏପରି ଭାବରେ ଆଲୋଚନା କଲେ ଜଣାଯାଏ ଯେ, 'ଦକ୍ଷଯଜ୍ଞ' ଗୀତାଭିନୟ ପୁସ୍ତକଟି ଖଣ୍ଡିଏ ଉପାଦେୟ ପୁସ୍ତକ । ସାମାନ୍ୟ ପରିବର୍ତ୍ତନ ତଥା ଅଙ୍ଗସଜ୍ଜାରେ କେତେକ ପରିବର୍ତ୍ତନ କରିଦେଲେ ଏହା ଆଧୁନିକ ମଞ୍ଚୋପଯୋଗୀ ଗୋଟିଏ ଗୀତିନାଟ୍ୟ ହୋଇପାରିବ ।

# ଧ୍ରୁବଚରିତ

କବି ଜଗନାଥ ପାଣିଙ୍କର ରଚନା ମଧ୍ୟରେ ଧ୍ରୁବଚରିତ ଗୀତାଭିନୟ ପୌରାଣିକ ଆଖ୍ୟାୟିକାର ଅବଲମ୍ବନରେ ଲିଖିତ ହୋଇଛି । ଶ୍ରୀମଦ୍ ଭାଗବତର ଚତୁର୍ଥ ସ୍କନ୍ଧରେ 'ଧ୍ରୁବଚରିତ' ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଛି । କବି ଜଗନ୍ନାଥ ପାଣି ସେହି ପୌରାଣିକ ଆଖ୍ୟାୟିକାଟିକୁ ଅଭିନୟ ମାଧ୍ୟମରେ ପ୍ରଦର୍ଶନ କରିବା ଲାଗି ମନସ୍ଥ କରି 'ଧ୍ରୁବ ଚରିତ' ଶୀର୍ଷକ ଏକ ଗୀତିନାଟ୍ୟ ଲେଖିଛନ୍ତି । ଉକ୍ତ ଗୀତିନାଟ୍ୟଟିକୁ ଅଣତିରିଶ ଗୋଟି ଗୀତ ବା ଛାନ୍ଦରେ କବି ଶେଷ କରିଛନ୍ତି । ପ୍ରସ୍ତୁତ ଗୀତିନାଟ୍ୟରେ କବି ମଙ୍ଗଳାଚରଣ, ସଭାପୂଜା ଶେଷ କରିବା ପରେ ଗୀତାଭିନୟ ଆରମ୍ଭ କରିଛନ୍ତି । ପ୍ରଥମ ଗୀତରେ ସପତ୍ନୀ ସୁରୁଚିଙ୍କ ହିଂସାବାଦରେ ପ୍ରରୋଚିତ ହୋଇ ରାଜା ଉତ୍ତାନପାଦ ମନ୍ତ୍ରୀ ବୀରସିଂହଙ୍କ ହସ୍ତରେ ଦ୍ୱିତୀୟା ରାଣୀ ସୁନୀତିଙ୍କୁ ବନକୁ ପଠାଇ ଦେଇଛନ୍ତି । ବୀରସିଂହ ମନ୍ତ୍ରୀ ରାଣୀ ସୁନୀତିଙ୍କୁ ନେଇ ବନ ମଧ୍ୟରେ ଦୁର୍ବାସା ମହର୍ଷିଙ୍କ ଆଶ୍ରମ ନିକଟରେ ଛାଡ଼ି ଦେଇ ଆସିଛନ୍ତି । ଦ୍ୱିତୀୟ ଗୀତରେ ମନ୍ତ୍ରୀ ବୀରସିଂହ ଆସି ସୁନୀତିଙ୍କୁ ବନରେ ଛାଡ଼ି ଆସିଥିବା ବିଷୟ ରାଜାଙ୍କ ଆଗରେ କହିଛନ୍ତି । ରାଜା ଉତ୍ତାନପାଦ ସେ ସମ୍ବାଦ ଶୁଣି ହର୍ଷ ଓ ବିସ୍ମିତ ହୋଇଛନ୍ତି । କିନ୍ତୁ ରାଣୀ ସୁରୁଚି ଏଥିରେ ଅତ୍ୟନ୍ତ ଆନନ୍ଦିତା ହୋଇଛି ଏବଂ ତା'ର ଶତ୍ରୁ ଭୟ ଦୂର ହେଲା ବୋଲି ସେ ଚିନ୍ତା କରିଛି । ତୃତୀୟ ଗୀତରେ ଚନ୍ଦ୍ର ପକ୍ଷ ରଜନୀରେ ଘୋର ବନସ୍ତ ମଧ୍ୟରେ ରାଣୀ ସୁନୀତିଙ୍କ ଶୋକ, ଚତୁର୍ଥ ଗୀତରେ ସୁନୀତିଙ୍କ କରୁଣ କ୍ରନ୍ଦନ ଶୁଣି ଦୁର୍ବାସାଙ୍କ ପ୍ରବେଶ ଓ ତାଙ୍କୁ ନିଜ ଆଶ୍ରମରେ ଆଶ୍ରୟ ଦେବାର ବିଷୟ ବର୍ଣ୍ଣିତ ହୋଇଛି । ବହୁଦିନ ପରେ ଏକ ବସନ୍ତ ସମୟରେ ମନୁବଂଶୀୟ ନୃପମଣି 'ଉତ୍ତାନପାଦ' ଦିଗ୍‌ବିଜୟରେ ଯାଇ ସରସ୍ୱତୀ ନଦୀ ତୀରରେ ଥିବା ଦୁର୍ବାସାଙ୍କ ଆଶ୍ରମରେ ପହଞ୍ଚିଛନ୍ତି ଏବଂ ମହର୍ଷି ଦୁର୍ବାସା ଆରମ୍ଭ କରିଥିବା ଯଜ୍ଞାନୁଷ୍ଠାନ ଶେଷ ହେବା ପର୍ଯ୍ୟନ୍ତ ରାଜାଙ୍କୁ ସେଠାରେ ରହିବା ଲାଗି ଅନୁରୋଧ କରିବା ବିଷୟ ପଞ୍ଚମ ଗୀତରେ ବର୍ଣ୍ଣିତ ହୋଇଛି । ଷଷ୍ଠ ଗୀତରେ ବିପ୍ର କାମିନୀଙ୍କ ସହିତ ସୁନୀତି ଯଜ୍ଞ ଦେଖିବାକୁ ଯାଇଛନ୍ତି । ରାଜା ସୁନୀତିଙ୍କର ଅପରୂପ ସୌନ୍ଦର୍ଯ୍ୟ ଦେଖି ତାଙ୍କୁ ଚିହ୍ନି

ନପାରି ତାଙ୍କ ଆଡ଼କୁ ଆକୃଷ୍ଟ ହୋଇଛନ୍ତି । ରାଜାଙ୍କର ମନୋଭାବ ଜାଣି ମହର୍ଷି ଦୁର୍ବାସା ସୁନୀତଙ୍କୁ ଉପହାର ଦ୍ରବ୍ୟ ନେଇ ରାଜାଙ୍କ ନିକଟକୁ ଯିବାଲାଗି ଏବଂ ସ୍ତ୍ରୀ ଧର୍ମମତେ ସ୍ୱାମୀଙ୍କର ପରିଚର୍ଯ୍ୟା କରିବାଲାଗି ସୁନୀତଙ୍କୁ ପରାମର୍ଶ ଦେଇଛନ୍ତି । ସପ୍ତମ ଗୀତରେ ବେଶ ଭୂଷଣରେ ସଜ୍ଜିତା ହୋଇ ସୁନୀତ ଉପହାର ଦ୍ରବ୍ୟସମେତ ରାଜାଙ୍କ ଠାରେ ଉପସ୍ଥିତ ହୋଇଛନ୍ତି ଏବଂ ରାଜାଙ୍କର ମନୋଭାବ ଜାଣି ତାଙ୍କଠାରୁ ଉପହାର ସ୍ୱରୂପ ରତ୍ନହାର ଗ୍ରହଣ କରି ତାଙ୍କୁ ଦେହ ଦାନ କରିଛନ୍ତି । ଏହିପରି ଭାବରେ ଏକମାସ ପର୍ଯ୍ୟନ୍ତ ସୁନୀତ ପ୍ରତିଦିନ ରାଜାଙ୍କ ସେବାରେ ନିଯୁକ୍ତ ହୋଇଛନ୍ତି ଏବଂ ପ୍ରତ୍ୟେକ ରାତ୍ରିରେ ରାଜାଙ୍କଠାରୁ ଗୋଟିଏ ଗୋଟିଏ ଅଳଙ୍କାର ଉପହାର ସ୍ୱରୂପ ଗ୍ରହଣକରି ପରିଶେଷରେ ନିଜର ଗର୍ଭଜାତ ସନ୍ତାନ ମନୁବଂଶର ରାଜସିଂହାସନରେ ବସିବା ଲାଗି ରାଜାଙ୍କଠାରୁ ନେଖାଇ ନେଇଛନ୍ତି । ବିଦାୟ ଅବସରରେ ରାଜା ଅନେକ ସୁସ୍ୱାଦୁ ଭୋଜ୍ୟ ଦ୍ରବ୍ୟ ସୁନୀତଙ୍କ ନିକଟକୁ ପଠାଇଛନ୍ତି ଏବଂ ରାଣୀଙ୍କର ଗର୍ଭୋଦୟ ହେବାର ଲକ୍ଷଣ ଅଷ୍ଟମ ଛାନ୍ଦରେ ବର୍ଣ୍ଣିତ ହୋଇଛି । ନବମ ଛାନ୍ଦରେ ରାଣୀଙ୍କର ଗର୍ଭଲକ୍ଷଣ ଦେଖି ଆଶ୍ରମବାସୀମାନେ ପରସ୍ପରରେ କୁହାକୁହି ହୋଇଛନ୍ତି ଏବଂ ମହର୍ଷି ଦୁର୍ବାସା ସମସ୍ତ ଘଟଣା ସ୍ପଷ୍ଟ ବୁଝାଇ ଦେଇ ଆଶ୍ରମ ବାସୀଙ୍କୁ ସନ୍ତୁଷ୍ଟ କରିଛନ୍ତି । ଯଥା ସମୟରେ ରାଣୀ ଗୋଟିଏ ପୁତ୍ର ସନ୍ତାନ ପ୍ରସବ କରିଛନ୍ତି ଏବଂ ଆଶ୍ରମବାସୀ ସେହି ପୁତ୍ରର ନାମ 'ଧ୍ରୁବ' ଦେଇ ତା'ର ଲାଳନ ପାଳନ କରିଛନ୍ତି । ଦଶମ ଗୀତରେ ସାତବର୍ଷର ବାଳକକୁ ନେଇ ମହର୍ଷି ଦୁର୍ବାସା ରାଜାଙ୍କ ପୁରରେ ପ୍ରବେଶ ହୋଇଛନ୍ତି ଏବଂ ଆଶ୍ରମବାସିନୀ ରମଣୀଙ୍କ ପୁତ୍ରକୁ ରାଜକୁମାର ଭାବରେ ପାଳନ କରିବା ଲାଗି ରାଜାଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । କିନ୍ତୁ ରାଜା ସେ ପୁତ୍ରକୁ ନିଜର ସନ୍ତାନ ରୂପେ ଅସ୍ୱୀକାର କରିଛନ୍ତି । ଦୁର୍ବାସା ପ୍ରମାଣ ଦେବା ଉଦ୍ଦେଶ୍ୟରେ ସୁନୀତଙ୍କୁ ସେଠାକୁ ଆଣିବା ଲାଗି ଶିଷ୍ୟମାନଙ୍କୁ ପଠାଇଛନ୍ତି । ଏକାଦଶ ଗୀତରେ ସୁନୀତ ରାଜସଭାରେ ପ୍ରବେଶ କରିଛନ୍ତି ଏବଂ ଗୋଟି ଗୋଟି ପ୍ରମାଣ ରାଜାଙ୍କଠାରେ ଉପସ୍ଥାପିତ କରିଛନ୍ତି । ସମସ୍ତ ପ୍ରମାଣ ପାଇ ମଧ୍ୟ ରାଜା ସୁନୀତଙ୍କୁ ସର୍ପଘଟରେ ହାତପୂରାଇ ନିଜ ସତୀତ୍ୱର ପରୀକ୍ଷା ଦେବା ଲାଗି ଆଦେଶ ଦେଇଛନ୍ତି । ଦ୍ୱାଦଶ ଗୀତରେ ମହାଜ୍ୱାଳାମୟୀ ସର୍ପ ତାମ୍ର ଘଟରେ ପୂରାଇ ସଭାସ୍ଥଳକୁ ଅଣାଯାଇଛି । ରାଣୀ ଧର୍ମଙ୍କୁ ସ୍ମରଣ କରି ସର୍ପଘଟରେ ହସ୍ତ ପୂରାଇଛନ୍ତି । ମନ୍ତ୍ରପୋଷାପ୍ରସୀ ଅଭିଶାପ ବଳରେ ସର୍ପ ହୋଇଥିବାରୁ ସୁନୀତଙ୍କର କର ସ୍ପର୍ଶରେ ମୁକ୍ତ ହୋଇ ସ୍ୱର୍ଗକୁ ଚାଲିଯାଇଛି ଏବଂ ରାଜସଭା ସୁନୀତଙ୍କୁ ମହାସତୀ ରୂପେ ଘୋଷଣା କରିଛି । ତହୁଁ ରାଜା ସିଂହାସନରୁ ଉଠି ପୁତ୍ର ଓ ପତ୍ନୀଙ୍କୁ ସାଦରେ ଗ୍ରହଣ କରିଛନ୍ତି । ତ୍ରୟୋଦଶ ଗୀତରେ ଉତ୍ତାନପାଦ ରାଜସିଂହାସନରେ ବସିଥିବା ସମୟରେ ସୁରୁଚି ତାଙ୍କ ନିକଟରେ ଅଛନ୍ତି ଏବଂ ତାହାର

ପୁତ୍ର 'ଉତ୍ତମ' ଆସି ରାଜାଙ୍କ କୋଡ଼ମଣ୍ଡନ କରନ୍ତି । ଚତୁର୍ଦ୍ଦଶ ଗୀତରେ 'ଉତ୍ତମ'ଙ୍କୁ ପିତାଙ୍କ କୋଡ଼ରେ ବସିଥିବାର ଦେଖି ଧ୍ରୁବ ମଧ୍ୟ ଛଳ ଛଳ ଆଖିରେ ପିତାଙ୍କ କୋଳରେ ବସିବା ଲାଗି ଆଗ୍ରହ ପ୍ରକାଶ କରନ୍ତି । ପଞ୍ଚଦଶ ଛାନ୍ଦରେ ସୁରୁଚି ଧ୍ରୁବଙ୍କୁ ନିତାନ୍ତ କୁତ୍ସିତ ଭାଷାରେ ଭର୍ତ୍ସନା କରନ୍ତି । ଷୋଡ଼ଶ ଛାନ୍ଦରେ ପୁତ୍ର ଦୁଃଖରେ ଦୁଃଖିନୀ ହୋଇ ସୁନୀତି ଶୋକ କରନ୍ତି । ସପ୍ତଦଶ ଛାନ୍ଦରେ ସୁନୀତି ଧ୍ରୁବଙ୍କୁ ଅନେକ ପ୍ରକାର ବୁଝାଉଛନ୍ତି । ଅଷ୍ଟାଦଶ ଛାନ୍ଦରେ ଧ୍ରୁବ ନିଜର ଅପମାନର କାହାଣୀ ପ୍ରକାଶ କରନ୍ତି । ଊନବିଂଶ ଛାନ୍ଦରେ ସୁନୀତି ଧୈର୍ଯ୍ୟ ଧରିବା ଲାଗି ପୁତ୍ରଙ୍କୁ ବୁଝାଉଛନ୍ତି । ବିଂଶ ଛାନ୍ଦରେ ତପସ୍ୟା ଲାଗି ବନକୁ ଯିବା ପାଇଁ ଧ୍ରୁବ ଇଚ୍ଛାପ୍ରକାଶ କରନ୍ତି; ମାତା କୋମଳମତି ବାଳକକୁ ନାନାପ୍ରକାର ଉପଦେଶ ଦେଇ ତପସ୍ୟାର ଭୟଙ୍କରତା ସମ୍ବନ୍ଧରେ ବୁଝାଉଛନ୍ତି । ଏକବିଂଶ ଛାନ୍ଦରେ ତପସ୍ୟାର ମହତ୍ତ୍ୱ ସମ୍ପର୍କରେ ଧ୍ରୁବ ମାତାଙ୍କ ଆଗରେ ପ୍ରକାଶ କରି ବନକୁ ଯିବା ଲାଗି ଅନୁମତି ପ୍ରାର୍ଥନା କରନ୍ତି । ଦ୍ୱାବିଂଶ ଛାନ୍ଦରେ ପୁତ୍ରର ବନ ଗମନ ଦେଖି ମାତା ସୁନୀତି ଉଚ୍ଚସ୍ୱରରେ କ୍ରନ୍ଦନ କରନ୍ତି । ତ୍ରୟୋବିଂଶ ଗୀତରେ ଧ୍ରୁବର ବନଗମନ ଶୁଣି ରାଜା ପୁତ୍ରର ଅନ୍ୱେଷଣ ଲାଗି ବିଭିନ୍ନ ଦ୍ୱୀପକୁ ଦୂତମାନଙ୍କୁ ପଠାଉଛନ୍ତି । ଚତୁର୍ବିଂଶ ଗୀତରେ ରାଜା ଗଣକଙ୍କୁ ଡକାଇ ପୁତ୍ର ସମ୍ବନ୍ଧରେ ଗଣନା କରନ୍ତି । ପୁତ୍ର ତପସ୍ୟା ଉଦ୍ଦେଶ୍ୟରେ ଯମୁନା କୂଳର ଅଗମ୍ୟ ବନକୁ ଧ୍ରୁବର ଗମନ ବିଷୟ ସୂଚାଇଛନ୍ତି । ପଞ୍ଚବିଂଶ ଛାନ୍ଦରେ ଧ୍ରୁବର ଆଗମନ ଶୁଣି ମରୀଚି ଆଦି ଋଷିମାନେ ନୈମିଷାରଣ୍ୟ ତ୍ୟାଗକରି ସେହି ବନରେ ପ୍ରବେଶ କରନ୍ତି । ଷଡ଼ବିଂଶ ଗୀତରେ ମୁନିମାନଙ୍କୁ ଦେଖି ଧ୍ରୁବଙ୍କର ଆନନ୍ଦ, ସପ୍ତବିଂଶ ଗୀତରେ ବନକୁ ଆଗମନର ଉଦ୍ଦେଶ୍ୟ ସମ୍ବନ୍ଧରେ ମୁନିମାନଙ୍କର ଜିଜ୍ଞାସା ଏବଂ ଅଷ୍ଟାବିଂଶ ଗୀତରେ ଧ୍ରୁବଙ୍କଠାରୁ ସମସ୍ତ ବିଷୟ ଶୁଣି ଶିଶୁମତି ଧ୍ରୁବଙ୍କୁ ଅଗସ୍ତିଙ୍କର ଦୀକ୍ଷା ପ୍ରଦାନ ବିଷୟ ବର୍ଣ୍ଣିତ ହୋଇଛି । ଊନବିଂଶ ଛାନ୍ଦରେ ଅଗସ୍ତିଙ୍କ ଦ୍ୱାରା ତପସ୍ୟାର ନିୟମ କଥନ, ତ୍ରିଂଶ ଛାନ୍ଦରେ ଧ୍ରୁବର ଜିଜ୍ଞାସାମତେ ବ୍ରହ୍ମଜ୍ଞାନର ରହସ୍ୟ ପ୍ରକାଶ, ଏକତ୍ରିଂଶ ଛାନ୍ଦରେ ଧ୍ରୁବର କଠୋର ତପସ୍ୟା ଆରମ୍ଭ ଓ ଦେବତାମାନଙ୍କର ବିବ୍ରତ ଭାବ, ଦ୍ୱାତ୍ରିଂଶ ଛାନ୍ଦରେ ଧ୍ରୁବର ତପସ୍ୟା ଭଙ୍ଗ ଲାଗି ଇନ୍ଦ୍ରଙ୍କ ପ୍ରଚେଷ୍ଟା ଓ ଅସହାୟ ଧ୍ରୁବର ନାରାୟଣଙ୍କୁ ପ୍ରାର୍ଥନା ବିଷୟ ବର୍ଣ୍ଣିତ ହୋଇଛି । ତ୍ରୟୋତ୍ରିଂଶ ଛାନ୍ଦରେ ଧ୍ରୁବର ତପସ୍ୟା ଭଙ୍ଗ ଲାଗି ଇନ୍ଦ୍ରଙ୍କର ଅଭିନବ ଉପାୟ ଚିନ୍ତା, ଚତୁସ୍ତ୍ରିଂଶ ଛାନ୍ଦରେ ଇନ୍ଦ୍ରଙ୍କ ଦ୍ୱାରା ମାୟା ସୁନୀତିଙ୍କୁ ପ୍ରେରଣ ଓ ମାୟାବତୀର ରୋଦନ, ପଞ୍ଚତ୍ରିଂଶ ଛାନ୍ଦରେ ନାରାୟଣଙ୍କଠାରେ ଧ୍ରୁବର କରୁଣ ନିବେଦନ, ଷଡ଼ତ୍ରିଂଶ ଗୀତରେ ଧ୍ରୁବ ଦ୍ୱାରା ଦଶାବତାର ସ୍ତୁତି, ସପ୍ତତ୍ରିଂଶ ଗୀତରେ ଧ୍ରୁବ ନିକଟରେ ନାରାୟଣଙ୍କ ପ୍ରବେଶ ଓ ବର ପ୍ରଦାନ, ଅଷ୍ଟତ୍ରିଂଶ ଛାନ୍ଦରେ ଧ୍ରୁବଙ୍କ

ଗୃହ ଗମନ, ସୁନୀତଙ୍କର ଆନନ୍ଦ ଓ ଜନଚନ୍ଦ୍ରାଣଂଶ ଶ୍ରୁନ୍ଦରେ ପୁତ୍ରର ଆଗମନ ସମ୍ବାଦରେ ଉତ୍ତାନପାଦଙ୍କର ଆନନ୍ଦ, ପାତ୍ର ମନ୍ତ୍ରୀ ଅମାତ୍ୟ ଓ ପୁରୋହିତଙ୍କ ଗହଣରେ ଧ୍ରୁବଙ୍କୁ ରାଜସିଂହାସନରେ ବସାଇବା ବିଷୟ ବର୍ଣ୍ଣିତ ହୋଇଛି ।

କବି ଜଗନ୍ନାଥଙ୍କ 'ଧ୍ରୁବଚରିତ'ର ବର୍ଣ୍ଣନା ମଧ୍ୟରେ କେତୋଟି ପ୍ରସଙ୍ଗ ଅତ୍ୟନ୍ତ ରମଣୀୟ ଓ ହୃଦୟଗ୍ରାହୀ ହୋଇଛି । ସେ ବର୍ଣ୍ଣନା ମଧ୍ୟରୁ କେତୋଟି ଏଠାରେ କୌତୁହଳୀ ପାଠକମାନଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ହେଲା । ଦୁର୍ବାସାଙ୍କ ଆଶ୍ରମରୁ ରାଜାଙ୍କର ବିଦାୟ ସମୟରେ ସୁନୀତଙ୍କ ଉଦ୍ଦେଶ୍ୟରେ ସେ କେତେକ ଭୋଜ୍ୟଦ୍ରବ୍ୟ ପଠାଇଥିଲେ । ସେଗୁଡ଼ିକ କବିଙ୍କ ଲେଖନୀରେ ଅତ୍ୟନ୍ତ ଚମତ୍କାରଭାବେ ବର୍ଣ୍ଣିତ ହୋଇଛି ।

"ସର ସବ ପୁର ସର ସାଟୀ ସରବରା,
ସାଟୀ ସାଟୀ ଖଣ୍ଡ ସାଟୀପଣା ସାଟୀକୋରା ।
ଶଙ୍ଖମଣ୍ଡା ସନ୍ଦେଶ ଆରସା ରସଗୋଲା,
ଚନ୍ଦ ଛେନା ମନୋହର ଶଙ୍ଖ ଖୁଆଓଲା ।
ଗଦା ଗଜା ଖଜା ମୋତିଚୁର ଲଡ଼ୁ ମୁଆଁ,
ପଦ୍ମ ମଧୁ ପାକର ମୋହନ ଭୋଗ ମୁଆଁ ।
ଲକ୍ଷ୍ମୀନାରାୟଣ ଅନ୍ନ, ନୃସିଂହ ଖେଚେଡ଼ି,
କମଳା ବିଳାସ କ୍ଷୀର ସିଦ୍ଧ ଦଧିକଡ଼ି ।
ରାମ ରମ୍ଭା କୃଷ୍ଣ ମୁଗ ଶ୍ୟାମ ଶାକଭାଜି,
କୃପାସିନ୍ଧୁ କୁଷ୍ମାଣ୍ଡ ବାମନ ନାଉ କାଞ୍ଜି ।
ଆଳୁଭଣ୍ଟା ସାରୁଆଦି କନ୍ଦ କନ୍ଦମୂଳ,
ମୋହନ ମହୁର ନାରାୟଣ ନାରକେଳ ।
ତୁଳସୀ ବଲ୍ଲଭ ଚୁଡ଼ା କାମଧେନୁ ଦୁଧ,
କଳ୍ପତରୁ ସ୍ୱାଦୁଫଳ ମୃଗ ମାଂସ ସିଦ୍ଧ ।"

ସୁରୁଚିଙ୍କଠାରୁ ଅପମାନିତ ହୋଇ ଧ୍ରୁବର ମନରେ ଅତ୍ୟନ୍ତ କ୍ଷୋଭ ଜାତ ହୋଇଛି । ସେ ନିଜର ଭାଗ୍ୟବିଧାତାଙ୍କ ନିର୍ଦ୍ଦେଶ ପ୍ରକୃତ ସମ୍ବନ୍ଧରେ ଦାରୁଣ ଦୁଃଖ ପ୍ରକାଶ କରିଛି । ଏହି ଗୀତିଟି କବିଙ୍କ ଲେଖନୀରେ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇଛି । ପିତାଙ୍କ କୋଡ଼ରେ ବସିବା ଲାଗି କେତେ ଆଶା କରି ଧ୍ରୁବ ଉତ୍ତାନପାଦଙ୍କ ଆଡ଼କୁ ଅଗ୍ରସର ହୋଇଛି । କିନ୍ତୁ ବିମାତା ସୁରୁଚିଙ୍କର ବାକ୍ୟବାଣ ତା' ମନରେ ଗଭୀର ଆଘାତ ଦେଇଛି । ସେହି ପ୍ରସଙ୍ଗରେ କବି ଲେଖିଛନ୍ତି—

“ଜାଣିଲି ଜାଣିଲି ମୋତେ ଦଣ୍ଡନା ଅଛ ତୁ ମୋତେ,
ଦଣ୍ଡ ଦଣ୍ଡିଲୁଣି ତୁମ୍ଭେ ଯେତେ ।
ଦଶମାସ ଧରି ଗର୍ଭେ ଆନୁ ମାତ ତୁମ୍ଭେ ଯେବେ,
କଷ୍ଟଗିରି ଖଣ୍ଡନ୍ତ କି ମୋତେ ।
କର୍ମେ ଅଛି ସହିବାକୁ ଆନ କେ କରିବ ତାକୁ,
ଯାହା ଦଣ୍ଡ ଦେଉଛ ହେ ଦଅ ।
ଧିକ ନିର୍ଲଜ୍ଜ ଜୀବନ ରହିଅଛି ନ ଯାଇଣ
ସହ୍ୟ କରିବାକୁ ଅଛି ଦେହ ।

× × ×

ଜଗଜ୍ଜନ-ହିତକାରୀ ଦଶଅବତାରଧାରୀ
ତୁମ୍ଭେ ମୋର ଆଶ୍ରାକାରୀ ହରି ।
ଅତି ଦୀନଦୁଃଖୀ ମୁହିଁ ଆଶ୍ରା ମୋର କେହି ନାହିଁ,
ନିଆଶ୍ରିତ ଜନ ଦଇତାରି ।”

ଧ୍ରୁବର ବନଗମନ ସମ୍ବନ୍ଧରେ ସିଦ୍ଧାନ୍ତ ଶୁଣି ମାତା ସୁନୀତିଙ୍କର ହୃଦୟ କୋହରେ ଫାଟିପଡ଼ୁଛି । ତାଙ୍କର ଦୁଇ ନୟନରୁ ଝରଝର ହୋଇ ଲୁହଧାର ଗଡ଼ିପଡ଼ୁଛି । ସନ୍ତାନବତ୍ସଳା ଜନନୀ ଦୁଗ୍ଧ-ପୋଷ୍ୟ ଶିଶୁ ପୁତ୍ରର ବନଗମନରେ ବ୍ୟଥିତା ହୋଇ କାନ୍ଦି କାନ୍ଦି କହୁଛନ୍ତି—

“ଅପୂର୍ବ ସୁନ୍ଦର ଚନ୍ଦ୍ରମୁଖ ତୋର, ଦଣ୍ଡେ ନ ଦେଖିଲେ ମୁହିଁ,
ଛନ ଛନ ମନ ଦଶଦିଗ ଶୂନ୍ୟ ନିମିଷେ ଯୁଗେ ହୁଅଇ ।
ଆରେ ପ୍ରାଣର ଶାଖା,
ମୋତେ ଛାଡ଼ିକରି ନ ଯା ଏକା ।
କେତେ ବାର ବ୍ରତ କରି ତୋତେ ପୁତ୍ର ପାଇଅଛି ଭାଗ୍ୟେ ମୁହିଁ,
ଏ ବୟସେ ଯେବେ ଛାଡ଼ିଯିବୁ ତେବେ କାଙ୍ଗାଳିନୀ ହେବି ମୁହିଁ ।
ଆରେ ନବକିଶୋର,
ଫେଳ ମୁଖ ଦୁଃଖ ଯାଉ ମୋର ।”

ସେହିପରି ଭାବରେ ଧ୍ରୁବର ବନଗମନ ପରେ ସୁନୀତିଙ୍କର ଶୋକ କବିଙ୍କ ଲେଖନୀରେ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇଛି । ରାଜା ମଧ୍ୟ ଏ ବୃତ୍ତାନ୍ତ ଶୁଣି ବ୍ୟାକୁଳ ହୋଇଉଠିଛନ୍ତି । ସେ ନିଜର ଭୁଲ ତ୍ରୁଟିପାଇଁ ପଶ୍ଚାତ୍ତାପ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଆଡ଼କୁ ଚର ପଠାଇ ଗଣକଙ୍କଦ୍ୱାରା ଗଣନା କରାଇ ନିଜର ବ୍ୟସ୍ତତା ପ୍ରକାଶ

କରିଛନ୍ତି । କିନ୍ତୁ ଋଷିଙ୍କଠାରୁ ପୁତ୍ର ସମ୍ବନ୍ଧରେ ଶୁଭ ସୂଚନା ପାଇ ମନରେ ଆଶ୍ୱସ୍ତ ହୋଇଛନ୍ତି । ଏ ପ୍ରକାର ବିବିଧ ବର୍ଣ୍ଣନା ପୁରାଣରେ ନଥିଲେ ମଧ୍ୟ କବି ଜଗନ୍ନାଥ ପାଣି ପିତା ଓ ପୁତ୍ର ମଧ୍ୟରେ ଶାଶ୍ୱତ ସ୍ନେହର ଧାରା ଫୁଟାଇବା ସଙ୍ଗେ ସଙ୍ଗେ ଗୀତାଭିନୟର ସରସତା ପ୍ରତିପାଦନ ଲାଗି ଯଥୋପଯୋଗୀ ଚେଷ୍ଟା କରିଛନ୍ତି ।

ଅଗସ୍ତି ମୁନିଙ୍କଠାରୁ ତପସ୍ୟାର ମହତ୍ତ୍ୱ ଓ ଗୂଢ଼ତତ୍ତ୍ୱ ସମ୍ବନ୍ଧରେ ଜାଣି ଧ୍ରୁବ ତା'ର ଅଭିଳାଷ ପୂରଣ କରିଛି । କବି ଜଗନ୍ନାଥ ପାଣି ଏହି ପ୍ରସଙ୍ଗରେ ନିର୍ଗୁଣବାଦୀ କବିମାନଙ୍କ ପରି ପିଣ୍ଡ ଓ ବ୍ରହ୍ମାଣ୍ଡର ରହସ୍ୟ ପ୍ରାଖ୍ୟାପନ ମାଧ୍ୟମରେ ଯେପରି ଭାବରେ ଅବତାରଣା କରିଛନ୍ତି, ତାହା ପାଠକର ଦୃଷ୍ଟିକୁ ପଞ୍ଚସଖା ଯୁଗଆଡ଼କୁ ଆକୃଷ୍ଟ କରେ । ଓଡ଼ିଶାରେ ସିଦ୍ଧ ଓ ନାଥ ପନ୍ଥୀମାନେ ପ୍ରକୃତରେ ପିଣ୍ଡ ଓ ବ୍ରହ୍ମାଣ୍ଡ ରହସ୍ୟର ସୂତ୍ରପାତ କରିଥିଲେ । ପରବର୍ତ୍ତୀ କାଳରେ ପଞ୍ଚସଖାଗଣ ଏହି ନିର୍ଗୁଣ ମାହାତ୍ମ୍ୟର ପ୍ରଭାବରେ ନିଜନିଜର ପ୍ରସିଦ୍ଧି ସମଗ୍ର ଓଡ଼ିଶାରେ ପ୍ରଖ୍ୟାପନ କରିଥିଲେ । ସେହି ମୂଳ ଉତ୍ସର ଅବଲମ୍ବନରେ ପଞ୍ଚସଖାଙ୍କଠାରୁ ଆରମ୍ଭ କରି ଭୀମ ଭୋଇଙ୍କ ପର୍ଯ୍ୟନ୍ତ ବହୁ କବି ସ୍ୱତନ୍ତ୍ର କାବ୍ୟ, କୋଇଲି, ଚଉତିଶା ଓ ଭଜନାଦି ରଚନା କରି ଓଡ଼ିଆ ସାହିତ୍ୟରେ ନିର୍ଗୁଣ ଭକ୍ତି ଧାରାର ଏକ ଶାଶ୍ୱତ ପ୍ରବାହ ଛୁଟାଇଛନ୍ତି । କବି ମଧ୍ୟ ପ୍ରସଙ୍ଗକ୍ରମେ ନିଜ ଗୀତାଭିନୟରେ ଅଗସ୍ତିଙ୍କ ମୁଖରେ ପିଣ୍ଡ ବ୍ରହ୍ମାଣ୍ଡର ରହସ୍ୟ ବର୍ଣ୍ଣନା କରି ସାମାଜିକମାନଙ୍କ ମନରେ ତାତ୍ତ୍ୱିକ ଚିନ୍ତା ଉଦ୍ରେକ କରାଇବାର ପ୍ରଚେଷ୍ଟା କରିଛନ୍ତି ।

"ପ୍ରଥମେ ଆଧାରଚକ୍ରେ ଧ୍ୟାନ କରି ଅରୁଣବର୍ଣ୍ଣ କମଳେ,
ଦ୍ୱିତୀୟରେ ସ୍ୱାଧିଷ୍ଠାନ ଚକ୍ର ଭେଦି ଜ୍ୟୋତି ଦେଖ ଷଡ଼୍‌ଦଳେ ।
ମଣିପୁର ଚକ୍ରରେ,
ଦଶଦଳେ ନାଦବିନ୍ଦୁ ଅକ୍ଷରେ ।

× × ×

ମନ ପବନକୁ ବ୍ରହ୍ମରନ୍ଧ୍ରେ ତୋଳ ମୃଣାଳ ଜ୍ୟୋତି ପଥରେ,
ଚନ୍ଦ୍ର ସୂର୍ଯ୍ୟ ଘରେ ଅନଳ ଜଳୁଛି ଚକ୍ଷୁ ରୂଜ ରହିଁ ଅରେ ।
ଶୂନ୍ୟ ଶବଦ ପୁରେ,
ହଂସ ଆସନ ଏକ ପାଦରେ ।

× × ×

ସତ୍ତ୍ୱ ରଜ ତମ ତ୍ରିଗୁଣେ ତ୍ରିବେଣୀ ବହଇ ଉଜାଣି ନଦୀ,
ଗୋଲ୍ଲ-ହାଟ ପରେ ଧନ୍ଦା ଲାଗିଅଛି ଦେଖ ଇନ୍ଦ୍ରିୟ ନିରୋଧି ।
ହରି ଜଟାରୁ ଝରି—
ଝରି ବହେ ଗଙ୍ଗାଧାର ।

ଓଁକାର ଅକାର ଉକାର ଅକ୍ଷର ଅର୍ଦ୍ଧମାତ୍ରା ପରର ଥାଇ,
ତାହାପରେ ଯେଉଁ ସ୍ଥୂଳ ବ୍ରହ୍ମବିନ୍ଦୁ ସେହି ନିରଞ୍ଜନ ଦେଖ ।
ଚେତ ଚେତନା ପରେ,
ହର ବ୍ରହ୍ମା ଦ୍ୱାସ୍ଥ ସେହିଠାରେ ।

ଧ୍ରୁବ ଚରିତର ଚତୁର୍ବିଂଶ ଗୀତରେ କବି ଜଗନ୍ନାଥ ପାଣି ଧ୍ରୁବଙ୍କର ତପସ୍ୟା ସ୍ଥଳରେ ସୁନୀତଙ୍କର ମାୟାରୂପକୁ ପ୍ରବେଶ କରାଇଛନ୍ତି । ଇନ୍ଦ୍ରଙ୍କ ଆଦେଶରେ ମାୟାବଶ ସୁକୁମାର ରାଜକୁମାର ଧ୍ରୁବର ତପସ୍ୟାରେ ଉପସ୍ଥିତା ହୋଇ ସୁନୀତଙ୍କ ରୂପ ଧାରଣ କରି କରୁଣସ୍ୱରରେ କ୍ରନ୍ଦନ କରିଛି—

"ତୁ ମୋର ଜୀବନ ଅନ୍ଧର ନୟନ ଦରିଦ୍ର ରତନ ଧନ
ଦଣ୍ଡେ ନ ଦେଖିଲେ ଖଣ୍ଡେଦୂର ଯାଇ ପିଣ୍ଡେ ନରହେ ମୋ ପ୍ରାଣ ।
ରେ କୁମର,
ରାଜପଦେ କାର୍ଯ୍ୟ ନାହିଁ ମୋର ।
ଯାବତଜନନୀ ଛଳେ ମାନ ଯେନ ଦେଶାନ୍ତରୀ ହେଲୁ ଯେବେ,
ସତ୍ୟ ସତ୍ୟ ଏହି ତୁ ନଗଲେ ମୁହିଁ ପ୍ରାଣ ନ ରଖିବି କେବେ ।
ରେ କୁମର,
ବୋଲେ ଜଗନ୍ନାଥ କବିବର ।"

କବି ଜଗନ୍ନାଥ ପରିଶେଷରେ ଅଷ୍ଟବିଂଶତିତମ ଗୀତରେ ମାତା ପୁତ୍ରଙ୍କର ମିଳନ ବର୍ଣ୍ଣନା ଅତି ସୁନ୍ଦର ଭାବରେ କରିଛନ୍ତି । ଦୀର୍ଘଦିନର ବିଚ୍ଛେଦ ପରେ ପୁତ୍ରହରା ଜନନୀ ନିଜର ଏକୋଇରବଳା ବଣିକେଶନଙ୍କୁ ପାଇ ଆତ୍ମବିଭୋର ହୋଇ ଉଠିଛନ୍ତି । କବି ସେହି ମର୍ମସ୍ପର୍ଶୀ ଦୃଶ୍ୟର ଅବତାରଣା ଗୀତାଭିନୟର ଶେଷ ପର୍ଯ୍ୟାୟରେ କରି ସାମାଜିକମାନଙ୍କ ମନରେ ଅପୂର୍ବ ପୁଲକ ସଞ୍ଚାର କରାଇଛନ୍ତି ।

"ତୋହ ଗଲାଦିନୁଁ ଦିନେରେ ଧନ ! ଦିନେ କରିନାହିଁ ସ୍ନାନ ଭୋଜନ,
ସାତଦିନ ସାତଯୁଗ ହୋଇଲା, ଝୁରି ଝୁରି ତନୁ କ୍ଷୀଣ ଭଇଲା,
ତୋହ ଗୁଣ ଗୁଣି,
ନିରବଧି ନୀର ବହେ ନୟନରୁ ଶ୍ରାବଣ ବରଷା ଜାଣିରେ ।"

ମୋଟ ଉପରେ ଦେଖିବାକୁ ଗଲେ, କବି 'ଦକ୍ଷଯଜ୍ଞ'ର ରଚନା ପରି ଧ୍ରୁବଚରିତକୁ କରୁଣ ରସପୂର୍ଣ୍ଣ ଗୀତାଭିନୟରେ ପରିଣତ କରିଛନ୍ତି । ଦକ୍ଷଯଜ୍ଞର କେତୋଟି ସ୍ଥଳରେ ହାସ୍ୟ ଓ ବୀରରସର ଅବତାରଣା କରାଯାଇଥିଲେ ହେଁ ଧ୍ରୁବଚରିତର ଆମୂଳଚୂଳ କରୁଣ ରସପୂର୍ଣ୍ଣ କରାଇବାରେ କବି ଚିରଳହେଲେ ହେଁ ...

କରି ନାହାନ୍ତି । ଅବଶ୍ୟ ବନବାସିନୀ ସୁନୀତିଙ୍କ ସହିତ ରାଜା ଉତ୍ତାନପାଦଙ୍କର ମିଳନ ପ୍ରସଙ୍ଗରେ କବି ଆଦିରସର ସଞ୍ଚାର କରାଇଥିଲେ ହେଁ, ତାହା କରୁଣରସର ପରିପନ୍ଥୀ ନହୋଇ ରସ ପରିବେଷଣର ଉତ୍କର୍ଷ .ାର ପରିଚାୟକ ହୋଇପାରିଛି ।

କବି ଜଗନ୍ନାଥ ପାଣି ଦୁର୍ବାସା ଚରିତ୍ରକୁ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ପୁରାଣର ପ୍ରାୟ ଅଧିକାଂଶ ବର୍ଣ୍ଣନାରେ ଦୁର୍ବାସାଙ୍କୁ ଅହେତୁକ କ୍ରୋଧୀ, ଅହଂକାରୀ ଓ ଋଷି ଜୀବନର ସମ୍ପୂର୍ଣ୍ଣ ବିରୋଧୀ ରୂପେ ବର୍ଣ୍ଣନା କରାଯାଇଛି । ସାମାନ୍ୟ ବ୍ୟତିକ୍ରମରେ ଦୁର୍ବାସାଙ୍କର କ୍ରୋଧ ଓ ଅଭିଶାପର ବର୍ଣ୍ଣନା ପୁରାଣକାରମାନଙ୍କ ଲେଖାରୁ ଜଣାଯାଏ । କିନ୍ତୁ ଜଗନ୍ନାଥ ପାଣି ଧ୍ରୁଚରିତ ଗୀତାଭିନୟରେ ଦୁର୍ବାସା ଚରିତ୍ରର ଯେଉଁ ମହନୀୟତା ଦେଖାଇଛନ୍ତି ତାହାର ପଟାନ୍ତର ନାହିଁ । କ୍ଷଣକୋପୀ ଦୁର୍ବାସା ଅସହାୟା ରାଜମହିଷୀଙ୍କର କରୁଣ କ୍ରନ୍ଦନରେ ବିଚଳିତ ହୋଇ ପଡ଼ିଛନ୍ତି—ଏବଂ ତାଙ୍କୁ ନିଜ ଆଶ୍ରମକୁ ନେଇ ସଯତ୍ନରେ ରଖିବା ସଙ୍ଗେ ସଙ୍ଗେ ରାଜା ଉତ୍ତାନପାଦଙ୍କ ସହିତ ସୁନୀତିଙ୍କର ପୁନର୍ମିଳନ ଘଟାଇ ସାମାଜିକ ମାନଙ୍କର ଅତ୍ୟନ୍ତ ପ୍ରିୟପାତ୍ର ହୋଇ ପାରିଛନ୍ତି । ଯେଉଁ ଦୁର୍ବାସା ସୁକୁମାରୀ ମୁନିକନ୍ୟା ଶକୁନ୍ତଳାଙ୍କର ସୁଖଦ ସ୍ୱପ୍ନ ଧୂଳିସାତ୍ କରାଇ ତାଙ୍କୁ ମରୀଚ-ଆଶ୍ରମବାସିନୀ କରାଇଥିଲେ, ସେହି ମହର୍ଷି ରାଣୀ ସୁନୀତିଙ୍କ ଦୁଃଖରେ ବିହ୍ୱଳ ହୋଇ ରାଜାଙ୍କ ସହିତ ତାଙ୍କର ପୁନର୍ମିଳନ କରାଇବା ସଙ୍ଗେ ସଙ୍ଗେ ତାଙ୍କ ପୁତ୍ର ଧ୍ରୁବକୁ ରାଜସିଂହାସନର ଅଧିକାରୀ କରାଇବାରେ ସଫଳ-ପ୍ରୟାସ କରିଛନ୍ତି । କବି ଜଗନ୍ନାଥ ପାଣିଙ୍କ ବର୍ଣ୍ଣନାରେ ଦୁର୍ବାସା ଚରିତ୍ରର ଉପସ୍ଥାପନା ଗୀତାଭିନୟଟିକୁ ସଫଳ କରାଇବାରେ ସହାୟକ ହୋଇଛି । ଯେଉଁ ଦର୍ଶକମାନେ ଅଭିଜ୍ଞାନ ଶାକୁନ୍ତଳରେ ଦୁର୍ବାସାଙ୍କର ଆଗମନରେ ପ୍ରକମ୍ପିତ ହୋଇ ଉଠନ୍ତି, ସେହି ସାମାଜିକମାନେ ଧ୍ରୁବଚରିତରେ ଦୁର୍ବାସାଙ୍କର ଆଗମନକୁ ସ୍ୱାଗତ ଜଣାଇ କବି ପାଣିଙ୍କ ନାଟ୍ୟପ୍ରତିଭାର ପ୍ରଶଂସା କରିଛନ୍ତି ।

---

# ପ୍ରହ୍ଲାଦଚରିତ

ଶ୍ରୀମଦ୍ ଭାଗବତର ସପ୍ତମ ସ୍କନ୍ଧ ଅନୁସାରେ କବି ଜଗନ୍ନାଥ 'ପ୍ରହ୍ଲାଦଚରିତ' ଗୀତାଭିନୟ ଆରମ୍ଭ କରିଛନ୍ତି । ସେ ସମୁଦାୟ ପ୍ରହ୍ଲାଦ ଚରିତକୁ ଅଠରଗୋଟି ଗୀତରେ ବର୍ଣ୍ଣନା କରିଛନ୍ତି । ପ୍ରତ୍ୟେକ ଗୀତକୁ କବି ଜଗନ୍ନାଥ 'ଛାନ୍ଦ' ବୋଲି ଉଲ୍ଲେଖ କରିଛନ୍ତି । ଯାହାହେଉ, ସମୁଦାୟ ଅଠରଗୋଟି ଛାନ୍ଦ ବା ଗୀତରେ ବର୍ଣ୍ଣିତ ବିଷୟବସ୍ତୁ ଏଠାରେ ପ୍ରଦତ୍ତ ହେଲା ।

"ବୈକୁଣ୍ଠର ଦ୍ୱାରପାଳ ବ୍ରହ୍ମଶାପରେ ଆଦିଯୁଗ ବା ସତ୍ୟଯୁଗରେ ହିରଣ୍ୟ ହିରଣ୍ୟାକ୍ଷ ନାମରେ ଜନ୍ମ ଗ୍ରହଣ କରି ପାଞ୍ଚବର୍ଷ ମଧ୍ୟରେ ସପ୍ତଦ୍ୱୀପା ପୃଥିବୀକୁ ଜୟ କଲି ଏବଂ ବିଦ୍ୟୁଚ୍ଛାୟା ନାମ୍ନୀ କନ୍ୟାକୁ ସ୍ୱୟମ୍ବରରେ ଲାଭକରି ହିରଣ୍ୟ ସିନ୍ଧୁକୂଳରେ ଅନୁଜ ହିରଣ୍ୟାକ୍ଷ ସହିତ ବାସ କଲା । ହିରଣ୍ୟାକ୍ଷର ଦର୍ପରେ ଅତିଷ୍ଠ ହୋଇ ଯଜ୍ଞବରାହ ଦନ୍ତାଗ୍ରରେ ତାର ବକ୍ଷ ଚିରି ପକାଇଲେ । ଏହା ଶୁଣି ସେହିଦିନଠାରୁ ହିରଣ୍ୟ ବିଷ୍ଣୁଦ୍ରୋହୀ ରୂପେ ଦିନକୁ ଦିନ ଅତ୍ୟନ୍ତ ଉଗ୍ର ହୋଇଉଠିଲା ।

ତହୁଁ ମନ୍ଦର ପର୍ବତରେ ତପସ୍ୟା କରି ବ୍ରହ୍ମାଙ୍କ ଠାରୁ କାହାରି ହସ୍ତରେ ନ ମରିବା ପାଇଁ ଏକ କଠୋର ବର ଲାଭ କରି ହିରଣ୍ୟ ବଳୀୟାନ୍ ହୋଇଉଠିଲା । ତାହା ଫଳରେ ସେ ଏତେ ଉଗ୍ର ଓ ଭୟଙ୍କର ହୋଇଗଲା ଯେ, ଦେବତାମାନେ ହିରଣ୍ୟ କବଳରୁ ଉଦ୍ଧାର ପାଇବା ପାଇଁ କ୍ଷୀରସାଗରଶାୟୀ ବିଷ୍ଣୁଙ୍କ ଶରଣାପନ୍ନ ହେଲେ । ତହୁଁ ପ୍ରହ୍ଲାଦ ଜନ୍ମ ପର୍ଯ୍ୟନ୍ତ ଅପେକ୍ଷା କରିବା ଲାଗି ଦେବତାମାନଙ୍କୁ ବିଷ୍ଣୁ ଆଶ୍ୱାସନାବାଣୀ ଶୁଣାଇଲେ ।

ହିରଣ୍ୟ ନିଜର ବାହୁବଳରେ ସ୍ୱର୍ଗ ଜୟ କରି ଦେବତାଙ୍କୁ ଆଣି ଯଥାଯୋଗ୍ୟ ସେବାରେ ନିଯୁକ୍ତ କଲା । ଏହିପରି ଭାବରେ କିଛି କାଳ ଉତ୍ତାରେ ବିଦ୍ୟୁଚ୍ଛାୟା ଗର୍ଭବତୀ ହେଲେ । ନିର୍ଦ୍ଦିଷ୍ଟ ସମୟରେ ରାଜା ରାଣୀଙ୍କ ନିକଟକୁ ସୁମିଷ୍ଟ ଆହାର ପଠାଇଲେ । ଦଶମାସ ଦଶଦିନ ସମ୍ପୂର୍ଣ୍ଣ ହୋଇଯାଆନ୍ତେ ଚୈତ୍ରମାସ ଇନ୍ଦୁପୂର୍ଣ୍ଣିମୀ ଦିନ ଶୁଭଲଗ୍ନରେ ବିଦ୍ୟୁଚ୍ଛାୟାଙ୍କ ଗର୍ଭରୁ ପୁତ୍ର ସନ୍ତାନଟି ଭୂମିଷ୍ଠ ହେଲା । ପାଞ୍ଚୁଆତି ଦିନ

ବନ୍ଧୁବର୍ଗ ପିଲାଟିର ନାମ ପ୍ରହ୍ଲାଦ ଦେଲେ । ଧୀରେ ଧୀରେ ପିଲାଟି ବଢ଼ିବାକୁ ଲାଗିଲା ଏବଂ ଦାସୀପରିଚାରିକାମାନେ ପିଲାଟିକୁ ନାନା ବେଶଭୂଷଣରେ ସଜ୍ଜିତ କରିବାକୁ ଲାଗିଲେ । ବାଳକ ପ୍ରହ୍ଲାଦର ବୟସ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ତା'ର ମନ ବିଷ୍ଣୁଙ୍କ ପାଦପଦ୍ମରେ ନିମଗ୍ନ ହୋଇଗଲା । ସେ ଖେଳବେଳରେ ମଧ୍ୟ ବିଷ୍ଣୁଙ୍କ ନାମ ଆନନ୍ଦ ଗଦ୍‌ଗଦ୍ କଣ୍ଠରେ ଗାନକଲା ।

ହିରଣ୍ୟ ଦିନେ ବିଦ୍ୟାଗୁରୁଙ୍କୁ ଡକାଇ ପ୍ରହ୍ଲାଦର ବିଦ୍ୟାଧ୍ୟୟନ ପାଇଁ ଆଦେଶ ଦେଲେ । ଗୁରୁ ବର୍ଣ୍ଣ ପରିଚୟ କରାଇବା ପରେ ପ୍ରହ୍ଲାଦକୁ 'ଶିବପୁରାଣ' ପାଠ କରିବାକୁ ଦେଲେ । କିନ୍ତୁ 'ବିଷ୍ଣୁ ପୁରାଣ' ନ ଦେଖି ପ୍ରହ୍ଲାଦ 'ଶିବ ପୁରାଣ'କୁ ଉପେକ୍ଷା କଲା । ଗୁରୁ ଏଥିରେ ବିସ୍ମିତ ହୋଇ କାରଣ ଜିଜ୍ଞାସା କରନ୍ତେ, ଜନନୀ ଗର୍ଭରେ ଥିବାବେଳରୁ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ନିଜର ଶରୀର ଅର୍ପଣ କରିଥିବାରୁ ଅନ୍ୟ ଦେବଙ୍କୁ ସେ ଭଜନ କରିପାରିବ ନାହିଁ କିମ୍ବା ସେମାନଙ୍କ ଚରିତ ପାଠ କରି ପାରିବ ନାହିଁ ବୋଲି ପ୍ରହ୍ଲାଦ ସ୍ପଷ୍ଟ ଉତ୍ତର ଦେଲା । ତତ୍ପରେ ଗୁରୁ ଅନେକ ପ୍ରକାର ଉପଦେଶ ଦେଇଥିଲେ ମଧ୍ୟ ପ୍ରହ୍ଲାଦ ଗୁରୁଙ୍କର ପ୍ରତ୍ୟେକ ଯୁକ୍ତିକୁ ଖଣ୍ଡନ କଲା ।

ଦିନେ ହିରଣ୍ୟ ଅସୁର ପୁତ୍ରକୁ ଡାକି ବିଦ୍ୟାଧ୍ୟୟନ ବିଷୟରେ ପଚାରନ୍ତେ ପ୍ରହ୍ଲାଦ ପିତାଙ୍କ ଆଗରେ ବିଷ୍ଣୁଙ୍କ ମହିମା ବ୍ୟାଖ୍ୟାନ କଲା । ଏହାଶୁଣି ହିରଣ୍ୟ ଗୁରୁଙ୍କୁ ଡକାଇ ତୀକ୍ଷ୍ଣଭାଷାରେ ଭର୍ତ୍ସନା କଲା । କିନ୍ତୁ ଗୁରୁ ସମସ୍ତ ବିଷୟ ବୁଝାଇବା ପରେ ଦୈତ୍ୟରାଜ ସବୁକଥା ବୁଝିପାରିଲେ ଏବଂ ଏଥର ପ୍ରହ୍ଲାଦ ବିଷ୍ଣୁନାମ ଉଚ୍ଚାରଣ କଲେ ତା'ର ଶିରଚ୍ଛେଦ ହେବ ବୋଲି କଠୋର ଆଦେଶ ଦେଲା । ତତ୍ପରେ ଶିବଙ୍କ ଗୁଣ ବର୍ଣ୍ଣନା କରି ଗୁରୁ ଯେତେ ପାଠ ପଢ଼ାଇଲେ ପ୍ରହ୍ଲାଦ ତା' ବିରୁଦ୍ଧରେ ଗୋଟିଏ ଗୋଟିଏ ଉଦାହରଣ ଉପସ୍ଥାପିତ କରି ଗୁରୁଙ୍କ ମତ ଖଣ୍ଡନ କଲା । ଦିନେ ପ୍ରହ୍ଲାଦ ଚାଟଶାଳୀର ଅନ୍ୟାନ୍ୟ ଅସୁରବାଳକମାନଙ୍କୁ ମଧ୍ୟ ବିଷ୍ଣୁଙ୍କ ନାମ ଜପ କରିବା ପାଇଁ ପ୍ରବର୍ତ୍ତାଇଲା । ଅନ୍ୟ ପିଲାମାନେ ପ୍ରହ୍ଲାଦର ଉପଦେଶ ଗ୍ରହଣ କଲେନାହିଁ ।

ପୁଣି ଦିନେ ଦନୁଜେନ୍ଦ୍ର ପ୍ରହ୍ଲାଦର ବିଦ୍ୟା ପରୀକ୍ଷା କରନ୍ତେ ସେ ମଧ୍ୟ ବିଷ୍ଣୁଙ୍କ ମହିମା ପିତାଙ୍କ ଆଗରେ ପ୍ରଖ୍ୟାପନ କଲା । ହିରଣ୍ୟ ବିଷ୍ଣୁଙ୍କ ଅବଗୁଣ ସାକ ପୁତ୍ର ଆଗରେ ବ୍ୟାଖ୍ୟା କରି ବଂଶ ଶତ୍ରୁର ନାମ ନ ଧରିବା ପାଇଁ ଉପଦେଶ ଦେଇଥିଲେ ମଧ୍ୟ ପ୍ରହ୍ଲାଦ ବିଷ୍ଣୁଙ୍କ ବ୍ୟତୀତ ଅନ୍ୟ ଦେବଙ୍କୁ ଭଜି ପାରିବ ନାହିଁ ବୋଲି ସ୍ପଷ୍ଟ ମତ ପିତାଙ୍କୁ ଜଣାଇଦେଲା ।

ପ୍ରହ୍ଲାଦର ଶେଷ ବାଣୀ ଶୁଣି ଦୈତ୍ୟେନ୍ଦ୍ର ହିରଣ୍ୟ ପ୍ରହ୍ଲାଦକୁ ବଧ କରିବା ଲାଗି ଆଦେଶ ଦେଲା । ଅସୁରମାନେ ପ୍ରହ୍ଲାଦକୁ ବଧ ଭୂମିକୁ ନେଇଗଲେ ।

ସେଠାରେ ପ୍ରହ୍ଲାଦର କରୁଣ ନିବେଦନ ଶୁଣି ବିଷ୍ଣୁ ପ୍ରସନ୍ନ ହେଲେ ଏବଂ ଚକ୍ର ଉହାଡ଼ରେ ପ୍ରହ୍ଲାଦକୁ ରକ୍ଷା କଲେ । ତା' ଫଳରେ ଅସୁରମାନଙ୍କ ଖଡ୍ଗ ପ୍ରହ୍ଲାଦ ଦେହରେ ଆଘାତ କରି ପାରିଲା ନାହିଁ । ଏହା ଶୁଣି ଦୈତ୍ୟରାଜ ତକ୍ଷକକୁ ଡକାଇ ପ୍ରହ୍ଲାଦକୁ ଦଂଶନ କରିବା ଲାଗି ଆଦେଶ ଦେଲା । ତକ୍ଷକ ଫୁତ୍କାର କରି ଦଂଶନ କରିବାକୁ ଆସିଲା । ତାହା ଦେଖି ପ୍ରହ୍ଲାଦ କରୁଣ କଣ୍ଠରେ ବିଷ୍ଣୁଙ୍କୁ ପ୍ରାର୍ଥନା କରନ୍ତେ, ତକ୍ଷକ ଯେତେ ଦଂଶନ କଲେ ମଧ୍ୟ ପ୍ରହ୍ଲାଦ ଦେହରେ ସର୍ପର ଦନ୍ତାଘାତ ଢଳେଢ଼ଳେ ପ୍ରଭାବ ବିସ୍ତାର କଲାନାହିଁ । ଫଳରେ ଲଜ୍ଜିତ ହୋଇ ତକ୍ଷକ ପଳାଇଲା ।

ଏଥିଁ ହିରଣ୍ୟର କନ୍ୟା ହୋଲିକା ମନ୍ତ୍ରବଳରେ ପ୍ରହ୍ଲାଦକୁ ଧ୍ୱଂସ କରିଦେବାକୁ ପ୍ରତିଜ୍ଞା କରି ପ୍ରହ୍ଲାଦ ସହ ଅଗ୍ନିରେ ପ୍ରବେଶ କଲା ଏବଂ ନିଜେ କେବଳ ଧ୍ୱଂସ ପାଇଗଲା । ତତ୍ପରେ ଅସୁରରାଜ ଐରାବତକୁ ପ୍ରହ୍ଲାଦ ଦେହରେ ଦନ୍ତାଘାତ ପାଇଁ ଆଦେଶ ଦେଲା । ତାହା ମଧ୍ୟ ବିଷ୍ଣୁଙ୍କ ପ୍ରଭାବରେ ନିଷ୍ଫଳ ହୋଇଗଲା । ଏହା ଦେଖି ଅସୁରରାଜ ପ୍ରହ୍ଲାଦକୁ ଧରି ପର୍ବତ ଉପରୁ ଫିଙ୍ଗିଦେଲା; କିନ୍ତୁ ସେଠାରେ ମଧ୍ୟ ବିଷ୍ଣୁ ଭକ୍ତ ପ୍ରହ୍ଲାଦକୁ କୋଳରେ ଧରି ରକ୍ଷା କଲେ । ତା'ପରେ ବିଷଦୈତ୍ୟକୁ ଡକାଇ ହିରଣ୍ୟ ପ୍ରହ୍ଲାଦକୁ କାଳକୂଟ ବିଷ ପିଆଇ ଦେଲା । ବିଷଜ୍ୱାଳାରେ ପ୍ରହ୍ଲାଦର ଚେତନା ଲୋପ ହୋଇଗଲା ଏବଂ ମାତା କୟାଧୁ ଏହା ଦେଖି କରୁଣ ସ୍ୱରରେ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ । ବ୍ରାହ୍ମଣ ରୂପରେ ବିଷ୍ଣୁ ଆସି ପ୍ରହ୍ଲାଦ ମୁଖରେ ଗଙ୍ଗାଜଳ ସିଞ୍ଚି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ।

ସେହି ମହାବିପଦରୁ ବର୍ତ୍ତିଯିବାପରେ ରାକ୍ଷସରାଜ ହିରଣ୍ୟଙ୍କ ନିର୍ଦ୍ଦେଶରେ ଅସୁରମାନେ ପ୍ରହ୍ଲାଦର ଶରୀରରୁ ରାଜକୀୟ ସମସ୍ତ ଆଭରଣ ବାହାର କରି, ତା'ର ହସ୍ତପଦ ଦୃଢ଼ ଭାବରେ ବନ୍ଧନପୂର୍ବକ ସମୁଦ୍ରରେ ଫିଙ୍ଗିଦେଲେ; କିନ୍ତୁ ପ୍ରହ୍ଲାଦ ସେଠାରୁ ମଧ୍ୟ ଅନାୟାସରେ ପ୍ରାଣପାଇ ଫେରିଆସିଲା ।

ତତ୍ପରେ ରାକ୍ଷସରାଜ ପ୍ରହ୍ଲାଦକୁ ଢେଙ୍କିରେ କୁଟି, ଶିଳରେ ବାଟି ତା'ର ଶରୀରର ମାଂସକୁ ରନ୍ଧନ କରି ଭୋଜନ କଲା । ମାତ୍ର ବିଷ୍ଣୁଙ୍କ ଦୟାରୁ ପ୍ରହ୍ଲାଦ ପୁଣି ଜୀବନ ପାଇ ବଞ୍ଚିଗଲା ।

ତତ୍ପରେ ହିରଣ୍ୟ ମନେ ମନେ ପ୍ରମାଦ ଗଣିଲା ଏବଂ ଗୋଟିଏ ସାମାନ୍ୟ ଶିଶୁକୁ ମାରିନପାରି କୃତ୍ତିକା ହୋମରେ ପୂର୍ଣ୍ଣାହୁତି ଦେଇ ପ୍ରହ୍ଲାଦକୁ ନିଃଶେଷ କରି ଦେବାର ଆୟୋଜନ କଲା । ଏହାଶୁଣି ରାଣୀ କୟାଧୁ ପ୍ରହ୍ଲାଦକୁ ଅନେକ ବୁଝାଇଲେ ଏବଂ ଶେଷରେ ଗୋପନରେ ହରିନାମ ନେବାଲାଗି ଉପଦେଶ ଦେଲେ; କିନ୍ତୁ ପ୍ରହ୍ଲାଦ ସେଥିରେ ଆଦୌ ସମ୍ମତ ହେଲାନାହିଁ । ଫଳରେ ଅସୁରମାନେ ପ୍ରହ୍ଲାଦକୁ

ବନ୍ଧନ କରି ହୋମକୁଣ୍ଡରେ ପକାଇ ଦେଲେ । ଏହାଦେଖି ରାଣୀ ମହାଦୁଃଖରେ ରୋଦନ କଲେ । କିନ୍ତୁ ପ୍ରହ୍ଲାଦ ସମସ୍ତ ଦାନବଙ୍କୁ ବିସ୍ମିତ କରାଇ ଅକ୍ଷତ ଶରୀରରେ ଅଗ୍ନିକୁଣ୍ଡରୁ ନିର୍ଗତ ହେଲା । ଏହାପରେ ପୁନେ ରାଣୀ ବିଦ୍ୟୁଚ୍ଛାୟା ଦନୁଜେନ୍ଦ୍ର ହିରଣ୍ୟ ନିକଟରେ ପ୍ରହ୍ଲାଦଙ୍କୁ ଅଧିକ କଷ୍ଟ ନଦେବା ଲାଗି କାକୁବାକୁ ନିବେଦନ କଲେ । ତଥାପି ପ୍ରହ୍ଲାଦଙ୍କୁ ଡକାଇ ହିରଣ୍ୟ ସମସ୍ତ ବିପଦରୁ ତାଙ୍କୁ କିଏ ରକ୍ଷାକରେ ବୋଲି ପଚାରନ୍ତେ ସେ ବିଷ୍ଣୁଙ୍କ ମହିମା ନିର୍ଭୀକ ଭାବରେ ବ୍ୟାଖ୍ୟାନ କଲା । ତଥାପି ଦୈତ୍ୟରାଜ ନିକଟରେ ଥିବା ବିଦ୍ରୁମ ସ୍ତମ୍ଭରେ ବିଷ୍ଣୁଙ୍କ ଅବସ୍ଥିତିର ପ୍ରମାଣ କରାଇବା ପାଇଁ ପ୍ରହ୍ଲାଦଙ୍କୁ କୋପପୂର୍ଣ୍ଣ ଚକ୍ଷୁରେ ଆହ୍ୱାନ ଜଣାଇଲା । ଭକ୍ତ ପ୍ରହ୍ଲାଦ ତାହା ଦେଖି କାତର କଣ୍ଠରେ ଆର୍ତ୍ତତ୍ରାଣ ଦୀନବାନ୍ଧବ ହରିଙ୍କୁ ଏକାନ୍ତସ୍ୱରେ ପ୍ରାର୍ଥନା କଲା । ଭକ୍ତର କରୁଣ ନିବେଦନ ଶୁଣି ମହାଭୟଙ୍କର ନୃସିଂହ ରୂପ ଧାରଣ କରି ପ୍ରଭୁ ବିଦ୍ରୁମ ଖମ୍ବରୁ ନିର୍ଗତ ହେଲେ । ଏହା ଦେଖି ସମସ୍ତ ଅସୁର କିଏ କୁଆଡ଼େ ପଳାୟନ କଲେ ଏବଂ ସଚରାଚର ବ୍ରହ୍ମାଣ୍ଡ ନୃସିଂହଙ୍କ ଆବିର୍ଭାବରେ ପ୍ରକମ୍ପିତ ହେବାକୁ ଲାଗିଲା । ପ୍ରଭୁ ନୃସିଂହ ହୁଂକାର କରି ହିରଣ୍ୟକୁ ଟାଣିଆଣି ଜାନୁରେ ପକାଇ, ନିଜର ତୀକ୍ଷ୍ଣ ନଖଦ୍ୱାରା ତା'ର ବକ୍ଷ ଚିରିଦେଇ ତାକୁ ମୋକ୍ଷଦାନଦେଲେ ।

ପ୍ରଭୁଙ୍କର ମହାଭୟଙ୍କର ନୃସିଂହ ରୂପ ଦେଖି ପ୍ରହ୍ଲାଦ ଆକୁଳ କଣ୍ଠରେ ସ୍ତୁତି ଆରମ୍ଭ କଲା । ପ୍ରହ୍ଲାଦର ସ୍ତୁତିରେ ସନ୍ତୁଷ୍ଟ ହୋଇ ପ୍ରଭୁ ନୃସିଂହ ରୂପ ତ୍ୟାଗ କରି ବ୍ରହ୍ମାଙ୍କୁ ଡକାଇ ଭକ୍ତକୁ ସ୍ୱର୍ଗରେ ଇନ୍ଦ୍ରପଦରେ ଅଭିଷିକ୍ତ କରିବା ଲାଗି ଆଦେଶ ଦେଇ ବୈକୁଣ୍ଠପୁରକୁ ପ୍ରସ୍ଥାନ କଲେ ।

କବି ଜଗନ୍ନାଥ ପାଣି ଏହି ଚରିତଟିକୁ ଗୋଟିଏ ଗୀତାଭିନୟ ଆକାରରେ ଲେଖିଥିଲେ ହେଁ, ଏଥିରେ କଥୋପକଥନ ସୂଚକ ଗୀତ ଦେବା ସଙ୍ଗେ ସଙ୍ଗେ ଟିକିଏ ଅଧିକମାତ୍ରାରେ ବର୍ଣ୍ଣନାତ୍ମକ ଶୈଳୀର ଆଶ୍ରୟ ଗ୍ରହଣ କରିଛନ୍ତି । ଅବଶ୍ୟ ସେକାଳର ଗୀତାଭିନୟ ଗୁଡ଼ିକରେ ଏପ୍ରକାର ପରିକଳ୍ପନା ଆଦୌ ଅସ୍ୱାଭାବିକ ନୁହେଁ । କାରଣ, ସେତେବେଳେ ଅଭିନେତା ଓ ଅଭିନେତ୍ରୀଙ୍କ ମୁଖରେ ହିଁ କବି ସେମାନଙ୍କ ବକ୍ତବ୍ୟ ପ୍ରକାଶ କରିବା ସଙ୍ଗେ ସଙ୍ଗେ ବର୍ଣ୍ଣନୀୟ ବିଷୟବସ୍ତୁର ଅବତାରଣା କରାଇବା ଅସମୀଚୀନ ବୋଲି ମନେ କରାଯାଉ ନଥିଲା । ଏ ପ୍ରକାର ଉଦାହରଣ ଓଡ଼ିଆ ରାମଲୀଳାମାନଙ୍କରେ ବେଶ୍ ଦେଖିବାକୁ ମିଳେ । କବି ଜଗନ୍ନାଥ ଯଦି ପ୍ରସ୍ତୁତ ପ୍ରହ୍ଲାଦଚରିତଟିକୁ ଗୋଟିଏ ଗୀତାଭିନୟ ଢଙ୍ଗରେ ଲେଖି ନଥା'ନ୍ତେ, ତା'ହେଲେ ସେ କେବେହେଲେ ରାକ୍ଷସଗୁରୁ ଓ ପ୍ରହ୍ଲାଦଙ୍କ କଥୋପକଥନ, ଅସୁରପୁତ୍ର ପ୍ରହ୍ଲାଦଙ୍କ ଉକ୍ତି ପ୍ରତ୍ୟୁକ୍ତି; ହିରଣ୍ୟ, ପ୍ରହ୍ଲାଦ ଓ ଗୁରୁଙ୍କ ସମ୍ବାଦ, ବିଦ୍ୟୁଚ୍ଛାୟାଙ୍କ

ଶୋକ ଓ ପୁତ୍ର ପ୍ରହ୍ଲାଦଙ୍କୁ ତାଙ୍କର ଆଶ୍ୱାସନା ଆଦି ଏତେ ବିସ୍ତୃତ ଭାବରେ ରଚନା କରିନଥାନ୍ତେ ।

କବି ଜଗନ୍ନାଥ ପାଣି ଧ୍ରୁବଚରିତ ଗୀତାଭିନୟରେ ଦୁର୍ବାସା ଆଶ୍ରମରେ ଥିବାବେଳେ ରାଣୀ ସୁନୀତଙ୍କ ନିକଟରୁ ପ୍ରେରିତ। ମନେକରି ତାଙ୍କ ନିକଟକୁ ରାଜା ଉତ୍ତାନପାଦଙ୍କ ସାଦପ୍ରେରଣ ପ୍ରସଙ୍ଗରେ ଯେପରି ବିଭିନ୍ନ ଖାଦ୍ୟଦ୍ରବ୍ୟର ବର୍ଣ୍ଣନା କରିଛନ୍ତି, ଅବିକଳ ରାଜା ହିରଣ୍ୟଙ୍କ ଦ୍ୱାରା ରାଣୀ ବିଦ୍ୟୁଲ୍ଲତା ନିକଟକୁ ସାଦ ପଠାଇବାର ବର୍ଣ୍ଣନା କରିଛନ୍ତି । ସେଠାରେ ବର୍ଣ୍ଣିତ ସାଦ ବର୍ଣ୍ଣନାର କଥିଟିପାଳ ପଦ ଅବିକଳ ଭାବରେ କବି ଏଠାରେ ଉଲ୍ଲେଖ କରି କେବଳ ଶେଷ ପଦରେ ମାତ୍ର ପାର୍ଥକ୍ୟ ରଖିଛନ୍ତି ।

"ଆଣିଅଛୁ ନିଅ ଏହି ସାଦ ଉପହାର ।
ବୋଲେ ଜଗନ୍ନାଥ ବାଞ୍ଛାପୂର୍ଣ୍ଣ ରାଯ କର ॥"
(ଧ୍ରୁବଚରିତ)

× × ×

ଏହି ଉପହାର ସାଦ ଦେଖି ରାଣୀ ତୋଷ,
ବୋଲେ ଜଗନ୍ନାଥ, ରାଣୀ ସୁଖେ କଲେ ରାଯ ।"
(ପ୍ରହ୍ଲାଦଚରିତ)

ବାଳକ ପ୍ରହ୍ଲାଦଙ୍କୁ ଧାତ୍ରୀଗଣ ବେଶ କରୁଥିବା ପ୍ରସଙ୍ଗଟିକୁ କବି ଅତି ନାନ୍ତ କୋମଳ ପଦାବଳୀର ସଂଯୋଗରେ ଅତ୍ୟନ୍ତ ରମଣୀୟ କରିଛନ୍ତି । ବିଶେଷତଃ ଅନୁପ୍ରାସପୂର୍ଣ୍ଣ କବିତା ରଚନା କରିବାରେ କବିଙ୍କର ବିଶେଷ ଦକ୍ଷତା ଥିବାରୁ, ସେ ପ୍ରହ୍ଲାଦଙ୍କ ବେଶ ବର୍ଣ୍ଣନା ପ୍ରସଙ୍ଗରେ ବେଶ୍ ଚମତ୍କାରିତା ଦେଖାଇଛନ୍ତି । ଅନ୍ତଃପୁର ମଧ୍ୟ ଗୋଟିଏ ଶ୍ରେଷ୍ଠ ପିଲା, ବିଶେଷତଃ ରାଜକୁମାରର ଦେଖି ଲାଗି ଦାସୀ ପରିଚାରିକାମାନେ ଯେପରି ତତ୍ପର ହୋଇ ଶିଶୁଟିକୁ ସୁନ୍ଦର ଭାବରେ ବେଶ କରାଇଥାନ୍ତି, କବି ଜଗନ୍ନାଥଙ୍କ ବର୍ଣ୍ଣନାରେ ତାହା ସଜୀବ ହୋଇ ଉଠିଛି । ବାସ୍ତବିକ୍ ପ୍ରତିଭାବାନ୍ କବି ନହେଲେ ଏଭଳି ସରସ ସାବଲୀଳ ବର୍ଣ୍ଣନାରେ ସିଦ୍ଧହସ୍ତତା ପ୍ରକାଶ କରିବା ଆଦୌ ସମ୍ଭବ ହୁଅନ୍ତା ନାହିଁ ।

"ନୀଳ କୁନ୍ତଳେ ତଳ ତଇଲ ଆଣି
ବାନ୍ଧଦେଲେ ବାନ୍ଧବୀ ଲେଟଣି ବେଣୀ ସେ,
ଚନ୍ଦ୍ର ବିମ୍ବାରେ,
ଝିଟିଝିଟି ଝରଇ ପାଟଥୋପାରେ ସେ ॥

କଞ୍ଜ ନୟନେ ଦେଲେ ଅଞ୍ଜନ ରଞ୍ଜି
ଲଞ୍ଜି ବଢ଼ାଇଦେଲେ ଧଇର୍ଯ୍ୟ ଭଞ୍ଜି ସେ,
କମ୍ବୁଗ୍ରୀବନ୍ଦୁ,
ଉଇଁ ଆସୁଛୁ କିବା ପୂର୍ଣ୍ଣିମା ଇନ୍ଦୁ ସେ ।।
ଜମ୍ବୁନଦ ଅମ୍ବୁଜ କମ୍ବୁକଣ୍ଠର
ଯତନେ ଦିଶେ ନବରତନ ହାର ସେ,
କର୍ଣ୍ଣକୁଣ୍ଡଳ,
ଝଳଝଳ ଦିଶଇ ଗଣ୍ଡମଣ୍ଡଳ ସେ ।।
× × ×
କରେ କନକବଳା ମାଣିକ ଚୂର
ବାଜଇ ବାଜୁବନ୍ଧ ରତ୍ନ ଘୁଙ୍ଗୁର ସେ,
ପାଦବାଳେଣି,
କଟୀରେ କ୍ଷୁଦ୍ରଘଣ୍ଟି ସୁନା କିଙ୍କିଣୀ ସେ ।"

ଦୈତ୍ୟେନ୍ଦ୍ର ହିରଣ୍ୟଙ୍କ ଆଦେଶରେ ରାକ୍ଷସଗୁରୁ ପ୍ରହ୍ଲାଦକୁ ଗୃହଶାଳୀକୁ ନେଇ 'ଶିବପୁରାଣ' ପଠନରେ ମନ ଦେବାଲଗି ବହୁତ ବୁଝାଇଛନ୍ତି; କିନ୍ତୁ ଆଦର୍ଶ ଭକ୍ତ ପ୍ରହ୍ଲାଦର ମନ ସେଥିରେ ମାନୁନାହିଁ । ଗୁରୁ ତାକୁ ଯେତେ ଯୁକ୍ତି ଦେଇ ଦାନବକୁଳର ଇଷ୍ଟଦେବ ଶିବଙ୍କ ଆରାଧନା ଓ ତାଙ୍କ ଚରିତ ବର୍ଣ୍ଣିତ ପୁରାଣ ପାଠ ଲଗି ପ୍ରବର୍ତ୍ତାଇଛନ୍ତି, ପ୍ରହ୍ଲାଦ ଗୋଟି ଗୋଟି କରି ସମସ୍ତ ଯୁକ୍ତିକୁ ଖଣ୍ଡନ କରି ବିଷ୍ଣୁଙ୍କ ମହିମା ପ୍ରଖ୍ୟାପନ କରିଛୁ ।

ଗୁରୁ—ବଂଶର ବଇରୀଠାରେ ଯେ ପଶେ ଶରଣ
ଧିକ ତାର ବଳବୀର୍ଯ୍ୟ ଧିକ କ୍ଷତ୍ରିପଣ,
ରେ ପ୍ରହ୍ଲାଦ !
ଜନ୍ମାନ୍ତରଯାଏ ତାକୁ ହୁଏ ଅପବାଦ ।।
ପ୍ରହ୍ଲାଦ—ଯାହାର ବଂଶରେ ବିଷ୍ଣୁ ଆରାଧନା ନାହିଁ
ସେ ବଂଶ ପତିତ ବୋଲି ସର୍ବଶାସ୍ତ୍ରେ କହି ।
ହେ ବିଦ୍ୟାଗୁରୁ !
ପାପେ ରତ କାଳେ ଛିଡ଼ଇ ମୂଳରୁ ।
ଗୁରୁ—ଛାଡ଼ ଛାଡ଼ ବିଷ୍ଣୁଭକ୍ତି ଭଜନ ସାଧନ
ଛାଡ଼ ଛାଡ଼ ଇଷ୍ଟନିନ୍ଦା ଗୁରୁଧର୍ମ ମାନ ।

ରେ ପ୍ରହଲଦ !
ସ୍ୱଧର୍ମକୁ ଗଲେ ଆଉ ନାହିଁ ମୋକ୍ଷପଦ ।।
ପ୍ରହ୍ଲାଦ—ସର୍ବଦେବଙ୍କର ମୂଳ ପ୍ରଭୁ ଆଉ ମୂଳ
ମୂଳକୁ ଛାଡ଼ି ଡାଳକୁ ଧରିଲେ କି ଫଳ ।
ହେ ବନ୍ଦ୍ୟା ଗୁରୁ !
ବୋଲେ ଜଗନ୍ନାଥ ତାଙ୍କୁ ନ ଛାଡ଼େ ହୃଦରୁ ।।

କବି ନିଜେ ଜଣେ ଶିବଭକ୍ତ ହୋଇଥିଲେ ହେଁ, ଏଠାରେ ଆଲୋଚ୍ୟ ବିଷୟ ପ୍ରତି ଆଦୌ ଅବହେଳା ପ୍ରଦର୍ଶନ ନ କରି ପ୍ରହ୍ଲାଦ ମୁଖରେ ବିଷ୍ଣୁଙ୍କ ମହିମ ପ୍ରଖ୍ୟାପନ କରିଛନ୍ତି । ଗୁରୁଶିଷ୍ୟ ପ୍ରସଙ୍ଗ ପରେ କବି ହିରଣ୍ୟ ଓ ପ୍ରହ୍ଲାଦଙ୍କ ମଧ୍ୟରେ ଉକ୍ତିପ୍ରତ୍ୟୁକ୍ତି ଛଳରେ ଶିବ ଓ ବିଷ୍ଣୁ ମାହାତ୍ମ୍ୟର ବର୍ଣ୍ଣନା କରିଛନ୍ତି । ଦୈତ୍ୟେନ୍ଦ୍ର ହିରଣ୍ୟ ବିଷ୍ଣୁଙ୍କ ପ୍ରତି ବିଶେଷ ଉତ୍କ୍ଷିପ୍ତ ହୋଇ ଶିବଙ୍କ ସମ୍ବନ୍ଧରେ ଯେଉଁ ପ୍ରକାର ପ୍ରଶଂସାତ୍ମକ ବର୍ଣ୍ଣନା କଲେ ମଧ୍ୟ ବିଷ୍ଣୁଭକ୍ତ ପ୍ରହ୍ଲାଦ ସେଗୁଡ଼ିକୁ ଅନାୟାସରେ ଖଣ୍ଡନ କରିଦେଇଛି ଏବଂ ପିତାଙ୍କର ଅକାଟ୍ୟ ଯୁକ୍ତି ମୂଳରେ ତୀବ୍ର କୁଠାରଘାତ କରି ହିରଣ୍ୟର କୋପଭାଜନ ହୋଇଛି । ପିତା ପୁତ୍ରଙ୍କ ମଧ୍ୟରେ ଚାଲିଥିବା ଯୁକ୍ତିରେ କବି ଜଗନ୍ନାଥ ପାଣି ଶିବ ଓ ବିଷ୍ଣୁଙ୍କ ସପକ୍ଷରେ ବହୁ ତଥ୍ୟ ପରିବେଷଣ କରିଛନ୍ତି । ତନ୍ମଧ୍ୟରେ ଶେଷ ଦୁଇଟି ଯୁକ୍ତି ଏଠାରେ ପ୍ରଦତ୍ତ ହେଲା ।

ହିରଣ୍ୟ—ତ୍ରିପୁରବିଜୟୀ ପ୍ରଭୁ ମୃତ୍ୟୁଞ୍ଜୟ ମଦନକୁ ଭସ୍ମ କଲେ
କୋଟିକଲ୍ପାନ୍ତରେ ପାର୍ବତୀଙ୍କ ବିନୁ ଅନ୍ୟ ସ୍ତ୍ରୀ ନ ଭଜିଲେ ।
ହର ସ୍ୱାମୀଙ୍କ କି ସମ,
ବିଷ୍ଣୁ ସ୍ତ୍ରୀ ଧରି କଲେ ପ୍ରେମ ।।
ପ୍ରହ୍ଲାଦ—ମଦନମୋହନ ମୋହିନୀ ରୂପକୁ ଦେଖି ପ୍ରେମେ ମୋହ ହେଲେ
ଚଉଦମନୁରେ ବସି ବେଦବର ଯାହା ମାୟା ନ ଜାଣିଲେ ।
କେତେ କେତେ ଈଶ୍ୱର,
ଭ୍ରମୁଛନ୍ତି ପଡ଼ି ଯା' ମାୟାର ।।

ରାଜା ହିରଣ୍ୟ ପ୍ରହ୍ଲାଦକୁ ମାରିବା ପାଇଁ କାଳକୂଟ ବିଷ ପ୍ରୟୋଗ କଲା । ସେହି ବିଷଜ୍ୱାଳାରେ ପ୍ରହ୍ଲାଦ ଜ୍ଞାନ ହରାଇ ମୃତପ୍ରାୟ ପଡ଼ିରହିଲା । ସେତିକିବେଳେ ସନ୍ତାନବତ୍ସଳା ଜନନୀ ବନ୍ଦ୍ୟାଛାୟା ପୁତ୍ରର ମରଣ ଅସନ୍ନ ବୋଲି ଜାଣି ଦୁଃଖରେ ମୁହ୍ୟମାନ ହୋଇପଡ଼ିଲେ । ସାଧାରଣ ନାରୀଙ୍କ ପରି ସେ ପୁତ୍ରର ଗୁଣ ବାଖାଣି କାତର କଣ୍ଠରେ ବିଷ୍ଣୁଙ୍କୁ ଡାକିବା ସଙ୍ଗେ ସଙ୍ଗେ ରୋଦନ କରିବାକୁ ଲାଗିଲେ ଏବଂ ନିଜ ସ୍ୱାମୀଙ୍କ ନିଷ୍ଠୁରତା ବର୍ଣ୍ଣନ କରି ସ୍ୱାମୀକୁ ନିନ୍ଦା କଲେ ।

"ଯେତେ ଯେତେ କଷ୍ଟେ ପାଇଥିଲି ତୋତେ ଦଶମାସ ଗର୍ଭେ ଧରି,
ଏବେ ଏକାକରି ଛାଡ଼ିଗଲୁ ମୋତେ ପଥ କାଙ୍ଗାଳୁଣୀ କରି ।
ରେ କୁମର !
ତଣ୍ଟି କାଟି ଦେଇଗଲୁ ମୋର ।

× × ×

ପିତା ହୋଇ କାହିଁ ପୁତ୍ରକୁ ମାରଇ ଏହା ଶୁଣା ନାହିଁ କାହିଁ,
କେମନ୍ତେ ତା'ଠାରୁ ବଞ୍ଚିଲୁ ଜୀବନ୍ତ ତୋତେ ବିଷ ଦେଲା ଖୋଇ,
ରେ କୁମର !
କହେ ଜଗନ୍ନାଥ କବିବର ।।"

ସେହି ବିପଦରୁ ରକ୍ଷା ପାଇବା ପରେ ପୁଣି ଦୈତ୍ୟରାଜ ହିରଣ୍ୟ କୃତ୍ତିକା ସଙ୍ଗରେ ପ୍ରହ୍ଲାଦକୁ ଧ୍ୱଂସ କରିଦେବା ଲାଗି ଚକ୍ରାନ୍ତ କଲା । ଗର୍ଭଧାରିଣୀ ଜନନୀ ବିଦ୍ୟୁଚ୍ଛାୟା ଦେବୀ ପ୍ରହ୍ଲାଦକୁ ନାନାପ୍ରକାର ଉପଦେଶ ଦେଇ ବିଷ୍ଣୁଭଜନ ନ କରିବା ଲାଗି ଯେତେ ପ୍ରକାର ବୁଝାଇଲେ ପ୍ରହ୍ଲାଦ ତିଳେ ହେଲେ ସେଥିରେ ବିଚଳିତ ହେଲା ନାହିଁ; ବରଂ ନିର୍ଭୀକଭାବରେ ହରିଭଜନରେ ଜୀବନ ବିତାଇବା ଲାଗି ଉତ୍ସାହ ବାଣୀ ପ୍ରକାଶକଲା ।

"କି କରିବେ ପିତା କି କରିବେ ବନ୍ଧୁ ଭ୍ରାତ
ମରଣକୁ ଡରି କି ଛାଡ଼ିବି ବିଷ୍ଣୁପଥ ।।
ବିଷ୍ଣୁଭକ୍ତ ଯେତେ ପ୍ରାଣୀ,
କାଳେ ହେଁ ବିପଦ ତାଙ୍କୁ ନାହିଁ ଗୋ ଜନନୀ !

× × ×

ସିଂହର ଶାବକ ହୋଇ ଶୃଗାଳକୁ ଡରି
ସ୍ୱେର ପ୍ରାପ୍ତ ଲୁଚି କି କହିବି ହରି ହରି ।।
କି କରିବେ ରାଜା ମୋର,
ବୋଲେ ଜଗନ୍ନାଥ ତାକୁ ସାହା ଚକ୍ରଧର ।।"

କବି ଜଗନ୍ନାଥ 'ପ୍ରହ୍ଲାଦ ଚରିତ' ଗୀତାଭିନୟଟିକୁ ସର୍ବାଙ୍ଗସୁନ୍ଦର କରିବା ଦୃଷ୍ଟିରୁ ପ୍ରଭାତ ଓ ସଂଧ୍ୟା ବର୍ଣ୍ଣନା, ବିଷ୍ଣୁଙ୍କ ରୂପ ବର୍ଣ୍ଣନା, ନୃସିଂହଙ୍କ ଭୟଙ୍କର ରୂପ ବର୍ଣ୍ଣନା ପ୍ରଭୃତି ଚମତ୍କାର ଭାବରେ କରିଛନ୍ତି । ସେହି ବର୍ଣ୍ଣନାଗୁଡ଼ିକରୁ କବିଙ୍କ ପ୍ରତିଭା ଓ ପାଣ୍ଡିତ୍ୟର ଯଥେଷ୍ଟ ଧାରଣା କରିହୁଏ । ତଦ୍‌ବ୍ୟତୀତ ପୌରାଣିକ ଆଖ୍ୟାୟିକାର ପଦାଙ୍କ ଅନୁସରଣ କରିଥିଲେ ହେଁ, ଗୀତାଭିନୟ ଦୃଷ୍ଟିରୁ ଯେଉଁଠାରେ ଯାହା ଆବଶ୍ୟକ ଅନୁରୂପ ପଦକ୍ଷେପ ନେବାରେ କବି ଜଗନ୍ନାଥ ତିଳେ ହେଲେ ତ୍ରୁଟି କରିନାହାନ୍ତି ।

---

# ସୀତା ବନବାସ

କବି ଜଗନ୍ନାଥ ପାଣିଙ୍କର ଚତୁର୍ଥ ଗୀତାଭିନୟ ରୂପେ 'ସୀତା ବନବାସ'କୁ ନିଆଯାଇପାରେ । କବିଙ୍କର ଗୀତାଭିନୟ ଗୁଡ଼ିକ ମଧ୍ୟରେ ପ୍ରସ୍ତୁତ 'ସୀତା ବନବାସ' ଚଣକଟି ଅତ୍ୟନ୍ତ କରୁଣରସାପ୍ଳୁତ ହୋଇଛି । ଚିରଦୁଃଖିନୀ ସୀତା ବହୁ କଷ୍ଟ ପାଇବା ପରେ ରାଜଭୋଗ ପାଇବା ସମୟରେ ପୁଣି ତାଙ୍କ ବନବାସ ଯାତ୍ରା ଉଭୟ ପାଠକ ଓ ଦର୍ଶକଙ୍କ ମନରେ ଗଭୀର ଦୁଃଖର ରେଖାପାତ କରେ । ଏହିଭଳି ଗୀତାଭିନୟ ଯଦିଓ ପାଠକ ଓ ଦର୍ଶକଙ୍କ ମନରେ କରୁଣରସର ସଞ୍ଚାର କରାଇଥାଏ, ତଥାପି ପାଠକମାନେ ଏଭଳି କାବ୍ୟ ପଠନରେ ଦତ୍ତଚିତ୍ତ ହୋଇଥାନ୍ତି ଏବଂ ଦର୍ଶକମାନେ ମଧ୍ୟ ନିର୍ନିମେଷ ନେତ୍ରରେ ଉଦ୍‌ଗ୍ରୀବ ହୋଇ ଏ ପ୍ରକାର ଗୀତାଭିନୟର ରସାସ୍ୱାଦନ କରିଥାନ୍ତି । କାରଣ ଲୌକିକ ବ୍ୟବହାରରେ ଯାହା ଦୁଃଖ ଓ ସୁଖ ନାମରେ କଥିତ, କାବ୍ୟ ରାଜ୍ୟରେ ତାହା ଅଲୌକିକତାଯୁକ୍ତ ଆନନ୍ଦ ସୃଷ୍ଟିର କାରଣ ହୋଇଥାଏ । ଏ ସମ୍ବନ୍ଧରେ ଆଲଙ୍କାରିକମାନେ ସ୍ପଷ୍ଟ ମତଦେଇ କହିଛନ୍ତି—

"ହେତୁତ୍ୱଂ ଶୋକହର୍ଷାଦେର୍ଗତେଭ୍ୟୋ ଲୋକସଂଶ୍ରୟାତ୍ ।
ଶୋକହର୍ଷାଦୟୋ ଲୋକେ ଜାୟନ୍ତାଂ ନାମ ଲୌକିକାଃ ।।
ଅଲୌକିକ-ବିଭାବତ୍ୱଂ ପ୍ରାପ୍ତେଭ୍ୟଃ କାବ୍ୟ ସଂଶ୍ରୟାତ୍ ।
ସୁଖଂ ସଂଜାୟତେ ତେଭ୍ୟଃ ସର୍ବେଭ୍ୟୋଽପୀତି କାକ୍ଷତିଃ ।।

ଅୟମର୍ଥଃ ଲୌକିକ ଶୋକହର୍ଷାଦି କାରଣେଭ୍ୟୋ ଲୌକିକ ଶୋକହର୍ଷାଦୟୋ ଜାୟନ୍ତ ଇତି ଲୋକ ଏବ ପ୍ରତିନିୟମଃ । କାବ୍ୟେ ପୁନଃ ସର୍ବେଭ୍ୟୋଽପି ବିଭାବାଦିଭ୍ୟଃ ସୁଖମେବ ଜାୟତେ ଇତି ନିୟମାନ୍ନ କଶ୍ଚିଦ୍ଦୋଷଃ ।" —(ସାହିତ୍ୟଦର୍ପଣ)

ସେହି ଦୃଷ୍ଟିରୁ କବି ସୀତା ବନବାସ ପରି ଏକ କରୁଣ ରସପୂର୍ଣ୍ଣ ଘଟଣାବଳୀକୁ ଅଭିନୟ ମାଧ୍ୟମରେ ଦେଖାଇବାଲାଗି ମନସ୍ଥ କରିଥିଲେ । ଉକ୍ତ ଗୀତାଭିନୟଟି ପଚିଶଗୋଟି ଗୀତରେ ସମ୍ପୂର୍ଣ୍ଣ ହୋଇଛି ଏବଂ କବି ଜଗନ୍ନାଥ ପାଣି ପୂର୍ଣ୍ଣମାତ୍ରାରେ ବାଲ୍ମୀକିଙ୍କ ପଦାଙ୍କ ଅନୁସରଣ ନକରି ସ୍ଥଳବିଶେଷରେ ଗୀତାଭିନୟଟିକୁ ମଞ୍ଚୋପଯୋଗୀ ଓ ସାମାଜିକମାନଙ୍କର ମନୋରଞ୍ଜନ ଉଦ୍ଦେଶ୍ୟରେ

ସାମାନ୍ୟ ପରିବର୍ତ୍ତନ କରିଛନ୍ତି । ଏଠାରେ ପଢ଼ିବାକୁ ଥିବା ଗୀତର ସାରାଂଶ ପାଠକ ଓ ଆଲୋଚକମାନଙ୍କର କୌତୂହଳର ଉପଶମ-ନିମିତ୍ତ ପ୍ରଦତ୍ତ ହେଲା ।

ସୀତା ହରଣ ଛଳରେ ଅବତାରର ଉଦ୍ଦେଶ୍ୟପାଇଁ ରାମଚନ୍ଦ୍ର ରାବଣକୁ ବଧକରି ଅଯୋଧ୍ୟା ସିଂହାସନରେ ଅଭିଷିକ୍ତ ହେଲେ । ଯଥା ସମୟରେ ସୀତାଙ୍କର ଗର୍ଭଲକ୍ଷଣ ପରିଲକ୍ଷିତ ହେଲା । ଦିନେ ଏକାନ୍ତ ଶୟନ ମନ୍ଦିରରେ ସୀତା ମୁନିମାନଙ୍କ ଦର୍ଶନଲାଗି ବନକୁ ଯିବାନିମିତ୍ତ ରାମଚନ୍ଦ୍ରଙ୍କଠାରେ ବିନୀତ ପ୍ରାର୍ଥନା ଜଣାଇଲେ ଏବଂ ତାଙ୍କର ଅଭିଳାଷ ପୂର୍ଣ୍ଣ କରିବା ଲାଗି ସୁବିଧା ଅନୁସାରେ ଲକ୍ଷ୍ମଣଙ୍କ ସହିତ ବନକୁ ଯିବାପାଇଁ ଶ୍ରୀରାମଚନ୍ଦ୍ର ଆଜ୍ଞା ପ୍ରଦାନ କଲେ । ବୈକୁଣ୍ଠପୁରରେ ପ୍ରଭୁଙ୍କର ଆସନ ଶୂନ୍ୟ ଦେଖି ସୀତା ଓ ରାମଙ୍କ ମନରେ ଭେଦଭାବ ଜାତ କରାଇବା ଲାଗି ବ୍ରହ୍ମାଦି ଦେବତାମାନେ ଚନ୍ତାକଲେ । ଖଳ, ଦୁର୍ବଳ ଓ ସରସ୍ୱତୀଙ୍କୁ ଡାକି ଏହାର ବିଧାନ କରିବା ନିମିତ୍ତ ଅନୁରୋଧ କରିଥିଲେ । ଖଳ, ଦୁର୍ବଳ ଓ ବାଣୀଦେବୀ ରାମ ସୀତାଙ୍କ ମନରେ ଭେଦଭାବ ଜାତ କରାଇବା ଲାଗି ମନ୍ଥରା ହୃଦୟରେ ପ୍ରବେଶିଲେ । ମନ୍ଥରା ଦିନେ ସୀତାଙ୍କ ପୁରରେ ପ୍ରବେଶ କରି, ତାଙ୍କୁ ନାନା ପ୍ରକାର ପରିହାସ କରିବା ସଙ୍ଗେ ସଙ୍ଗେ ରାବଣର ଚିତ୍ର ଅଙ୍କନ କରିବାଲାଗି ଅନୁରୋଧ କଲେ । ନିଜର ଅନିଚ୍ଛାସତ୍ତ୍ୱେ ମନ୍ଥରାର ଅନୁରୋଧ ଏଡ଼ି ନପାରି ସେ ଭୂମିରେ ରାବଣର ଚିତ୍ର ଅଙ୍କନ କଲେ ଏବଂ ପରକ୍ଷଣରେ ସେହିଠାରେ ଅଞ୍ଚଳ ପକାଇ ଶୟନ କଲେ । ପରକ୍ଷଣରେ ରାମଚନ୍ଦ୍ର ସେଠାରେ ଆସି ଉପସ୍ଥିତ ହେଲେ ଏବଂ ମନ୍ଥରା ତାଚ୍ଛଲ୍ୟପୂର୍ଣ୍ଣ ସ୍ୱରରେ ରାବଣ ପ୍ରତି ସୀତାଙ୍କର ପ୍ରେମପୂର୍ଣ୍ଣ ମନୋଭାବ ସମ୍ବନ୍ଧରେ ତାଙ୍କ ଆଗରେ ବର୍ଣ୍ଣନା କଲା । ସନ୍ଦେହଯୁକ୍ତ ରାମଚନ୍ଦ୍ର ରାବଣର ଆଲେଖ୍ୟ ଉପରେ ନିଦ୍ରାଭିଭୂତା ସୀତାଙ୍କୁ ଦେଖି କ୍ରୋଧରେ ଅସ୍ଥିର ହୋଇଉଠିଲେ ଏବଂ ଏଭଳି ଅସତୀ ସ୍ତ୍ରୀକୁ ଶୀଘ୍ର ଗୃହରୁ ବାହାର କରିଦେବା ଲାଗି ମନେ-ମନେ ସଙ୍କଳ୍ପ କରି ସେଠାରୁ ପ୍ରସ୍ଥାନ କଲେ । ଦୁର୍ଯୋଗକୁ ସେହିଦିନ ରାତିରେ 'ଘାଟପାଟଣା'ରେ ଜଣେ ମଦ୍ୟପ ରଜକ, ଗୋଟିଏ ରାତି ବାପଘରେ କଟାଇ ଆସିଥିବା ନିଜର ପତ୍ନୀକୁ ଧିକ୍କାର କରୁଥିବାର ଶୁଣିଲେ । ରଜକୀ ନିଜର ସତୀତ୍ୱ ପ୍ରମାଣିତ କରାଇବାଲାଗି ବହୁପ୍ରକାର ଉତ୍ତର ଦେବାପରେ ଶେଷରେ ସୀତାଙ୍କର ରାବଣ ଗୃହରେ ଦଶମାସକାଳ ରହିବା ପ୍ରସଙ୍ଗ ଉତ୍ଥାପନ କଲା । ତାହା ଶୁଣି ରଜକ ରାମଚନ୍ଦ୍ରଙ୍କୁ ଆକ୍ଷେପ କରି କେତେକ ତାଚ୍ଛଲ୍ୟପୂର୍ଣ୍ଣ ଉତ୍ତର ଦେଲା ।

ପ୍ରଜାମାନଙ୍କ ମନରେ ରାଜା ଓ ମହାରାଣୀଙ୍କ ପ୍ରତି ଏ ପ୍ରକାର ମନୋଭାବ ଥିବାର ଶୁଣି ରାମଚନ୍ଦ୍ର ଶୋକାଭିଭୂତ ହୋଇଉଠିଲେ ଏବଂ ପରଦିନ ଲକ୍ଷ୍ମଣଙ୍କୁ ଡକାଇ ପ୍ରଭାତ ସମୟରେ ସୀତାଙ୍କୁ ପରିତ୍ୟାଗ କରିବା ପାଇଁ କଠୋର ନିର୍ଦ୍ଦେଶ

ଦେଲେ । ଲକ୍ଷ୍ମଣ ସୀତାଙ୍କର ସତୀତ୍ୱ ସମ୍ବନ୍ଧରେ ରାମଚନ୍ଦ୍ରଙ୍କୁ ଅନେକ ପ୍ରକାର ବୁଝାଇଲେ; କିନ୍ତୁ ସେଥିରେ ତାଙ୍କର ମନ ବୁଝିଲା ନାହିଁ । ରାଜାଙ୍କର ନିଷ୍ଠୁର ଆଦେଶରେ ଲକ୍ଷ୍ମଣ ଅନନ୍ୟୋପାୟ ହୋଇ ସୀତାଙ୍କୁ ବଣକୁ ନେବାଲାଗି ଅନ୍ତଃପୁରରେ ପ୍ରବେଶ କଲେ । ସୀତା ଲକ୍ଷ୍ମଣଙ୍କୁ ଦେଖି ନାନା ପ୍ରକାର ପରିହାସ ବାଣୀ ଶୁଣାଇ, ଶେଷରେ ତାଙ୍କ ସହିତ ବନକୁ ଯିବା ଲାଗି ପ୍ରସ୍ତୁତ ହୋଇଗଲେ । ବାଟରେ ଯାଉଁ ଯାଉଁ ସୀତା ଅନେକ ପ୍ରକାର ଅମଙ୍ଗଳ ସଂକେତ ଦେଖି ବ୍ୟାକୁଳିତା ହୋଇ ଉଠିଲେ ଏବଂ ଅଯୋଧ୍ୟାକୁ ଫେରିଯିବାଲାଗି ଲକ୍ଷ୍ମଣଙ୍କୁ ଅନୁରୋଧ କଲେ । କିନ୍ତୁ ଲକ୍ଷ୍ମଣ ପ୍ରବୋଧନା ଦେଇ ତାଙ୍କୁ ଅରଣ୍ୟବନକୁ ନେଇଗଲେ ଏବଂ ସେଠାରେ ସମସ୍ତ କଥା କହି ଶୋକବହ୍ନିଜ୍ୱଳିତ ଚିତ୍ତରେ ଅଯୋଧ୍ୟାକୁ ଫେରି ଆସିଲେ । ଲକ୍ଷ୍ମଣଙ୍କଠାରୁ ସ୍ୱାମୀଙ୍କର ନିଷ୍ଠୁର ଆଦେଶ ଶୁଣି କେଶବାସ ଅସମ୍ଭାଳ ହୋଇ ସୀତା ରୋଦନ କରୁ କରୁ ମୂର୍ଚ୍ଛିତା ହୋଇଗଲେ । ଧୀରେ ଧୀରେ ସନ୍ଧ୍ୟା ଉପଗତ ହେଲା । ବନ୍ୟଜନ୍ତୁମାନେ ସୀତାଙ୍କର ଚାରିପାଖରେ ଘେରି ବିକଟ ଗର୍ଜ୍ଜନ କଲେ । ବାଲ୍ମୀକି ଋଷି ସେହି ସମୟରେ ଶିଷ୍ୟମାନଙ୍କ ସହିତରେ ଆସି ସେଠାରେ ଉପସ୍ଥିତ ହୋଇ ସୀତାଙ୍କୁ ନିଜ ଆଶ୍ରମକୁ ନେଇଗଲେ । ସୀତା ମୁନିଙ୍କ ଆଶ୍ରମରେ ମୁନିକୁମାରୀ ଓ ମୁନିପତ୍ନୀଙ୍କ ସହିତରେ କାଳ ଯାପନ କଲେ ।

ଲକ୍ଷ୍ମଣଙ୍କଠାରୁ ସୀତାଙ୍କର ବୃତ୍ତାନ୍ତ ଶୁଣି ରାମଚନ୍ଦ୍ର ପ୍ରାଣପ୍ରିୟାଙ୍କ ଗୁଣ ବାଖ୍ୟାନି ଅନେକ ରୋଦନ କଲେ । କୌଶଲ୍ୟାଦି ମାତାମାନେ ମଧ୍ୟ ସୀତାଙ୍କ ଦୁଃଖରେ ଦୁଃଖିତା ହେଲେ । ରାମଚନ୍ଦ୍ର ଭାଇମାନଙ୍କ ପ୍ରବୋଧନା ପ୍ରତି କର୍ଣ୍ଣପାତ ନ କରି ସୀତାଙ୍କର ଗୋଟିଏ ସୁବର୍ଣ୍ଣପ୍ରତିମା ଗଢ଼ାଇ କୌଣସିମତେ ଧୈର୍ଯ୍ୟଧର ହେଲେ ।

ବାଲ୍ମୀକିଙ୍କ ଆଶ୍ରମରେ ଯଥାସମୟରେ ସୀତାଙ୍କର ଗୋଟିଏ ପୁତ୍ର ସନ୍ତାନ ଜାତ ହେଲା । ପୁତ୍ରର ନବୀନ ସୁନ୍ଦର କାନ୍ତି ଦେଖି ବାଲ୍ମୀକି 'ଲବ' ବୋଲି ପୁତ୍ରର ନାମକରଣ କଲେ । ଧୀରେ ଧୀରେ ଲବ ପାଞ୍ଚ ବର୍ଷ ବୟସରେ ପଦାର୍ପଣ କଲା । ଦିନେ ମୁନିଙ୍କ ସହିତ ନଦୀକୂଳକୁ ଲବ ଯାଇଥିଲା । ସେଠାରେ ବାଲ୍ମୀକି ଧ୍ୟାନମଗ୍ନ ହୋଇଥିବା ସମୟରେ ଲବ ଆଶ୍ରମକୁ ବାହୁଡ଼ି ଆସିଲା । କିନ୍ତୁ ଋଷି ତପସ୍ୟାରୁ ଉଠି ଲବକୁ ନଦେଖି ମନେ ମନେ ଆତଙ୍କିତ ହୋଇଉଠିଲେ ଏବଂ ଲବକୁ ବ୍ୟାଘ୍ର ଭକ୍ଷଣ କରିଥିବାର ଆଶଙ୍କା କରି, କୁଶରେ ଗୋଟିଏ ଲବ ସଦୃଶ ପ୍ରତିମା ନିର୍ମାଣ କରି ତାକୁ ଜୀବନ୍ୟାସ ଦେଲେ । ସେହି ପୁତ୍ରଟିକୁ ସଙ୍ଗରେ ଧରି ମୁନି ଆଶ୍ରମକୁ ଆସି ଦେଖନ୍ତି ତ ସୀତାଙ୍କ କୋଳରେ ଲବ ଅତି ଆନନ୍ଦରେ କ୍ରୀଡ଼ା କରୁଛି । ସୀତା ମଧ୍ୟ ମୁନିଙ୍କ ସହିତ ଲବ ସଦୃଶ ପିଲାଟିଏ ଦେଖି ବିସ୍ମିତା ହେଲେ । ମୁନି ସମସ୍ତ ଘଟଣା

ବର୍ଣ୍ଣନା କରି ପିଲାଟିକୁ କୁଶ ନାମରେ ପାଳନ କରିବା ଲାଗି ସୀତାଙ୍କୁ ଆଦେଶ ଦେଲେ । ମହର୍ଷି ବାଲ୍ମୀକିଙ୍କଠାରୁ ଲବ କୁଶ ଦୁହେଁ ଶସ୍ତ୍ର ଶାସ୍ତ୍ର ବିଦ୍ୟା ଅଧ୍ୟୟନ କଲେ ଏବଂ ସନ୍ତାଙ୍କ ପୁତ୍ର ଦୁହେଁ କାଳକ୍ରମେ ଉଭୟ ବିଦ୍ୟାରେ ପ୍ରବୀଣ ହୋଇ ଉଠିଲେ ।

ବଶିଷ୍ଠଙ୍କ ପରାମର୍ଶମତେ ରାମଚନ୍ଦ୍ର ବ୍ରହ୍ମହତ୍ୟା ଦୋଷର ନିବାରଣ ନିମିତ୍ତ ଅଶ୍ୱମେଧ ଯାଗ କରିବାଲାଗି ଆୟୋଜନ କଲେ । ବିଶ୍ୱକର୍ମା ଯଜ୍ଞମଣ୍ଡପ ଓ ଅତିଥିଶାଳା ଆଦି ନିର୍ମାଣ କଲେ । ଯଥା ସମୟରେ ମୁନି ଋଷିମାନଙ୍କ ବେଦ ଧ୍ୱନିରେ ଯଜ୍ଞ ଆରମ୍ଭ କରାଗଲା ଏବଂ ଯଜ୍ଞ ଅଶ୍ୱକୁ ନାନାଭରଣରେ ଭୂଷିତ କରି ଛାଡ଼ି ଦିଆଗଲା । ଶତ୍ରୁମାନଙ୍କ ହସ୍ତରୁ ଅଶ୍ୱକୁ ରକ୍ଷା କରିବା ଲାଗି ଶତ୍ରୁଘ୍ନ ଅଶ୍ୱର ଅନୁଗମନ କଲେ ।

ଦିନେ ପ୍ରଭାତରୁ ଉଠି ମହର୍ଷି ବାଲ୍ମୀକି ଚିତ୍ରକୂଟ ପର୍ବତକୁ ଶିଷ୍ୟମାନଙ୍କ ଗହଣରେ ପ୍ରସ୍ଥାନ କଲେ ଏବଂ ଲବ କୁଶ ହାତରେ ବାଣ ଶରାସନ ଧରି ଆଶ୍ରମ ଉପକଣ୍ଠର ଅରଣ୍ୟରେ ପରିଭ୍ରମଣ କଲେ । ଏହି ସମୟରେ ଶ୍ରୀରାମଙ୍କ ଯଜ୍ଞ ଅଶ୍ୱ ଆସି ସେଠାରେ ଉପସ୍ଥିତ ହେଲା । ଦୁଇ ଭାଇ କୌତୂହଳରେ ଅଶ୍ୱଟିକୁ ଶିଆଳୀ ଲତାରେ ବାନ୍ଧିପକାଇଲେ । ଅଶ୍ୱର ମସ୍ତକରେ ବନ୍ଧାଯାଇଥିବା ବୀରପତ୍ର ପାଠକରି ଓ ଶତ୍ରୁଘ୍ନଙ୍କ ଚେତାବନୀ ଶୁଣି ମଧ୍ୟ ଲବ କୁଶ ଅଶ୍ୱକୁ ବନ୍ଧନରୁ ମୁକ୍ତ କଲେ ନାହିଁ । ପରିଶେଷରେ ଶତ୍ରୁଘ୍ନ ସୁକୁମାର ବାଳକଙ୍କ ସହିତ ଯୁଦ୍ଧ କରି ପରାସ୍ତ ହେଲେ । ଶ୍ରୀରାମ ଅଯୋଧ୍ୟାରେ ଏ' ସମ୍ବାଦ ପାଇ ଭରତ ଓ ଲକ୍ଷ୍ମଣଙ୍କୁ ଯଜ୍ଞ-ଅଶ୍ୱ ଆଣିବା ଲାଗି ଆଦେଶ ଦେଲେ । ଲକ୍ଷ୍ମଣ ଓ ଭରତ ମଧ୍ୟ ଶତ୍ରୁଘ୍ନଙ୍କ ପରି ସମର ଭୂମିରେ ହତଚେତନ ହୋଇ ପଡ଼ି ରହିଲେ । ରାମଚନ୍ଦ୍ର ଦୂତ ମୁଖରୁ ଏ ସମ୍ବାଦ ଶୁଣି ନିଜେ ସୈନ୍ୟଗହଣରେ ସେଠାରେ ଉପସ୍ଥିତ ହେଲେ ଏବଂ ଲବକୁଶଙ୍କୁ ଦେଖି, ସେ ଦୁହେଁ ସୀତାଙ୍କର ପୁତ୍ର ହେବେ ବୋଲି ମନେ ମନେ ଅନୁମାନ କଲେ । ଶିଶୁକୁମାର ଦୁହିଙ୍କୁ ସେତେ ପ୍ରକାର ସ୍ନେହପୂର୍ଣ୍ଣ ବାଣୀରେ ବୁଝାଇଲେ ମଧ୍ୟ ସେ ଦୁହେଁ ରାମଙ୍କ ଆଶ୍ୱାସନା ପ୍ରତି ଭ୍ରୁକ୍ଷେପ ନକରି ଯୁଦ୍ଧ ପାଇଁ ଆହ୍ୱାନ କଲେ । ଯୁଦ୍ଧରେ ରାମଚନ୍ଦ୍ର ପରାସ୍ତ ହୋଇ ପ୍ରାଣତ୍ୟାଗ କଲେ । ଶେଷରେ ଜୟ କରି ଲବ କୁଶ ରାମଚନ୍ଦ୍ରଙ୍କର ମୁକୁଟ, ହାର, କେୟୂର, କଙ୍କଣ ଓ ଧନୁର୍ବାଣ ନେଇ ମାତାଙ୍କ ସମ୍ମୁଖରେ ନିର୍ଭୟରେ ସମସ୍ତ ବୃତ୍ତାନ୍ତ ବ୍ୟାଖ୍ୟାନ କଲେ । ସୀତାଦେବୀ ଏ' ଦାରୁଣ ସମ୍ବାଦ ଶ୍ରବଣ କରିବାମାତ୍ରେ ହତଚେତନ ହୋଇ ଭୂମିରେ ଲୋଟିପଡ଼ିଲେ ଏବଂ ରାମଙ୍କର ଗୁଣ ବାଖାଣି କରୁଣ ସ୍ୱରରେ କ୍ରନ୍ଦନ କରିବା ସଙ୍ଗେ ସଙ୍ଗେ ଅଗ୍ନି ପ୍ରବେଶ ଲାଗି ପ୍ରସ୍ତୁତ ହେଲେ ।

ନାରଦଙ୍କ ମୁଖରୁ ବାଲ୍ମୀକି ସମସ୍ତ କଥା ଶୁଣି ସଙ୍ଗେ ସଙ୍ଗେ ଚିତ୍ରକୂଟରୁ ନିଜ ଆଶ୍ରମକୁ ଫେରିଆସିଲେ ଏବଂ ମୃତସଞ୍ଜୀବନୀ ମନ୍ତ୍ରରେ ଜଳସିଞ୍ଚି ମୃତ ରାମଚନ୍ଦ୍ର,

ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନଙ୍କୁ ବନ୍ଧାଇ ଥିଲେ । ଏହା ଦେଖି ସୀତା ଆନନ୍ଦରେ ପୁତ୍ରଦ୍ୱୟଙ୍କୁ ନେଇ ଆଶ୍ରମକୁ ଫେରିଗଲେ । ପରମୁହୂର୍ତ୍ତରେ ରାମଚନ୍ଦ୍ର ବାଲ୍ମୀକିଙ୍କ ଚରଣରେ ପ୍ରଣାମ କରି ଲବ କୁଶଙ୍କ ପରିଚୟ ଜାଣିବାକୁ ବୃଛିଲେ; କିନ୍ତୁ ମୁନି ଶୀଘ୍ର ଅଶ୍ୱ ନେଇ ଯାଗ ପୂର୍ଣ୍ଣ କରିବା ଲାଗି ଶ୍ରୀରାମଙ୍କୁ ଆଦେଶ ଦେଲେ ।

ରାମଚନ୍ଦ୍ର ଅଯୋଧ୍ୟାକୁ ଫେରି ଆସିବା ପରେ ଲବ କୁଶଙ୍କୁ ନେଇ ବାଲ୍ମୀକି ଶ୍ରୀରାମଙ୍କ ଯଜ୍ଞଶାଳାରେ ଆସି ଉପସ୍ଥିତ ହେଲେ ଏବଂ ମୁନିଙ୍କ ନିର୍ଦ୍ଦେଶରେ ଲବ କୁଶ ରାମାୟଣ ଗାନ କରନ୍ତେ ଉପସ୍ଥିତ ମୁନି ଋଷି ରାଜନ୍ୟବର୍ଗ ସମସ୍ତେ ମୁଗ୍ଧ ହୋଇ ଉଠିଲେ । ଗୀତର ଉତ୍ତରଖଣ୍ଡରେ ସୀତାଙ୍କ ବନବାସ, ମୁନିଙ୍କ ଆଶ୍ରମରେ ଲବକୁଶଙ୍କ ଜନ୍ମ, ପିତାପୁତ୍ରଙ୍କ ସମରଆଦି ଉପାଖ୍ୟାନମାନ ଶ୍ରବଣ କରି ଯୁଦ୍ଧ କରିଥିବା କୁମାରଦ୍ୱୟ ତାଙ୍କର ନିଜ ପୁତ୍ର ବୋଲି ରାମଚନ୍ଦ୍ର ଜାଣିପାରିଲେ ଏବଂ ନାରଦଙ୍କଠାରୁ ସନ୍ଦେଶ ପାଇ ସୀତାଙ୍କୁ ଆଣିବା ଲାଗି ସୁମନ୍ତ୍ରଙ୍କୁ ଆଦେଶ ଦେଲେ । ସୁମନ୍ତ୍ରଙ୍କ ରଥରେ ବସି ସୀତାଦେବୀ ଆସି ଯଜ୍ଞଶାଳାରେ ଉପସ୍ଥିତ ହୁଅନ୍ତେ, ରାମଚନ୍ଦ୍ର ସଂସାରର ଲୋକ ଅପବାଦର ନିବାରଣ ନିମନ୍ତେ ସୀତାଙ୍କୁ ଆଉଥରେ ଅଗ୍ନି ପରୀକ୍ଷା ଦେବାଲାଗି ଅନୁରୋଧ କଲେ । ସୀତା ଏ' ପ୍ରକାର ଅଗ୍ନି ପରୀକ୍ଷା ଦେବାଲାଗି ପ୍ରସ୍ତୁତ ନ ହୋଇ ରାମଙ୍କୁ ମୃଦୁଭର୍ତ୍ସନା କରି ପୃଥ୍ୱୀଦେବୀଙ୍କ କୋଳରେ ଲୀନହେଲେ ।

ଜାନକୀଙ୍କୁ ପୃଥ୍ୱୀ ଗର୍ଭରେ ଲୀନ ହେଉଥିବାର ଦେଖି ଶ୍ରୀରାମଚନ୍ଦ୍ର ସୀତାଙ୍କର କେଶଗୁଚ୍ଛ ଧରିପକାଇଲେ । ରାମଙ୍କ ହସ୍ତରେ ସୀତାଙ୍କର କେଶଗୁଚ୍ଛ ରହିଗଲା ଏବଂ ସୀତା ଚିରଦିନ ଲାଗି ଜନନୀ ଧରିତ୍ରୀଙ୍କ କୋଳରେ ଆଶ୍ରୟ ଗ୍ରହଣ କଲେ । ସୀତାଙ୍କର ଦେହତ୍ୟାଗ ଦେଖି ଉପସ୍ଥିତ ସମସ୍ତ ବ୍ୟକ୍ତି ଓ ଲବ କୁଶ ହାହାକାର କରିଉଠିଲେ । ଶିଶୁପୁତ୍ରଙ୍କର ରୋଦନ ଦେଖି ଖୁଡ଼ୁତା ଓ ଖୁଡ଼ୀମାନେ ତାଙ୍କୁ ପ୍ରବୋଧନା ଦେଇ ଅନ୍ତଃପୁରକୁ ନେଇଗଲେ । କିଛି ଦିନ ପରେ ରାମଚନ୍ଦ୍ର ଅଯୋଧ୍ୟାରେ ଲବ ଓ ନନ୍ଦୀଗ୍ରାମରେ କୁଶଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରି ଉଦାସୀନ ଭାବରେ କାଳ ଯାପନ କରିବାକୁ ଲାଗିଲେ ।

ପ୍ରସ୍ତୁତ ଗୀତାଭିନୟଟିରେ ମୂଳରୁ ଶେଷଯାଏଁ ପ୍ରତିକ୍ଷେତ୍ରରେ କରୁଣ ରସର ଯେଉଁ ଶାଶ୍ୱତ ଉତ୍ସ ଫୁଟାଇବାରେ କବି ସିଦ୍ଧହସ୍ତତା ଦେଖାଇଛନ୍ତି, ତାହା ବାସ୍ତବିକ ଆଲୋଚନାର ବିଷୟ । କରୁଣରସ ସହିତ ବୀରରସର ବର୍ଣ୍ଣନା ରସାନୁକୂଳ ନୁହେଁ ବୋଲି ଆଲଂକାରିକମାନେ ମତ ଦେଇଛନ୍ତି; କିନ୍ତୁ କବି ସୀତା ରାମଚନ୍ଦ୍ରଙ୍କ ମିଳନର ପୂର୍ବାଭାସ ସ୍ୱରୂପ ଲବକୁଶଙ୍କ ସହିତ ରାମଚନ୍ଦ୍ର ଆଦି ବୃନ୍ଦ୍ରୋଇଙ୍କର ଯେଉଁ ଯୁଦ୍ଧ ବର୍ଣ୍ଣନା କରିଛନ୍ତି, ତାହା ପ୍ରସ୍ତୁତ ଗୀତାଭିନୟରେ ରସାସ୍ୱାଦନର ପରିପନ୍ଥୀ ନ ହୋଇ ରସାନୁକୂଳ ହୋଇଛି ।

କବି ଜଗନ୍ନାଥ ପାଣି ବାଲ୍ମୀକିଙ୍କ ରାମାୟଣର ଅନୁକରଣରେ 'ସୀତା ବନବାସ' ଶୀର୍ଷକ ଗୀତାଭିନୟଟିକୁ ରଚନା କରିଥିଲେ ହେଁ, ରଜକ ରଜକୀ ବିବାଦ, ରାମ ଲକ୍ଷ୍ମଣଙ୍କର ଉକ୍ତି ପ୍ରତ୍ୟୁକ୍ତି, ଲକ୍ଷ୍ମଣଙ୍କ ପ୍ରତି ସୀତାଙ୍କର ପରିହାସ ବାଣୀ, ମହାରଣ୍ୟରେ ସୀତାଙ୍କର ଶୋକ, ଶ୍ରୀରାମ ଓ ଲବ କୁଶ ଦୁହିଁଙ୍କର ଉତ୍ତର ପ୍ରତ୍ୟୁତ୍ତର ପ୍ରଭୃତି କେତେକ ସ୍ଥଳରେ ନିଜର ସ୍ୱାତନ୍ତ୍ର୍ୟ ଦେଖାଇଛନ୍ତି । ବିଶେଷତଃ ମଛୁଆର ବେଶ ବର୍ଣ୍ଣନାରେ କବିଙ୍କର ଚିନ୍ତାଧାରା ସମ୍ପୂର୍ଣ୍ଣ ମଞ୍ଚୋପଯୋଗୀ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଆମୂଳଚୂଳ କରୁଣରସାପ୍ଲୁତ ଗୀତାଭିନୟ ଦେଖି ଦର୍ଶକଙ୍କ ମନରେ ଯେଉଁ ଗମ୍ଭୀର ରେଖାପାତ ହେବ ତାକୁ ଟିକିଏ ଲଘୁ କରିବାଲାଗି କବି ମଛୁଆର ବେଶ ବର୍ଣ୍ଣନାରେ ହାସ୍ୟରସର ଅବତାରଣା କରିଛନ୍ତି । ବାସ୍ତବିକ ରଙ୍ଗମଞ୍ଚରେ ମଛୁଆର ପ୍ରବେଶଦ୍ୱାରା ଦର୍ଶକଙ୍କ ମନରେ ହାସ୍ୟରସର ଭାବଧାରା ଖେଳିଯାଏ ଏବଂ ପରମୁହୂର୍ତ୍ତରେ ସୀତା ବନବାସର ଭୀଷଣ ପ୍ରତିକ୍ରିୟା ସାମାଜିକଙ୍କ ମନରେ ସେତେ ଗଭୀରତର ହୋଇପାରେ ନାହିଁ । ରାମାୟଣରେ ଏପରି କ୍ଷେତ୍ରରେ ଯେପରି ବର୍ଣ୍ଣନା ଆଉନା କାହିଁକି, ଏଠାରେ କବି ଜଗନ୍ନାଥ ପାଣିଙ୍କ କଳ୍ପିତ ମଛୁଆର ପ୍ରବେଶ ଗମ୍ଭୀର ଭାବାବେଶକୁ ଟିକିଏ ହାସ୍ୟମୟ କରିଦେଇଛି ।

"ଆଖିକେ କଜଲ ପାଖେ ଜଲକଲ ଚାହେଁ ।
ପାଖକେ ହଲଦୀ ମାରି ଢୁଲଢୁଲ ହୁଏ ॥
ଖଣ୍ଡେ ପାନ କଲଡୁଣ୍ଡେ ବହିପଡ଼େ ବୋଲ ।
ଖଣ୍ଡେ ଚୂଲେ ଦଣ୍ଡେ ଚାହେଁ ଉଣ୍ଡି କରେ ଗୋଲ ॥
ବାଙ୍କି ନାକଶିରୀ ଟେକ ମୁହଁକୁ ହଲାଇ ।
ବସଣି ହଲଇ କହେ ଗେହ୍ଲାଇ ଗେହ୍ଲାଇ ॥
× × ×
କାଲଶିରୀ ଫାନ୍ଦ ଫାଢ ଫାଲ କଥା କହେ ।
ବେଲେକେ ଓଢ଼ଣୀ ଦେଇ ବେଲେ ଖାଲି ଚାହେଁ ।
ଛଟାମାରି ଅଟା କରି ଆସେ ବାଟଯାକେ ।
ଦୂରୁ ଦେଖି ଆଡ଼ହୋଇ ଯା'ନ୍ତି ବଡ଼ଲୋକେ ॥"

ରଜକ ରଜକୀଙ୍କ କଳହ ପ୍ରସଙ୍ଗରେ ମଧ୍ୟ ଅନୁରୂପ ହାସ୍ୟରସ ସୃଷ୍ଟି କରିବାରେ କବି ଜଗନ୍ନାଥ ସକ୍ଷମ ହୋଇଛନ୍ତି । ବିନା ଅନୁମତିରେ ମଦ୍ୟପ ସ୍ୱାମୀ ଘରୁ ଯାଇ ରଜକୀ ବାପଘରେ ଗୋଟିଏ ରାତି ଯାପନ କରିଥିଲା । ସେହି ଅପରାଧରେ ରଜକ ପତ୍ନୀକୁ ଜାତି ପାଟକର ଛଳନା କରି ଘରୁ ତଡ଼ିଦେବାକୁ ବସନ୍ତେ, ରଜକୀ ରାବଣ ଦ୍ୱାରା ସୀତାହରଣ ବୃତ୍ତାନ୍ତ ଉଦାହରଣ ଦେଇ, ସେ କିପରି ଅସତୀ ହେଲେନାହିଁ

ବୋଲି ପଦ୍ୟରତ୍ନେ ରଜକ ରାମରାଜ୍ୟ ତଥା ରାମଚନ୍ଦ୍ରଙ୍କ ପ୍ରତି ଭର୍ତ୍ସନପୂର୍ଣ୍ଣ ଉକ୍ତି ପ୍ରକାଶ କରି ।

ରଜକ—"ରାମରାଜାରାଣୀ ସୀତା ଠାକୁରାଣୀ ରାବଣ ଘେରାଇ ନେଲା ।
ଦଶମାସ ପରେ ଶ୍ରୀରାମ ଆଣିଲେ ତାହାର ଜାତି ନଗଲା ।
ମୋର ଏହି ଅନୀତି,
ବାପଘରେ ଥିଲି ଗଲା ଜାତି ॥
ରଜକ—ଚଉଦ ଭୁବନେ ରାମରାଜା ତାଙ୍କୁ କେହି ନ କହନ୍ତି ଡରେ ।
ଜାତି ପାଟକରେ ବେଭାର ଆମ୍ଭର କେମନ୍ତେ ରଖିବ ଘରେ ।
ଯେବେ ଜାତି ଶୁଣିବେ,
ମୋତେ ସଭାରୁ ଉଠାଇ ଦେବେ ॥"

ରଜକ ମୁଖରେ କବିଙ୍କର ଏହି ଉକ୍ତି ଓଡ଼ିଶାର ସର୍ବତ୍ର ପ୍ରଚଳିତ; ବିଶେଷତଃ ଧୋବା କୁଳରେ ଏ ପ୍ରକାର ଜାତିଆଣ ପ୍ରଥା ଅତ୍ୟନ୍ତ କଠୋର ଭାବରେ ଅଦ୍ୟାପି ପାଳିତ ହେଉଛି ।

ରଜକ ମୁଖରେ ସୀତାଙ୍କର ଅପବାଦ ଓ ତାଙ୍କଦ୍ୱାରା ରାବଣର ଆଲେଖ୍ୟ ଲେଖି ତାହା ଉପରେ ଶୟନ କରିଥିବା ଘଟଣା ଶ୍ରୀରାମଙ୍କ ମନରେ ସୀତାଙ୍କ ପ୍ରତି ସନ୍ଦେହର ଭାବନା ଉଦ୍ରେକ କରାଇଥିଲା । ଏହି ଘଟଣାକୁ ଶ୍ରୀରାମ ଲକ୍ଷ୍ମଣଙ୍କ ଆଗରେ କହି ସୀତାଙ୍କୁ ବନବାସ ଦଣ୍ଡ ଦେବାଲାଗି ଆଦେଶ ଦିଅନ୍ତେ, ଲକ୍ଷ୍ମଣ ପ୍ରତିବାଦ କରି କହିଛନ୍ତି—

"ଦେହାନ୍ତେଣ ଏହା ଲେଖି ନପାରେ ଜାନକୀ
କାହାକୁ ସେ ଦିନେ ଚାହିଁନାହିଁ ମୁହିଁ ଟେକି ॥
ଏହା ଧୋବା କହିପାରେ,
ଆଉ କେହି କାହାନ୍ତି କି ସୀତା ଏ ସଂସାରେ ॥
× × ×
ନୀଚଲୋକ ବଚନେ କି ଲକ୍ଷ୍ମୀକୁ ଛାଡ଼ିବ ।
ମହାସତୀ କୋପକଲେ ବଂଶ କି ରହିବ ॥
ଅହେ ବିବେକୀ ଶେଖର,
ବୁଦ୍ଧି ସୁଦ୍ଧି କାର୍ଯ୍ୟକର ସେ ଦୋଷ ନଧର ॥"

ଲକ୍ଷ୍ମଣ ସୀତାଦେବୀଙ୍କୁ ଶ୍ୱାପଦ ସଙ୍କୁଳ ଅରଣ୍ୟାନୀ ମଧ୍ୟରେ ଛାଡ଼ି ଆସିବା ପରେ ତାଙ୍କର ହୃଦୟସ୍ପର୍ଶୀ ଶୋକୋଚ୍ଛ୍ୱାସ ପ୍ରତ୍ୟେକ ଦର୍ଶକର ମନକୁ କରୁଣାର୍ଦ୍ର

କରେ । କବି ଜଗନ୍ନାଥ ସେହି ଶୋକ ବର୍ଣ୍ଣନା ଅତି ଚମତ୍କାର ଭାବରେ ସ୍ୱରଚିତ ଗୀତାଭିନୟରେ କରି ଦର୍ଶକ ଓ ପାଠକମାନଙ୍କୁ ଶୋକାଭିଭୂତ କରାଇଛନ୍ତି ।

"ଆହା କରିବାକୁ ନାହାନ୍ତି ଯାହା ।
କା ଆଗେ କହିବି ପ୍ରଭୁଙ୍କ ମାୟା ।।
ଗର୍ଭେ ଏବେ ପାଞ୍ଚମାସ ମୋହର ।
ଦୁର୍ବାର ଦୁର୍ଦ୍ଦଶା ଦୁଃଖ ଡହର ।।
କି କରିବି ଆଜ ମୁହିଁ ଯେ,
ଦାରୁଣ ଦଇବ ହିଂସାକରି ମୋତେ ବୁଲାଇଲା ଦହିଦହି ଯେ ।।"

ସୀତାଙ୍କ ଶୋକପରେ, ଲକ୍ଷ୍ମଣଙ୍କ ମୁଖରୁ ପ୍ରାଣପ୍ରିୟା ପତ୍ନୀଙ୍କ ଅବସ୍ଥା ଶୁଣି ଶ୍ରୀରାମଚନ୍ଦ୍ର ମଧ୍ୟ ଅଧୀର ହୋଇ ରୋଦନ କରିଛନ୍ତି । ଗୋଟିଏ ଦୃଷ୍ଟିରେ କର୍ତ୍ତବ୍ୟ ଅନ୍ୟ ପକ୍ଷରେ ସ୍ନେହର ଦୋଦୁଲ୍ୟମାନ ଦୋଳାରେ ଆରୋହଣ କରି ଶ୍ରୀରାମ ଶେଷରେ କର୍ତ୍ତବ୍ୟକୁ ଆଦରି ନେଇଛନ୍ତି । କିନ୍ତୁ ସୀତାଙ୍କ ପ୍ରତି ତାଙ୍କ ମନରେ ଥିବା ସ୍ନେହ ଓ ପ୍ରେମକୁ ସେ କୌଣସିମତେ ପୋଛି ପାରି ନାହାନ୍ତି । ତହୁଁ ସେ ସାଧାରଣ ଲୋକଙ୍କ ପରି ରୋଦନ କରିଛନ୍ତି—

ଧନୁସ୍ୱୟମ୍ବରେ କାହାକୁ ନ ବରି ମୋତେ ବରିଲୁ ସୁନ୍ଦରୀ ।
ଆଯୌବନୁ ଦିନେ ସୁଖ ନ ପାଇଲୁ ଏ ଦୁର୍ଭାଗା ହାତ ଧରି ।
ଆରେ ଐଶ୍ୱର୍ଯ୍ୟଦାୟୀ,
ତୋତେ ବୁଲାଇଲି ଦେଇ ଦେଇ ରେ ।।

ଶ୍ରୀରାମ ଓ ଲବ କୁଶଙ୍କ ଯୁଦ୍ଧ ପ୍ରସଙ୍ଗରେ କବି ଜଗନ୍ନାଥ ପାଣି ପିତା ପୁତ୍ରଙ୍କ ଉତ୍ତର ପ୍ରତ୍ୟୁତ୍ତର ଅତି ଦକ୍ଷତାର ସହିତ ରଚନା କରିଛନ୍ତି । ରାମାୟଣରେ ସେହି ପ୍ରସଙ୍ଗ ଥିଲେ ମଧ୍ୟ କବି ପାଣିଙ୍କ ବର୍ଣ୍ଣନାରେ ଯେପରି ହୃଦ୍ୟ ହୋଇପାରିଛି, ତାହା ପ୍ରତ୍ୟେକ ଦର୍ଶକର ମନକୁ ସ୍ପର୍ଶ କରେ । ରାମଚନ୍ଦ୍ର ଶିଶୁକୁମାର ଦ୍ୱୟଙ୍କୁ ଦେଖି ତାଙ୍କୁ ସୀତାଙ୍କର ପୁତ୍ର ରୂପେ ଅନୁମାନ କରିଛନ୍ତି । ସେଥିଲାଗି ତାଙ୍କର ପିତୃହୃଦୟ ମମତାରେ ଭରିଉଠିଛି । ସେ ସୁକୁମାର ବାଳକଦ୍ୱୟଙ୍କ ସହିତ ଯୁଦ୍ଧ ନକରି, ତାଙ୍କୁ ନିଜର ପରାକ୍ରମ ଜଣାଇ, କୋଳକୁ ଆଦରି ନେବାର ପ୍ରୟାସ କରିଛନ୍ତି । କିନ୍ତୁ ସିଂହ-ଶାବକ ସଦୃଶ ଲବକୁଶ ରାମଚନ୍ଦ୍ରଙ୍କର ମମତାପୂର୍ଣ୍ଣ ବାଣୀରେ ଆଦୌ ଭୁଲିନଯାଇ, ତାଙ୍କୁ ତାଚ୍ଛଲ୍ୟପୂର୍ଣ୍ଣ ଭର୍ତ୍ସନା କରିଛନ୍ତି । ସେହି ପ୍ରସଙ୍ଗଟି କବିଙ୍କ ଭାଷାରେ ଅତ୍ୟନ୍ତ ହୃଦୟଗ୍ରାହୀ ହୋଇଉଠିଛି ।

ଶ୍ରୀରାମ —"ମୁହିଁ ସେ ଶ୍ରୀରାମ ଅଯୋଧ୍ୟା ରାଜନ ଦଶରଥ ରାଜା ସୁତ,
ଶିବଧନୁ ଭାଙ୍ଗି ସୀତା ବିଭାହେଲି ରଣେ ବଧି ଲଙ୍କାନାଥ,
ବ୍ରହ୍ମା ବ୍ରହ୍ମାଣ୍ଡେ ମୁହିଁ
ମନ୍ତେ ଜିଣିବାକୁ କେହୁ ନାହିଁ ।

ଲବ କୁଶ —କେଜାଣେ ରାବଣ କେଜାଣେ ଲବଣ କେଜାଣେ ଆମ୍ଭର ତୋତେ,
ଆପଣା ବଡ଼ାଇ ଆପଣେ କହିଲେ ପ୍ରଶଂସା ନୁହେଁ ଜଗତେ ।
ବୀରପଣ ତୋହର,
ଜଣାଯିବ ଆଜ ଏହୁଠାର ।

ଶ୍ରୀରାମ — ସୀତା ଗର୍ଭବତୀ ମୋହର ଯୁବତୀ ନବେଶି ଅଛୁ ମୁଁ ବନେ,
ତେଣୁ ଅନୁମାନେ ଅନୁସର ଚହ୍ନେ ମୋର ପୁତ୍ର ତୁମ୍ଭେମାନେ,
ଦୋଷ ଧର ନା ମାନେ
ଅସ ଆସ କୋଲେ ମୋର ଙ୍କଣେ ।

ଲବକୁଶ — ସଂଗ୍ରାମକୁ ପଛ ଏଡ଼େ ତୁ ନକୁଛ ଆପେ ଆପେ ବାପ ହେଉ,
ପରପୁଅ ଦେଖି ଲଜ ନାହିଁ ମୁଖେ ନିଜ ପୁଅ ବୋଲି କହୁ ।
ଆରେ କୁଳଧ୍ୱଂସକଡ଼ା,
ପର-ଘର-ବୁଡ଼ା ସ୍ତ୍ରୀଙ୍କ ଛଡ଼ା ।"

ଶ୍ରୀରାମପ୍ରଭୃତି ଭ୍ରାତୃଭାଇଙ୍କ ମୃତ୍ୟୁ ସମ୍ବାଦ ପାଇ ସୀତା ଶୋକରେ ଅଧୀରା ହୋଇଉଠିଛନ୍ତି । ସେ ରାମଚନ୍ଦ୍ରଙ୍କର କୀର୍ତ୍ତି ଓ ତାଙ୍କ ପରାକ୍ରମର ବର୍ଣ୍ଣନା କରି ଆକୁଳ କଣ୍ଠରେ ରୋଦନ କରିଛନ୍ତି । ଏହି ପ୍ରସଙ୍ଗରେ ମଧ୍ୟ କବି ଜଗନ୍ନାଥ ପାଣି ମନୋପଯୋଗୀ ଭାଷାର ପ୍ରୟୋଗ କରି ନିଜ ପ୍ରତିଭାର ଚମତ୍କାରିତା ଦେଖାଇବାରେ ଢଳେ ହେଲେ ତ୍ରୁଟି କରିନାହାନ୍ତି । ସୀତା ମହାଲକ୍ଷ୍ମୀଙ୍କର ଅଂଶ ସ୍ୱରୂପା, ଦୈତ୍ୟ ବଂଶର ସଂହାର ଲାଗି ତାଙ୍କର ଜନ୍ମ ଏବଂ ଏ' ଲୀଳାବତାର ପରେ ବୈକୁଣ୍ଠକୁ ଫେରିଯିବା ତାଙ୍କର କର୍ତ୍ତବ୍ୟ ହୋଇଥିଲେ ହେଁ, ସେ ସ୍ୱାମୀ ଓ ଦେବରଙ୍କ ବଧବାର୍ତ୍ତା ଶ୍ରବଣ କରିବା ମାତ୍ରେ ସାଧାରଣ ବିଧବା ସ୍ତ୍ରୀଙ୍କ ପରି ହତଜ୍ଞାନ ହୋଇ ରୋଦନ କରିଛନ୍ତି । ସେହି ପ୍ରସଙ୍ଗକୁ କବି ସରଳ ଓ ସାବଲୀଳ ଭାଷାରେ ବର୍ଣ୍ଣନା କରି ସାମାଜିକମାନଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି ।

"ଆହା ପ୍ରାଣବନ୍ଧୁ ଆହା ପ୍ରାଣର ଜୀବନ
ଆହା, ଯାହା ଶିଶୁ ହସ୍ତେ ହୋଇଲ ନିଧନ ॥
ବ୍ରହ୍ମାଣ୍ଡ ଜିଣି ପାରନ୍ତି ଯା'ର ଭ୍ରାତୃଗଣ,
ତାହାଙ୍କୁ ନାଶ କରିଲେ ଲବକୁଶ ପୁତ୍ର ॥

ସୂର୍ଯ୍ୟବଂଶୀ ଚନ୍ଦ୍ରନାଥ ମହୀନ୍ଦ୍ର ରତନ,
ହତପାଟ କଲେଲ ଅଯୋଧ୍ୟା ଭୁବନ ॥
ସୁବର୍ଣ୍ଣ ପଲଙ୍କେ ନିଦ୍ରା ନ ମାଡ଼ଇ ତୋତେ ।
ତନ ଖଇ ରଣେ ପେନ ଶୋଇଲୁ କେମନ୍ତେ ॥
ଶୁଣିଲେ କ ପ୍ରାଣ ଆଉ ରଖିବେ କୌଶଲ୍ୟା ।
ଅଗାଧ ସମୁଦ୍ରେ ମୋର ଭେଲା ତ ବୁଡ଼ିଲା ॥"

ପରିଶେଷରେ କବି ଜଗନ୍ନାଥ ପାଣି ସୀତାଙ୍କ ବିୟୋଗରେ ନବ କୁଶଙ୍କ ଶୋକବିହ୍ୱଳରୂପ ଭାଷାର ପ୍ରୟୋଗରେ ବର୍ଣ୍ଣନା କରି ଦର୍ଶକମାନଙ୍କୁ ଶୋକାଭିଭୂତ କରାଇଛନ୍ତି । ଲୋକସମାଜରେ ମାତୃହୀନ ସନ୍ତାନ କି ପ୍ରକାର ଅନାଦୃତ ହୁଏ ତାହା ଉଣାଅଧିକେ ପ୍ରତ୍ୟେକ ଦର୍ଶକ ଅନୁଭବ କରିପାରନ୍ତି । ଏଠାରେ କବି ଜଗନ୍ନାଥ ନବ କୁଶଙ୍କ ମୁଖରେ ମାତୃବିହୀନ ଶିଶୁର କରୁଣ ବେଦନା ଅତି ଦକ୍ଷତାର ସହିତ ଫୁଟାଇ ଗୀତାଭିନୟଟିକୁ ସରସ କରାଇଛନ୍ତି ।

"ଜନକ ଦୁଲଣୀ ମାଗୋ କେଣେ ଛାଡ଼ିଗଲୁ ।
ଅଗାଧ ସମୁଦ୍ରେ ଆମ୍ଭ ଭେଲା ବୁଡ଼ାଇଲୁ ॥
କେ କରିବ ମାଗୋ ଆଉ ଆମ୍ଭ ଆଶ୍ୱାସନା ।
କାହା ଆଗେ ରହିବୁ ମା'କେ କରିବ ପେନା ॥
କ୍ଷୁଧା ତୃଷ୍ଣା ଜାଣି ସୁଧା କେଦେବ ଆମ୍ଭଙ୍କୁ ।
ମାଆ ମାଆ ବୋଲି ଆଉ ଡାକିବୁ କାହାକୁ ॥
ଏତେ ସ୍ନେହ କରି ମାଗୋ ପ୍ରତିପାଳିଥିଲୁ ।
ଯିବାବେଳେ ଆମ୍ଭଙ୍କୁ ମା' ପଦେ ନ କହିଲୁ ॥"

କବି ଜଗନ୍ନାଥ କେବଳ ସରଳ ଓ ସାବଲୀଳ ଭାଷା ପ୍ରୟୋଗ କରି ସୀତା ବନବାସ ଗୀତାଭିନୟଟିକୁ ଯେ ସର୍ବଜନଗ୍ରାହ୍ୟ କରାଇ ପାରିଛନ୍ତି ତା' ନୁହେଁ, ସେ ମଧ୍ୟ ରସାନୁକୂଳ ଛନ୍ଦ ଯୋଜନାରେ 'ସୀତା ବନବାସ'ର ମହତ୍ତ୍ୱ ଅନେକ ଗୁଣରେ ବୃଦ୍ଧି କରିଛନ୍ତି । ଯମକ ଓ ଅନୁପ୍ରାସର ପ୍ରୟୋଗ ତାଙ୍କର ପ୍ରତ୍ୟେକ ଗୀତାଭିନୟର ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ । ସବୁ ଦୃଷ୍ଟିକୋଣରୁ ବିଗ୍ଭର କଲେ 'ସୀତା ବନବାସ' କବି ଜଗନ୍ନାଥ ପାଣିଙ୍କର ଏକ ସଫଳ ରଚନା ବୋଲି ନିଃସଂଶୟରେ କୁହାଯାଇପାରେ ।

---

# ବିଲଙ୍କାଚରିତ

କବି ଜଗନ୍ନାଥ ପାଣିଙ୍କ ରଚିତ ଗୀତାଭିନୟ ଗୁଡ଼ିକ ମଧ୍ୟରେ 'ବିଲଙ୍କାଚରିତ' ଶ୍ରୀରାମଚରିତାମୃତ ଦ୍ୱିତୀୟ ଦୃଶ୍ୟକାବ୍ୟ । ଅବଶ୍ୟ ବିଲଙ୍କା ରାମାୟଣର ବୃତ୍ତାନ୍ତ ବାଲ୍ମୀକୀୟ କଳ୍ପନା ନୁହେଁ । ଏହାର ମୂଳ ସ୍ରୋତ 'ଅଦ୍ଭୁତ ରାମାୟଣ'ରୁ ଆସିଅଛି । ଯା' ହେଉ, ବିଲଙ୍କା ରାମାୟଣର ବୃତ୍ତାନ୍ତ ସର୍ବପ୍ରଥମେ ସାରଳା ଦାସଙ୍କ ମାଧ୍ୟମରେ ଓଡ଼ିଆ ସାହିତ୍ୟରେ ପ୍ରବେଶ କରିଛି । ବ୍ୟାସକବି ସାରଳା ଦାସ ମହାଭାରତର ବନପର୍ବରେ ରାମାୟଣର ବୃତ୍ତାନ୍ତ ସଂକ୍ଷେପରେ ବର୍ଣ୍ଣନା କରିଛନ୍ତି; 'ସପ୍ତକାଣ୍ଡ ରାମାୟଣ' ଶୀର୍ଷକ ଏକ ସଂକ୍ଷିପ୍ତ ରାମାୟଣ ଓ 'ବିଲଙ୍କା ରାମାୟଣ' ରଚନା କରି ରାମାୟଣୀୟ ବିଷୟବସ୍ତୁକୁ ଓଡ଼ିଆ ଜନ ସାଧାରଣଙ୍କ ମଧ୍ୟରେ ପ୍ରଚାର କରିଛନ୍ତି । ତାଙ୍କ ରଚିତ ମହାଭାରତ ଯେପରି ବହୁ କାଳ୍ପନିକ କଥାବସ୍ତୁରେ ପୂର୍ଣ୍ଣ, 'ସପ୍ତକାଣ୍ଡ ରାମାୟଣ' ଠିକ୍ ସେହିପରି ଅନେକ ଅଲୌକିକ ଗାଥାରେ ପରିପୂର୍ଣ୍ଣ । ବାଲ୍ମୀକୀୟ ପଦଚିହ୍ନରେ ଅନୁଗମନ କରୁ କରୁ ସାରଳା ଦାସ ବହୁ ଅତିମାନବୀୟ ଚରିତ୍ରର ପରିକଳ୍ପନା କରିଛନ୍ତି ଏବଂ ଓଡ଼ିଶାର ଆଚାର ବ୍ୟବହାର ଓ ଲୋକ ସଂସ୍କୃତିକୁ ରାମାୟଣ ମାଧ୍ୟମରେ ପ୍ରଚାର କରିଛନ୍ତି ।

ଖୁବ୍ ସମ୍ଭବତଃ ସାରଳା ଦାସ ମହାଭାରତ ଓ ସପ୍ତକାଣ୍ଡ ରାମାୟଣର ରଚନା ପରେ 'ବିଲଙ୍କା ରାମାୟଣ'ର ପ୍ରଣୟନରେ ମନ ବଳାଇଥିଲେ । କବି ବିଲଙ୍କା ରାମାୟଣ ଗ୍ରନ୍ଥରେ ନାରୀର ମହାମୟୀ ଶକ୍ତିର ପ୍ରାଧାନ୍ୟ ଦେଖାଇବା ଲାଗି ଅଦ୍ଭୁତ ରାମାୟଣର ଚରିତକୁ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । କବିଙ୍କ ଦୃଷ୍ଟିରେ ସମାଜରେ ନାରୀର ସ୍ଥାନ ପୁରୁଷ ତୁଳନାରେ ଆଦୌ ନ୍ୟୂନ ନୁହେଁ । ନାରୀମାନେ ନିଜର ଅପୂର୍ବ ଲୋକମୋହିନୀ ଶକ୍ତି ଦ୍ୱାରା ଦୁନିଆର ପ୍ରବଳ ପରାକ୍ରମଶାଳୀ ଦୁର୍ଦ୍ଧର୍ଷ ବ୍ୟକ୍ତିଙ୍କୁ ଅନାୟାସରେ ପରାସ୍ତ କରିପାରନ୍ତି । ଯେଉଁଠାରେ ତୀକ୍ଷ୍ଣ ଅସି ଓ ସୁତୀକ୍ଷ୍ଣ ନାରାଚ ବ୍ୟର୍ଥହୁଏ ସେଠାରେ ନାରୀ ଜନତା ଜନାର୍ଦ୍ଦନର ମଙ୍ଗଳ ଉଦ୍ଦେଶ୍ୟରେ ନିଜର ଶାନ୍ତା ଓ କାନ୍ତା ରୂପକୁ ଚଣ୍ଡୀ ରୂପରେ ପରିଣତ କରାଏ । ଶକ୍ତିର ପ୍ରଚଣ୍ଡ ଜ୍ୱାଳାମୟୀ

ମୂର୍ତ୍ତି ସମ୍ମୁଖରେ ପୁରୁଷର ସମସ୍ତ କାପୁରିକ ଶକ୍ତି ବ୍ୟର୍ଥ ହୁଏ ଓ ନାରୀ ବିଜୟିନୀ ହୋଇ ଦେଶ ଓ ଦଶର ସେବାର ବୈଜୟନ୍ତୀ ଉଡ଼ାଏ ।

ରାବଣକୁ ବଧ କରି ରାମଚନ୍ଦ୍ର ଲଙ୍କାରୁ ଫେରିବା ପରେ ଅଯୋଧ୍ୟାରେ ତାଙ୍କ ରାଜ୍ୟାଭିଷେକ ହେବାର ସମସ୍ତ ଆୟୋଜନ କରାଗଲା । କିନ୍ତୁ ଦେବତାମାନଙ୍କ ମଧ୍ୟରେ ଭାଲେଣି ପଡ଼ିଲା—ବଲଙ୍କା ଦେଶର ଲକ୍ଷେଶ୍ୱରର ପୁତ୍ର ସହସ୍ରଶିରାର ମୃତ୍ୟୁ ହେବ କିପରି ? ତେଣୁ ଅଭିଷେକ ପୂର୍ବରୁ ଦେବତାମାନେ ଖଳ ଓ ଦୁଷ୍ଟଙ୍କ ସୀତା ଓ ରାମଙ୍କ କଣ୍ଠରେ ବିଜେ କରାଇଲେ । ଅଭିଷେକ ପୂର୍ବରୁ ଯେବେ ରାମଚନ୍ଦ୍ର ସ୍ୱ ପରାକ୍ରମର ପ୍ରୌଢ଼ି ଦେଖାଇ ବଶିଷ୍ଠଙ୍କ ଆଗରେ ଆଲୋଚନା କରନ୍ତେ, ସୀତାଦେବୀ ତା'ର ପ୍ରତ୍ୟକ୍ଷ ପ୍ରତିବାଦ କଲେ । ଦେବୀ ନିଜ ଶକ୍ତିବଳରେ ରାବଣକୁ ବଧ କରିଛନ୍ତି ବୋଲି କହି ପରୋକ୍ଷରେ ରାମଚନ୍ଦ୍ରଙ୍କ ଶକ୍ତି ପ୍ରତି ଉପେକ୍ଷା ପ୍ରଦର୍ଶନ କଲେ । ରାମଚନ୍ଦ୍ର ଏହା ଅସ୍ୱୀକାର କରନ୍ତେ ସୀତାଦେବୀ ସହସ୍ରଶିରା ରାବଣକୁ ମାରିବା ଲାଗି ସ୍ୱାମୀଙ୍କୁ ଆହ୍ୱାନ ଜଣାଇଲେ । ତେଣୁ ଶ୍ରୀରାମ ବଲଙ୍କା ଗମନ କରି ସହସ୍ର ଶିରା ରାବଣ ଦ୍ୱାରା ପରାସ୍ତ ହେଲେ । ଅବଶେଷରେ ଦେବତାମାନଙ୍କ ଅନୁରୋଧରେ ସୀତାଦେବୀ ଯୁଦ୍ଧସ୍ଥଳକୁ ଯାଇ ନିଜର ମୋହିନୀ ଶକ୍ତି ବଳରେ ସହସ୍ରଶିରାର ଶୌର୍ଯ୍ୟ ଅପହରଣ କରନ୍ତେ ରାମଚନ୍ଦ୍ର ରାକ୍ଷସକୁ ମାରିବାରେ ସମର୍ଥ ହେଲେ ଏବଂ ନିଜର ଗର୍ବ ନିମନ୍ତେ ସୀତାଦେବୀଙ୍କଠାରେ ଲଜ୍ଜିତ ହେଲେ ।

"ଜାନକୀ ବୋଇଲେ ପ୍ରଭୁ ପ୍ରତିଜ୍ଞା ନକର,
ମୁହିଁ ନ ମାଇଲେ କାହିଁ ମରନ୍ତା ଅସୁର ॥
ତୁମ୍ଭେ କିବା କଷ୍ଟ ପାଇଅଛ ରଘୁରାଣ,
ଘୋର କଷ୍ଟ ପାଇଲି ମୁଁ ମାଇଲି ରାବଣ ॥
ଏମନ୍ତ ପ୍ରତିଜ୍ଞା ଯେବେ ଅଛୁ ରଘୁସାଇଁ,
ବଲଙ୍କାରେ ରାବଣକୁ ବଧ କର ଯାଇଁ ॥

× × × ×

ଅପୂର୍ବ ମୂରତି ଧରିଲେକ ବଇଦେହୀ,
ଅସୁର ଆଗରେ ଉଭା ହେଲେ ଦେବୀ ଯାଇ ॥
ସେହି ରତନକୁ ଗୃହିଁଦେଲେକ ଅସୁର,
ମହାକୋପେ ଦୈତ୍ୟ ଅଙ୍ଗ କମ୍ପେ ଥରହର ॥
ନବଯଉବନ ସତୀ ଦେଲେକ ଦେଖାଇ,
ବେଗେ ପଞ୍ଚଶର ପୁଷ୍ପଧନୁରେ ପୁରାଇ ॥

ଆପଣା ଗର୍ଭରୁ କାଢ଼ି ଜନକ ଦୁଲଣୀ,
ଦଇତ୍ୟର ଉପରକୁ ବିନ୍ଧିଲେକ ଟାଣି ॥
କନ୍ଦର୍ପର ପଞ୍ଚଶର ଅଙ୍ଗରେ ବାଜିଲା ।
ବେକ୍ତୁବେଳ ଦୈତ୍ୟ ତନୁ ଆତୁର ହୋଇଲା ॥

(ସାରଳାଦାସଙ୍କ ବିଲଙ୍କା ରାମାୟଣ)

ସାରଳା ଦାସଙ୍କ ବିଲଙ୍କା ରାମାୟଣ ପରି ଉତ୍କଳ ବାଲ୍ମୀକି ବଳରାମ ଦାସ ମଧ୍ୟ 'ବିଲଙ୍କା ରାମାୟଣ' ନାମରେ ଖଣ୍ଡିଏ ପୁସ୍ତକ ରଚନା କରିଛନ୍ତି । ସାରଳା ଦାସଙ୍କ କଥାବସ୍ତୁ ଠାରୁ ବଳରାମ ଦାସଙ୍କ କଥାବସ୍ତୁରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ ।

ରାବଣ ବଧ ପରେ ରାମଚନ୍ଦ୍ର ବିଭୀଷଣଙ୍କୁ ଲଙ୍କାରେ ଅଭିଷେକ କରାଇ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଲାଗି ଇଚ୍ଛା ପ୍ରକାଶ କରନ୍ତେ, ବିଭୀଷଣ ବିଲଙ୍କା ଦେଶର ସହସ୍ରଶିରାର ପ୍ରତାପ ବିଷୟରେ ବର୍ଣ୍ଣନା କଲେ । ତହୁଁ ରାମଚନ୍ଦ୍ର ଅଙ୍ଗଦ ହସ୍ତରେ ପତ୍ର ଦେଇ ସହସ୍ରଶିରା ରାବଣ ନିକଟକୁ ପଠାଇଲେ କିନ୍ତୁ । ଦୁର୍ଦ୍ଦାନ୍ତ ରାକ୍ଷସର ନିଶ୍ୱାସ ପବନରେ ଅଙ୍ଗଦ ଫେରିଆସନ୍ତେ ଶ୍ରୀରାମ ପୁଣି ହନୁମାନଙ୍କୁ ଦୂତ ରୂପରେ ପଠାଇଲେ । ରାମଚନ୍ଦ୍ରଙ୍କ ପତ୍ର ପାଇ ସହସ୍ରଶିରା ନିଜ ପୁତ୍ର ଗୁମାନୀ ଅସୁରକୁ ଲଙ୍କା ଧ୍ୱଂସ ଉଦ୍ଦେଶ୍ୟରେ ପ୍ରେରଣ କଲା । ରାମଚନ୍ଦ୍ରଙ୍କ ଦ୍ୱାରା ଗୁମାନୀ ଅସୁର ବଧ ହୁଅନ୍ତେ ସହସ୍ରଶିରା ନିଜେ ଲଙ୍କାଉଦ୍ୟାନରେ ଯାଇ ରାମଚନ୍ଦ୍ରଙ୍କ ହସ୍ତରେ ପ୍ରାଣ ଦେଲା ।

ଖୁବ୍ ସମ୍ଭବତଃ କବି ଜଗନ୍ନାଥ ପାଣି ପ୍ରୋକ୍ତ ଦୁଇଟିଯାକ ବିଲଙ୍କା ରାମାୟଣ ପାଠ କରି ଓ ସଂସ୍କୃତ ଅଦ୍ଭୁତରାମାୟଣର ବିଷୟବସ୍ତୁ ହୃଦୟଙ୍ଗମ ପୂର୍ବକ ବିଲଙ୍କା ଚରିତ ଗୀତାଭିନୟଟି ରଚନା କରିଛନ୍ତି । 'ବିଲଙ୍କା ଚରିତ' ଗୀତାଭିନୟ ପଚିଶଟି ଛାନ୍ଦରେ ସମ୍ପୂର୍ଣ୍ଣ ହୋଇଛି । ପାଠକ ଓ ଆଲୋଚକମାନଙ୍କର ଅବଗତି ନିମିତ୍ତ ଏଠାରେ ବିଲଙ୍କାଚରିତ ଗୀତାଭିନୟର ବିଷୟବସ୍ତୁ ପ୍ରଦତ୍ତ ହେଲା ।

"ରାବଣବଂଶ ବିନାଶରେ ଅବସନ୍ନଗାତ୍ର ରାମଚନ୍ଦ୍ର ଅଯୋଧ୍ୟାରେ ପ୍ରବେଶ କଲେ । ପୁରନାରୀ ଓ ମାତାମାନଙ୍କଦ୍ୱାରା ଆଶ୍ୱସ୍ତ ହୋଇ ରାମଚନ୍ଦ୍ର କିଛିଦିନ ବିଶ୍ରାମ ନେବା ଲାଗି ଇଚ୍ଛା କରନ୍ତେ ଦେବତାମାନଙ୍କ ମଧ୍ୟରେ ଚିନ୍ତା ପଡ଼ିଲା । ଦେବଗଣଙ୍କ ପରାମର୍ଶରେ ପରମେଷ୍ଠୀ ରାମଚନ୍ଦ୍ରଙ୍କର ଅଭିଷେକୋତ୍ସବ ଭଙ୍ଗ କରିବା ଲାଗି ଖଳ ଦୁର୍ବଳ ରାମ ସୀତାଙ୍କ କଣ୍ଠରେ ବିଜେକଲେ । ବଶିଷ୍ଠଙ୍କ ଆଗରେ ରାମଚନ୍ଦ୍ର ନିଜର ଶକ୍ତି ଓ ସାମର୍ଥ୍ୟର ବର୍ଣ୍ଣନା କରନ୍ତେ, ସୀତା ପ୍ରତିବାଦ କରି ବିଲଙ୍କା ଦେଶର ରାଜା ବିଲଙ୍କାପୁରକୁ ମାରିବା ଲାଗି ସ୍ୱାମୀଙ୍କୁ ଆହ୍ୱାନ ଜଣାଇଲେ । ଜାନକୀଙ୍କ ବଚନ ସହି

ନପାରି ରାମଚନ୍ଦ୍ର ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ହୋଇ ବଶିଷ୍ଠଙ୍କ ଉପରେ ରାଜ୍ୟଭାର ନ୍ୟସ୍ତପୂର୍ବକ ଏକାକୀ ବଲଙ୍କ ଦେଶକୁ ଯିବା ଲାଗି ପ୍ରସ୍ତୁତ ହେଲେ । ସେ ଅନ୍ତଃପୁରକୁ ପ୍ରବେଶ କରି ମାତାମାନଙ୍କୁ ପ୍ରଣାମ କରନ୍ତେ ସେମାନେ ରାମଚନ୍ଦ୍ରଙ୍କ ଉଦ୍ଦେଶ୍ୟ ଜାଣି ଅତ୍ୟନ୍ତ ଦୁଃଖିତା ହେଲେ । ଅଗ୍ରଜଙ୍କ ଉଦ୍ଦେଶ୍ୟ ଜାଣି ଲକ୍ଷ୍ମଣ ତାଙ୍କ ସହିତ ଯିବାଲାଗି ଆଗ୍ରହ ପ୍ରକାଶ କଲେ । କିନ୍ତୁ ରାମଚନ୍ଦ୍ର ତାଙ୍କୁ ବାରଣ କରି ଏକାକୀ ବଲଙ୍କ ଦେଶକୁ ପବନ ଦେବତାଙ୍କ ମନଯାନରେ ବସି ଗମନ କଲେ । ବଲଙ୍କ ଦେଶର ମେଘନାଦ ପ୍ରାଚୀର ନିକଟରେ ପ୍ରଚଣ୍ଡ ନାମକ ପର୍ବତରେ ରଘୁନାଥ ରଥରୁ ଓହ୍ଲାଇ ବଲଙ୍କଦେଶ ଓ ତା'ର ବୀରମାନଙ୍କୁ ଦେଖି ବିସ୍ମିତ ହୋଇଗଲେ । ରାମଚନ୍ଦ୍ରଙ୍କୁ ଦେଖି ପ୍ରଥମେ ଅସୁରମାନେ ତାଙ୍କର ପଥରୋଧ କଲେ । କିନ୍ତୁ ରାମଚନ୍ଦ୍ର ତାଙ୍କୁ ପରାସ୍ତ କରି ବଲଙ୍କ ନୃପତିର ସିଂହାସନ ନିକଟରେ ଉପସ୍ଥିତ ହେଲେ । ସେ ଅସୁର ଆଗରେ ନିଜର ବୃତ୍ତାନ୍ତ ବର୍ଣ୍ଣନା କରନ୍ତେ ଅସୁର ଉପହାସ କରି ଗୋଟିଏ ଚାଳ ମାରିଲା । ସେ କଟିତାଳର ପବନାଘାତରେ ରାମଚନ୍ଦ୍ର ଉଡ଼ିଯାଇ ଷଠୁରି ଯୋଜନ ଦୂରବର୍ତ୍ତୀ 'ବୃଦ୍ଧଗଣ୍ଡକୀ' ନଦୀର ଉତ୍ତର ତୀରରେ ପଡ଼ିଲେ ।

ରାମଚନ୍ଦ୍ରଙ୍କର ଅଭିଷେକ ଲାଗି ହନୁମାନ ତୀର୍ଥଜଳ ଆଣିବାକୁ ଯାଇଥିଲେ । ସେଠାରୁ ଫେରିଆସି ଅଯୋଧ୍ୟାରେ ସମସ୍ତ ବୃତ୍ତାନ୍ତ ଶୁଣନ୍ତେ ପ୍ରଚଣ୍ଡ ପର୍ବତରେ ପ୍ରଭୁଙ୍କ ଅନ୍ୱେଷଣ ଲାଗି ସେ ମଧ୍ୟ ପ୍ରସ୍ଥାନ କଲେ । ସେଠାରେ ପ୍ରଭୁଙ୍କ ସନ୍ଧାନ ନପାଇ ହନୁମାନ ବଲଙ୍କା ପୁରରେ ପ୍ରବେଶ କଲେ । ଚାରିଆଡ଼େ ଖୋଜି ପ୍ରଭୁଙ୍କର କୌଣସି ଚିହ୍ନ ବର୍ଣ୍ଣ ନପାଇ ହନୁମାନ ଗଡ଼ର ଉତ୍ତର ଦ୍ୱାରରେ ଥିବା ବିଷମିଶ୍ରିତ ଜଳପାନ କରି ପ୍ରାଣ ହରାଇଲେ । ପୁତ୍ରର ମରଣରେ ବ୍ୟଥିତ ହୋଇ ପବନ ଦେବତା ଦଶଦିଗରେ ପବନ ରୋଧ କରିଦେଲେ । ପବନ ବିନା ଚରାଚର ବ୍ରହ୍ମାଣ୍ଡ ଅତିଷ୍ଠ ହୋଇପଡ଼ନ୍ତେ, ବ୍ରହ୍ମା ମୃତସଞ୍ଜିବନୀ ମନ୍ତ୍ରରେ ହନୁମାନଙ୍କୁ ବଞ୍ଚାଇଦେଲେ ଏବଂ ରାମଚନ୍ଦ୍ରଙ୍କ ତପସ୍ୟାସ୍ଥଳ ବୃଦ୍ଧଗଣ୍ଡକୀ ତୀରକୁ ଯିବାଲାଗି ତାଙ୍କୁ ଉପଦେଶ ଦେଲେ । ବୃଦ୍ଧ ଗଣ୍ଡକୀ କୂଳରେ ପ୍ରଭୁ ଓ ଭକ୍ତଙ୍କ ମିଳନ ହେଲା ଏବଂ ପରସ୍ପର ନିଜନିଜର ବୃତ୍ତାନ୍ତ କୁହାକୁହି ହେଲେ । ପରଦିନ ପ୍ରଭାତରେ ବଲଙ୍କ ନଗରରେ ଚହଲ ଶୁଣି ରାମଚନ୍ଦ୍ର ଜିଜ୍ଞାସା କରନ୍ତେ, ସେଦିନ ସହସ୍ରଶିରା ରାବଣରେ ଭୋଜନ ଦିବସ ବୋଲି ହନୁମାନ ଜଣାଇଲେ ଏବଂ ପ୍ରଭୁଙ୍କ ଆଦେଶ ନେଇ ଦାନବ ଗର୍ଭରେ ପ୍ରବେଶ କଲେ । ନିଜ ଉଦରରେ ରାମ ନାମ ଶୁଣି ଅସୁରରାଜ ଉଦ୍‌ଗାର କରି ପକାନ୍ତେ ହନୁମାନ ତଳେ ପଡ଼ି ତାଙ୍କୁ ରାମଚନ୍ଦ୍ରଙ୍କ ଆଗମନ ବାର୍ତ୍ତା ଜଣାଇ ପ୍ରଚଣ୍ଡ ପର୍ବତକୁ ପଳାଇଗଲେ । ପରଦିନ ପ୍ରଭାତରୁ ହନୁମାନଙ୍କ କାନ୍ଧରେ ବସି ରାମଚନ୍ଦ୍ର ବଲଙ୍କା ଗଡ଼ରେ ପ୍ରବେଶ କଲେ । ତାଙ୍କଠାରୁ ବାର୍ତ୍ତା ପାଇ ସହସ୍ରଶିରା ନିଜ ମନ୍ତ୍ରୀ

ସପ୍ତଶିରାକୁ ରାମଙ୍କ ସହିତ ଯୁଦ୍ଧ ଲାଗି ପ୍ରେରଣକଲେ । ସପ୍ତଶିରା ଓ ଶ୍ରୀରାମଙ୍କ ମଧ୍ୟରେ ଘୋରତର ଯୁଦ୍ଧ ହେଲା ଏବଂ ପରଶେଷରେ ଶ୍ରୀରାମ ଅର୍ଦ୍ଧଚନ୍ଦ୍ର ବାଣରେ ସପ୍ତଶିରାକୁ ବଧ କଲେ । ସପ୍ତଶିରାର ବଧ ପରେ ତାହାର ପତ୍ନୀ ସୁରେଖୀ ଗର୍ଭବତୀ ଅବସ୍ଥାରେ ପତିର ଗୁଣ ସ୍ମରଣ କରି ରୋଦନକଲା । ଏହି ସମୟରେ ଗର୍ଭସ୍ଥ ବାଳକ କୋମଳ-ସ୍ୱରରେ ମାତାକୁ ପ୍ରବୋଧନା ଦେଇ କହିଲା—ମୋତେ ସଙ୍ଗେ ସଙ୍ଗେ ଜନ୍ମଦିଅ, ମୁଁ ନାଭିଦୈତ୍ୟ ନାମରେ କଥିତ ହୋଇ ପିତାର ଶତ୍ରୁକୁ ବଧ କରିବି । ଏହା ଶୁଣି ସୁରେଖୀ ସଙ୍ଗେ ସଙ୍ଗେ ନାଭିଦୈତ୍ୟକୁ ଜନ୍ମକଲା ଏବଂ ଅମୃତର କ୍ଷୀର ପାନକରି ନାଭିଦୈତ୍ୟ ପ୍ରଚଣ୍ଡ ବିକ୍ରମରେ ରାମଚନ୍ଦ୍ରଙ୍କ ଆଗରେ ଉପସ୍ଥିତ ହେଲା । ରାମଚନ୍ଦ୍ର ତର୍ପଣ କରୁଥିବା ସମୟରେ ନାଭିଦୈତ୍ୟ ଉପସ୍ଥିତ ହୁଅନ୍ତେ, ହନୁମାନ ନାଭିଦୈତ୍ୟ ସହିତ, ମଲ୍ଲଯୁଦ୍ଧରେ ବ୍ୟାପୃତ ହେଲେ । ଦୁହେଁ ଗଡ଼ାଗଡ଼ି ହୋଇ ପର୍ବତ ଉପରୁ ତଳକୁ ଖସିପଡ଼ିଲେ । ପୁଣି ଗଡ଼ାଗଡ଼ି ହୋଇ ସମୁଦ୍ର ମଧ୍ୟରେ ପତିତ ହେଲେ । ଅନନ୍ତର ମହାବୀର ହନୁମାନ ନାଭିଦୈତ୍ୟକୁ ନେଇ ଗୋଟିଏ ପର୍ବତ ତଳେ ମାଡ଼ିବସିଲେ । ନାଭିଦୈତ୍ୟ ଦିନ ଦିନ ଯାଏ ପର୍ବତ ତଳେ ଅଶକ୍ତ ହୋଇ ପଡ଼ିରହିଲା ଏବଂ ହଠାତ୍ ମା'ର ଡାକ ଶୁଣି ପର୍ବତକୁ ଦୂରକୁ ଫିଙ୍ଗି ଦେଇ ପୁଣି ଶ୍ରୀରାମଙ୍କ ନିକଟରେ ଉପସ୍ଥିତ ହେଲା । ନାଭିଦୈତ୍ୟ ଓ ଶ୍ରୀରାମଙ୍କ ମଧ୍ୟରେ ବସ୍ତ୍ରାସ୍ତ୍ରାବଳି ଯୁଦ୍ଧ ସଂଗଠିତ ହେଲା । ପରିଶେଷରେ ଦେବତାମାନଙ୍କଠାରୁ ନିର୍ଦ୍ଦେଶ ପାଇ ରାମଚନ୍ଦ୍ର ଦୈତ୍ୟର ନାଭିକୁ ନାରାଚ କ୍ଷେପଣ କରି ବଧ କଲେ ।

ନାଭିଦୈତ୍ୟର ମୃତ୍ୟୁରେ ସୁରେଖୀ କିଛିକ୍ଷଣ ରୋଦନ କରିବା ପରେ ସୁରସେନା ନାମରେ ମାୟାରୂପ ଧାରଣ କରି ରାମଚନ୍ଦ୍ରଙ୍କ ନିକଟରେ ଆଶ୍ରୟ ଲାଗି ଉପସ୍ଥିତ ହେଲା । ରାମଚନ୍ଦ୍ରଙ୍କ ଆଦେଶରେ ହନୁମାନ ମାୟା ଅପ୍ସରାକୁ ଗୋଟିଏ ଗିରିଗହ୍ୱରରେ ରଖାଇ ଦ୍ୱାରଦେଶରେ ଜଗି ରହିଲେ । ନିଶାର୍ଦ୍ଧରେ ଅପ୍ସରା ହନୁମାନଙ୍କ ସହିତ ଅବୈଧ ପ୍ରଣୟରେ ଲିପ୍ତ ହେବାଲାଗି ଏକାନ୍ତ ଅନୁରୋଧ ଜଣାଇଲା । ହନୁମାନ କୁଳାଚାର ଧର୍ମ ସମ୍ବନ୍ଧରେ ଉପଦେଶ ଦେଇ ନିଜର ଅସମର୍ଥତା ପ୍ରକାଶ କରନ୍ତେ ଅପ୍ସରା ମହାକୋପକରି ପବନପୁତ୍ରଙ୍କୁ ଗିଳିଦେଇ ବଲଙ୍ଗୀପତିଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ସହସ୍ରଶିରା ଆଗରେ ସୁରେଖୀ ହନୁମାନକୁ ଉଦ୍‌ଗାର କରନ୍ତେ, ଅସୁରରାଜ ହନୁମାନର ମାଂସରେ ବ୍ୟଞ୍ଜନ ପ୍ରସ୍ତୁତ କରିବା ଲାଗି ରାଣୀମାନଙ୍କୁ ଆଦେଶ ଦେଲା । ରାଣୀମାନେ ମହାଆନନ୍ଦରେ ଛୁରୀ ଆଣି ହନୁମାନଙ୍କ ଅଙ୍ଗରେ ପ୍ରହାର କରନ୍ତେ ସେ ଚେତନା ପାଇ ସିଂହ ବିକ୍ରମରେ ଉଠିପଡ଼ିଲେ ଏବଂ ରାଣୀମାନଙ୍କୁ ନାନା ପ୍ରକାର ପରାଭବ ଦେଇ ପ୍ରଚଣ୍ଡ ପର୍ବତକୁ ପ୍ରସ୍ଥାନ କଲେ । ବଲଙ୍ଗୀପୁର ନଗରବାସୀ ରାଣୀମାନଙ୍କର ଦୁର୍ଦ୍ଦଶା ଦେଖି ନିଜ ଭଙ୍ଗୋ ନମ୍ର ଚାଷପଲୁ

ଶ୍ରୀରାମଙ୍କ ସହିତ ଯୁଦ୍ଧ କରିବାଲାଗି ନିର୍ଦ୍ଦେଶ ଦେଲା । କମ୍ବୁ ରାକ୍ଷସ ମାୟା ଯତିବେଶ ଧାରଣ କରି ଶ୍ରୀରାମଙ୍କ ନିକଟରେ ଉପସ୍ଥିତ ହୋଇ କାଶୀ କ୍ଷେତ୍ରର ବିଭୂତି ଅଙ୍ଗରେ ବୋଳିବା ଲାଗି ଶ୍ରୀରାମଙ୍କୁ ଦେଲା । ସେ ବିଭୂତି ଶରୀରରେ ଲଗାନ୍ତେ ରାମଚନ୍ଦ୍ର ମୋହ ହୋଇଗଲେ । ଅସୁର ପ୍ରଚଣ୍ଡ ପର୍ବତରୁ ଶ୍ରୀରାମଙ୍କୁ ନେଇ ବଳଙ୍କାଦୁର୍ଗର ବନ୍ଦୀ ଗୃହରେ ରଖିଲା । ହନୁମାନ ଏହା ଜାଣି ଭ୍ରମର ରୂପରେ ଶ୍ରୀରାମଙ୍କ କପାଳରୁ ବିଭୂତି ଲିଭାଇ ଦେଲେ । ଶ୍ରୀରାମ ଚେତନା ଲାଭକରି ହାତରେ ଧନୁ ଧରି ପ୍ରହରୀ ଅସୁରମାନଙ୍କୁ ନିମିଷକରେ ନିଧନ କଲେ । ବନ୍ଦୀଶାଳାରେ ଗୋଳ ଶୁଣି ସହସ୍ରଶିରାର ପୁତ୍ର ଶତେଶିରା ବହୁସୈନ୍ୟ ନେଇ ଶ୍ରୀରାମଙ୍କୁ ଆକ୍ରମଣ କଲା । ବୀର ହନୁମାନ ତା'ର ପଥରୋଧ କରନ୍ତେ ଶତେଶିରା ମହାକ୍ରୋଧରେ ହନୁମାନଙ୍କ ଉପରକୁ ଜ୍ୱାଳାବଳୀ ଶର ନିକ୍ଷେପ କଲା । ଜ୍ୱାଳାବଳୀ ଶର ହନୁମାନଙ୍କ ଦେହରେ ବାଜି ପ୍ରଚଣ୍ଡ ବେଗରେ ଅନଳ ଜଳି ଉଠିଲା । ହନୁମାନ କ୍ଷଣକ ମଧ୍ୟରେ ସେହି ଅନଳଦ୍ୱାରା ବଳଙ୍କାପୁର ଧ୍ୱଂସ କରି ଶ୍ରୀରାମଙ୍କୁ ନେଇ ପ୍ରଚଣ୍ଡ ପର୍ବତକୁ ଫେରି ଆସିଲେ । ବଳଙ୍କାଧୀପ ବିଶ୍ୱକର୍ମାଙ୍କୁ ଡକାଇ ସେହି ରାତ୍ରିରେ ନୂତନପୁର ନିର୍ମାଣ କରାଇ ରାମଚନ୍ଦ୍ରଙ୍କ ବଧ ନିମିତ୍ତ ତ୍ରିଶିରାପୁରକୁ ପ୍ରେରଣ କଲା । ଅମୃଦୈତ୍ୟ, ଜମ୍ବୁଦୈତ୍ୟ ଓ ତ୍ରିଶିରା ତିନି ବୀର ମିଶି ଶ୍ରୀରାମଙ୍କ ଉପରେ ଆକ୍ରମଣ କଲେ ଏବଂ ପଲକକ ମଧ୍ୟରେ ଶ୍ରୀରାମ ସେ ତିନିଙ୍କୁ ବିନାଶ କଲେ । ବଳଙ୍କାପୁର ଅନନ୍ୟୋପାୟ ହୋଇ ଅମ୍ବା, କଦମ୍ବା, କୁମ୍ଭା, ପ୍ରଲମ୍ବାସୁରଙ୍କୁ ନେଇ ଶ୍ରୀରାମଙ୍କୁ ଆକ୍ରମଣ କଲା । ଦେବତାମାନଙ୍କ ଆଦେଶରେ ଚିତ୍ରସେନ ଶ୍ରୀରାମଙ୍କ ଲାଗି ଗୋଟିଏ ଦେବରଥ ନେଇ ଆସି ପହଞ୍ଚିଲେ । ରାମଚନ୍ଦ୍ର ସେଥିରେ ବସି ଅମ୍ବା, କଦମ୍ବା, ପ୍ରଲମ୍ବାକୁ ନାଶ କରନ୍ତେ ବଳଙ୍କା ନରେଶ ଛତ୍ରଭଙ୍ଗ ଦେଇ ଯୁଦ୍ଧରୁ ପଳାୟନ କଲା । ସହସ୍ରଶିରାର ଗଡ଼ରେ ପ୍ରବେଶ କରି ନିଦ୍ରାରେ ଶ୍ରୀରାମ ତା'ର ଗଡ଼ ଧ୍ୱଂସ କରି ଲୁହାଲଙ୍ଗଳ ବୁଲଉଥିବାର ସ୍ୱପ୍ନ ଦେଖି ରାଣୀମାନଙ୍କ ଆଗରେ ପ୍ରକାଶ କଲା । ମହାରାଣୀ ଚନ୍ଦ୍ରକାନ୍ତ ଶ୍ରୀରାମଙ୍କ ନିକଟରେ ଶରଣ ପଶିବାଲାଗି ବଳଙ୍କାସୁରକୁ ଅନୁରୋଧ କଲା । କିନ୍ତୁ ମହାରାଣୀଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ପୁତ୍ରଶୋକରେ ବିପନ୍ନ ଅସୁରରାଜ ପାଞ୍ଚରାତ୍ର ପର୍ଯ୍ୟନ୍ତ ଶ୍ରୀରାମଙ୍କ ସହିତ ଘୋର ଯୁଦ୍ଧ ଆରମ୍ଭ କଲା । ଯୁଦ୍ଧରେ ଅସୁରକୁ ମାରିନପାରି ରାମଚନ୍ଦ୍ର ଚିନ୍ତାମଗ୍ନ ହୋଇ ବସିଲେ ଏବଂ ଚିତ୍ରରଥ ଅତିଶୀଘ୍ର ଯୁଦ୍ଧ-କ୍ଷେତ୍ରକୁ ସୀତାଦେବୀଙ୍କୁ ଆଣିବା ଲାଗି ଶ୍ରୀରାମଙ୍କୁ ଅନୁରୋଧ କଲେ । ନିଜର ଅନିଚ୍ଛାସତ୍ତ୍ୱେ ବାଧ୍ୟ ହୋଇ ରାମଚନ୍ଦ୍ର ଶକ୍ତିମତୀ ସୀତାଦେବୀଙ୍କୁ ଅଣାଇବା ଲାଗି ହନୁମାନଙ୍କୁ ପଠାଇଲେ । ଅଯୋଧ୍ୟାରେ ସୀତାଦେବୀ ଏହା ଶୁଣି ମନେ ମନେ ଆନନ୍ଦିତା ହେଲେ ଏବଂ ପରଦିନ ପ୍ରଭାତରୁ ଲକ୍ଷ୍ମଣ ଓ ହନୁମାନଙ୍କ ସହିତ ସୁମନ୍ତ୍ରଙ୍କ

ସଜ୍ଜିତ ରଥରେ ବସି ବିଲଙ୍କା ଦେଶକୁ ପ୍ରସ୍ଥାନ କଲେ । ସୀତାଦେବୀଙ୍କ ଉପସ୍ଥିତିରେ ରାମଚନ୍ଦ୍ର ବ୍ରହ୍ମଶର ଦ୍ୱାରା ସହସ୍ରଶିରା ରାବଣକୁ ନିଧନ କରି ଅଯୋଧ୍ୟାକୁ ଫେରି ଆସିଲେ ।”

କବି ଜଗନ୍ନାଥ ପାଣି ବିଲଙ୍କା ରାମାୟଣ ରଚନାଟିକୁ ରୋଚକ କରିବା ଦୃଷ୍ଟିରୁ ଯୁଦ୍ଧ ପ୍ରସଙ୍ଗରେ କେତେକ କପୋଳକଳ୍ପିତ ବର୍ଣ୍ଣନା ଏଥିରେ ସଂଯୋଗ କରିଛନ୍ତି । ବିଶେଷକରି ନାଭିଦୈତ୍ୟ ବଧ ପ୍ରସଙ୍ଗରେ କବିଙ୍କର କଳ୍ପନା ଚରମ ଉତ୍କର୍ଷାଧାୟକ ହୋଇଛି । ଏହି ପ୍ରସଙ୍ଗରେ କୁହାଯାଇପାରେ ଯେ, ନାଭିଦୈତ୍ୟ ନିଜ ମାତା ସୁରେଖୀଙ୍କ ସ୍ତନ୍ୟପାନ କରି ମହାବଳବର୍ଯ୍ୟଶାଳୀ ହୋଇ ଉଠିଥିବା ପ୍ରସଙ୍ଗ ସୁଦୂର ଆଇଲାଣ୍ଡରେ ପ୍ରଚାରିତ୍ୟରେ ରହିଛି । ଆଇଲାଣ୍ଡର ଜନଶ୍ରୁତିରୁ ଜଣାଯାଏ ଯେ, ମନ୍ଦୋଦରୀଙ୍କ କ୍ଷୀରପାନ କରି ଇନ୍ଦ୍ରଜିତ ମହାବଳଶାଳୀ ହୋଇ ଉଠିଥିଲେ । ଲକ୍ଷ୍ମଣଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ଥାଇ ଇନ୍ଦ୍ରଜିତ ଯେତେବେଳେ ନିଜକୁ ବଳହୀନ ବୋଲି ମନେକରନ୍ତି, ଠିକ୍ ସେତିକିବେଳେ ସେ କୌଶଳର ସହିତ ଯୁଦ୍ଧକ୍ଷେତ୍ରରୁ ପଳାଇଯାଇ ମନ୍ଦୋଦରୀଙ୍କ ସ୍ତନପାନ କରନ୍ତି । କେବଳ ଏହା ଯେ କିମ୍ବଦନ୍ତୀ ଆକାରରେ ଆଇଲାଣ୍ଡରେ ପ୍ରଚଳିତ ତା' ନୁହେଁ, ମନ୍ଦୋଦରୀଙ୍କର ସ୍ତନପାନ କରୁଥିବା ଇନ୍ଦ୍ରଜିତର ପ୍ରସ୍ତରମୂର୍ତ୍ତି ଆଇଲାଣ୍ଡରେ ଦେଖିବାକୁ ମିଳେ ।

ଅନ୍ୟାନ୍ୟ ପ୍ରସଙ୍ଗର ଆଲୋଚନାରୁ ଜଣାଯାଏ ଯେ, କବି ଜଗନ୍ନାଥ ପାଣି ଅନ୍ୟାନ୍ୟ ଗୀତାଭିନୟ ଗୁଡ଼ିକରେ ଯେପରି କରୁଣ ରସର ଉତ୍ସ ଫୁଟାଇ ପାରିଛନ୍ତି, ପ୍ରସ୍ତୁତ ଗୀତାଭିନୟରେ ମଧ୍ୟ ସପ୍ତଶିରାର ମୃତ୍ୟୁରେ ତା'ର ପତ୍ନୀ ସୁରେଖୀ ମୁଖରେ ଓ ଶତଶିରାର ମୃତ୍ୟୁରେ ସହସ୍ରଶିରା ମୁଖରେ କରୁଣ ରସର ଧାରା ଅବ୍ୟାହତ ରଖିଛନ୍ତି ।

ସାରଳା ଦାସଙ୍କ ବିଲଙ୍କା ରାମାୟଣର ଖଳ ଦୁଷ୍ଟ ଚରିତ୍ରକୁ କବି ଜଗନ୍ନାଥ ପାଣି ଖଳ ଓ ଦୁର୍ବଳ ରୂପେ ବର୍ଣ୍ଣନା କରିଛନ୍ତି ଏବଂ ଅନ୍ୟାନ୍ୟ କେତୋଟି ପ୍ରସଙ୍ଗ ଅବିକଳ ଭାବରେ ସାରଳା ଦାସଙ୍କ ବିଲଙ୍କା ରାମାୟଣରୁ ଗ୍ରହଣ କରିଛନ୍ତି ।

“ଅନ୍ତଃପୁର ମଧ୍ୟେ ରାମ ବସିଷ୍ଟଙ୍କ ପାଶେ,
ରାବଣ ବିନାଶ କଥା କହନ୍ତି ହରଷେ ।
ଶ୍ରେମୁନି ଅନେକ ଦୁଃଖ ପାଇଲି ବନେଣ,
ଅନେକ କଷ୍ଟରେ ମୁଁ ଯେ ମାରିଲି ରାବଣ ।
ଶୁଣିଣ ଜାନକୀଦେବୀ ଖଳବଶ ହୋଇ,
ଇଙ୍ଗିତେ କହନ୍ତି ଯେ ଶ୍ରୀରାମ ମୁଖ ଚାହିଁ ।
ପ୍ରଭୁ ହୋଇ ମିଥ୍ୟା କଥା କହିଲ ଗୋସାଇଁ,
ଲଙ୍କାର ରାବଣକୁ ହିଁ ବଧିଜଲି ମୁହିଁ ।

ଯେବେ ବଧିଅଛ ପ୍ରଭୁ ବିଶ୍ରବାନନ୍ଦନ,
ଏବେ ଯାଇ ମାରନ୍ତ ସେ ବାଲଙ୍କା ରାବଣ ।
ତେବେ ସେ ଜାଣିମା ପ୍ରଭୁ ତୁମ୍ଭ ବଡ଼ପଣ,
କହେ ଜଗନ୍ନାଥ ଶୁଣି କୋପକଲେ ରାମ ।"

କବି ଜଗନ୍ନାଥ ପାଣି ଜଣେ ଆଦର୍ଶ ନୀତିବାଦୀ ଥିଲେ । ସେ ତାଙ୍କର ପ୍ରତ୍ୟେକ ଗୀତାଭିନୟରେ ସମାଜରେ ପ୍ରଚଳିତ ନୀତି ପ୍ରତି ଅଳେହେଲେ ଉପେକ୍ଷା କରିନାହାନ୍ତି । ପ୍ରସ୍ତୁତ ବାଲଙ୍କା ଚରିତରେ ମଧ୍ୟ ମାୟାବତୀ ସୁରେଖୀ ଓ ହନୁମାନଙ୍କ କଥୋପକଥନରେ କବିଙ୍କ ଅନ୍ତର୍ନିହିତ ଭାବନା ସାକାର ହୋଇ ଉଠିଛି । ନାଭିଦୈତ୍ୟର ନିଧନରେ ସୁରେଖୀ ସ୍ୱର୍ଗ ଅପ୍ସରା ପରି ମାୟା ରୂପରେ ସଜ୍ଜିତା ହୋଇ, ବପୁଳବନର ସୁରସେନ ମହାରାଜାଙ୍କ ରାଜଜେମା ସୁରସେନା ନାମରେ ପରିଚୟ ଦେଇ, ଶ୍ରୀରାମଙ୍କ ନିକଟରେ ଆଶ୍ରୟପ୍ରାର୍ଥିନୀ ହେଲା । ଆନ୍ତୁର ମଧ୍ୟ ଶ୍ରୀରାମଚନ୍ଦ୍ର ସୁରସେନାକୁ ଜାନକୀଙ୍କର ପ୍ରିୟସଖୀ ରୂପେ ଜାଣି ଆଗ୍ରହର ସହିତ ହନୁମାନଙ୍କ ତତ୍ତ୍ୱାବଧାନରେ ତାକୁ ଏକ ଗିରଗୁମ୍ଫାରେ ଆଶ୍ରୟ ଦେଲେ । କିନ୍ତୁ ମାୟାବିନୀ ଦାନବୀ ଶ୍ରୀରାମ ଓ ହନୁମାନଙ୍କ ପ୍ରାଣ ବିନାଶ କରିବା ଅଭିପ୍ରାୟରେ ଆସିଥିବାରୁ ନିଶାର୍ଦ୍ଧରେ ହନୁମାନଙ୍କଠାରେ ପ୍ରଣୟ ନିବେଦନ କଲା । କିନ୍ତୁ ଆଜନ୍ମ ବ୍ରହ୍ମଚାରୀ ଶ୍ରୀରାମଭକ୍ତ ବୀର ହନୁମାନ ଛଦ୍ମବେଶିନୀର ବାଗ୍‌ଜାଲରେ ନ ଭୁଲି ତାକୁ ଯଥୋଚିତ ଉପଦେଶ ଦେଇଥିଲେ ।

"ମାୟାବତୀ ବାଣୀ ଶୁଣି ଅଞ୍ଜନା ନନ୍ଦନ,
ପରଦାରା ଭୟେ ହୃଦ କରେ କମ୍ପମାନ ।
କୃତାଞ୍ଜଳି ହୋଇଣ କହଇ ଲାଜପାଇ,
ଏମନ୍ତ ବଚନ ମୋତେ ନାହିଁ କସ ପାଇଁ ।
ଜନକ ସୁତା ସଙ୍ଗାତ ଯେବେ ହେବ ତୋର,
ବେଭାରେ ତ ଗୁରୁଜନ ହୋଇବୁ ମୋହର ।
କୁଳ ସ୍ତ୍ରୀ ହୋଇ ତୋର ଏ ଦୂଷଣ ପଣ,
ଏହା ଶୁଣିଲେ କି ରାମ ରଖିବେ ଜୀବନ ।
ପରଧନ ପରସ୍ତ୍ରୀ ନ ଛୁଅଇଁ ମୁହିଁ,
ଏ ଗରଷ୍ଟ କଥା ଶୁଣି ହୃଦ ନ ସହଇ ।
ସ୍ତ୍ରୀ ବୋଲି କହିଲୁ, ସହିଲି ଏହି କଥା,
ବୋଲେ ଜଗନ୍ନାଥ ଆନ ହେଲେ କି ବଞ୍ଚନ୍ତା ।"

କବି ଜଗନ୍ନାଥ ପାଣିଙ୍କ ବାଲଙ୍କାଚରିତ ଉଭୟ ଦୃଶ୍ୟ ଓ ଶ୍ରାବ୍ୟ କାବ୍ୟର ଅନ୍ତର୍ଗତ ହୋଇପାରେ । ପ୍ରାଚୀନ ଲୀଳାଗୁଡ଼ିକ ପରି ବାଲଙ୍କାଚରିତକୁ ଗୀତାଭିନୟ ମାଧ୍ୟମରେ ଯେପରି ପରିବେଷଣ କରିହେବ, ଖଣ୍ଡିଏ ଉତ୍ତମ ଚରିତ କାବ୍ୟରୂପେ ମଧ୍ୟ ପୁସ୍ତକଟି ସର୍ବଜନାଦୃତ ହୋଇପାରିବ ।

କବି ଜଗନ୍ନାଥ ପାଣି ବାଲଙ୍କାଚରିତର ପ୍ରାପ୍ତ ଅଧିକାଂଶ ଛାନ୍ଦରେ ନିଜକୁ ଦ୍ୱିଜ ଜଗନ୍ନାଥ ରୂପେ ଭଣିତ କରିଛନ୍ତି । କେତୋଟି ଛାନ୍ଦରେ କେବଳ ଜଗନ୍ନାଥ ବୋଲି ରହିଛି । ଗୋଟିଏ ଦୁଇଟି ସ୍ଥାନରେ କବିବର ଜଗନ୍ନାଥ ବୋଲି ଥିବାର ଦେଖାଯାଏ; କିନ୍ତୁ କୌଣସି ସ୍ଥଳରେ ଜଗନ୍ନାଥ ପାଣି କିମ୍ବା ନାରବଂଶୀ ଜଗନ୍ନାଥ ବୋଲି ଉଲ୍ଲେଖ କରିନାହାନ୍ତି ।

"ବିଷ ଘାରନ୍ତେ ଜୀବନ ହାରିଲ ମାରୁତି,
ବୋଲେ କବି ଜଗନ୍ନାଥ ଶିଶୁମତି ।
× × ×
ମାରୁତି ବଚନ ଶୁଣି ହରଷ ଭରତ,
ଏ ରୂପେ କହଇ କବିବର ଜଗନ୍ନାଥ ।
× × ×
ବୋଲେ ଜଗନ୍ନାଥ କବି କୁଳ କଳାକାର,
ରଣ ଜୟ କରିଗଲେ କୌଶଲ୍ୟା କୁମର ।
× × ×
ବୋଲେ ଦ୍ୱିଜ ଜଗନ୍ନାଥ,
ଶୋକ ପାରାବାରେ ପଡ଼ିଣ ଜାନକୀ ଡାକେ ଆଯ ଆଯ ପୁତ୍ର ।
× × ×
ଶୁଣିଣ ଆନନ୍ଦ ହେଲେ ରଘୁକୁଳ ନାଥ,
ଗୀତରେ କହଇ କବି ଦ୍ୱିଜ ଜଗନ୍ନାଥ ।
× × ×
ରାବଣ ଆଗରେ ଯାଇ କାନ୍ଦିଣ କହିଲେ,
ବାଲଙ୍କା ଚରିତ ଦ୍ୱିଜ ଜଗନ୍ନାଥ ବୋଲେ ।
× × ×
ଅଯୋଧ୍ୟାରେ ପରବେଶ ରଘୁକୁଳ ସାଇଁ,
ଦ୍ୱିଜବର ଜଗନ୍ନାଥ ସେ ପଦେ ନମଇଁ ।
ସପ୍ତଶିର ଶେଷେ ପୃଥ୍ୱୀ ଭାର ହେଲା ନାଶ,
ସପ୍ତଶ ଛାନ୍ଦରେ କବି ଗୀତ କଲେ ଶେଷ ।"

---

# ହାରାବତୀ ହରଣ

ଅନ୍ୟାନ୍ୟ ଗୀତାଭିନୟ ଗୁଡ଼ିକ ପରି କବି ଜଗନ୍ନାଥ ପାଣିଙ୍କ ରଚିତ 'ହାରାବତୀ ହରଣ' ମହାଭାରତ ଆରଣ୍ୟକ ପର୍ବରୁ ସଂଗୃହୀତ ହୋଇଛି । ମହାଭାରତର ବହୁ କାଳ୍ପନିକ ତଥା ମନୋରଞ୍ଜକ କଥା ମଧ୍ୟରେ ହାରାବତୀ ଚରିତଟି ଅତ୍ୟନ୍ତ ହୃଦୟଗ୍ରାହୀ । ଇନ୍ଦ୍ର ଓ ରମ୍ଭାଙ୍କର ପୁତ୍ରୀ ହାରାବତୀର ଜନ୍ମ ପ୍ରସିଦ୍ଧ ହେରାପଞ୍ଚମୀରେ ହୋଇଥିଲା । 'ପୁର ବିଟପୀ ବଟ'ରେ ସେ 'ଚନ୍ଦ୍ରପ୍ରଭା' ପରି ଶୋଭାଶାଳିନୀ ହୋଇ ପାରିଥିଲା । ବ୍ରହ୍ମା ସର୍ଜନାରେ ତା' ପରି ସୁନ୍ଦରୀ ଆଉ କେହି ନଥିଲେ । ତେଣୁ ହାରାବତୀ ପନ୍ଦର ବର୍ଷ ବୟସରେ ପଦାର୍ପଣ କରନ୍ତେ ଇନ୍ଦ୍ର ଆକଟ କରି ନିଜ କଟକରେ ରଖିଲେ ।

ରାହୁ ବଂଶରେ ଜାତ କୁମ୍ଭକ ଅସୁରର ପୁତ୍ର ନିକୁମ୍ଭ ଅସୁର କଳେନ୍ଦ୍ର ଗିରି ନିକଟସ୍ଥ କାବେରୀ ନଦୀ ତୀରବର୍ତ୍ତୀ କାଳଞ୍ଜୁ ନଗରରେ ଦୁର୍ଗ ନିର୍ମାଣ କରି ବାସ କରୁଥିଲା । ସେ କାମାକ୍ଷୀଙ୍କ ବରରେ ତ୍ରିପୁରଜୟୀ ହୋଇଥିବାରୁ ତାହାର ନାମ ସ୍ମରଣରେ ଯମପୁରରେ ମଧ୍ୟ ଚମକ ସୃଷ୍ଟି ହେଉଥିଲା । ବତ୍ରିଶ ଲକ୍ଷଣଯୁକ୍ତା ବୃନ୍ଦାସୁର ନନ୍ଦିନୀ ଘନଲତା ଥିଲା ତା'ର ପାଟ ମହାଦେବୀ । ତା'ର ମନ୍ତ୍ରୀର ନାମ ଥିଲା ଅଗ୍ନିକେତୁ ଏବଂ ସେନାପତିର ନାମ ଥିଲା ବଜ୍ରକେତୁ । ଥରେ ଅଭିଷେକ ପୂର୍ଣ୍ଣିମାରେ ଦେବେନ୍ଦ୍ର ନଗରୀରେ ମହା ଉତ୍ସବ ଆରମ୍ଭ ହେଲା । ସଭାସଦ୍‌ମାନଙ୍କର ମନୋ-ବିନୋଦନ ଲାଗି ରମ୍ଭା ଅପ୍‌ସରୀ ଅପୂର୍ବ ଲାସ୍ୟଛଟାରେ ନୃତ୍ୟ ଆରମ୍ଭ କରୁଥିଲେ । ଏହି ସମୟରେ ଅକାଳ ବଜ୍ରପାତ ପରି ନିକୁମ୍ଭାସୁର ସ୍ୱର୍ଗ ଆକ୍ରମଣ କଲା । ଦାନବ ଗଣଙ୍କ ଆକ୍ରମଣରେ ଦେବେନ୍ଦ୍ର ସୁଧର୍ମା ତ୍ୟାଗ କରି ଅସ୍ତାଦ୍ରି ଶିଖରକୁ ପଳାଇଗଲେ । ସ୍ୱର୍ଗରେ ଇନ୍ଦ୍ରାଦି ଦେବଗଣଙ୍କୁ ନ ପାଇ ନିକୁମ୍ଭାସୁର ପୁରେ ପୁରେ ପ୍ରବେଶ କରି ଅନ୍ୱେଷଣ କଲା । ଏ ସମୟରେ ନନ୍ଦନ ବନରେ ବନ୍ଦିନୀ ଥିବା ସୁନ୍ଦରୀ ହାରାବତୀ ରଥାରୋହଣ କରି ପଳାୟନ କଲା । ନିକୁମ୍ଭ ଦାନବ ହାରାବତୀର ଅଙ୍ଗଶୋଭାରେ ବିମୁଗ୍ଧ ହୋଇ ତା'ର ପଥରୋଧ କରି ପରିଚୟ ପଚାରନ୍ତେ ସେ ନିଜର ସମ୍ପୂର୍ଣ୍ଣ ପରିଚୟ ଦେବା ସଙ୍ଗେ ସଙ୍ଗେ ଅଦ୍ୟାପି ବିବାହ କରିନାହିଁ ବୋଲି ପ୍ରକାଶ କଲା ।

ଅସୁରର ଉନ୍ମାଦାବସ୍ଥା ଲକ୍ଷ୍ୟ କରି ପର ସ୍ତ୍ରୀ ହରଣର ପରିଣାମ ସମ୍ବନ୍ଧରେ ଅନେକ ବୁଝାଇଲା; କିନ୍ତୁ ଅସୁର ସେ ପ୍ରତି ଟିକେ ହେଲେ ଭ୍ରୂକ୍ଷେପ ନକରି ବଳାତ୍କାରରେ କାମକଳା ଦାସୀ ସହିତ ହାରାବତୀକୁ ନେଇ ନିଜ ପୁରକୁ ପ୍ରସ୍ଥାନ କଲା ।

କିଛିଦିନ ପରେ ଦିନେ ନିକୁମ୍ଭିଲ ଦୈତ୍ୟ ହାରାବତୀପୁରରେ ପ୍ରବେଶ କରି, ତା' ନିକଟରେ ପ୍ରଣୟ ନିବେଦନ କଲା । କିନ୍ତୁ ଚତୁରୀ ହାରାବତୀ ବହୁ ଅନୁନୟ ବିନୟ ସହକାରେ ଅସୁରର କାମାନ୍ଧତା ଲକ୍ଷ୍ୟକରି ସେ କମାକ୍ଷୀଙ୍କ ବ୍ରତରେ ବ୍ରତଚାରିଣୀ ବୋଲି କହି ଆପାତତଃ ଅସୁର କବଳରୁ ରକ୍ଷାପାଇଗଲା ।

ପାଣ୍ଡବମାନେ ବନବାସ ଅବସରରେ ମହେନ୍ଦ୍ର ଶିଖରରେ ଅବସ୍ଥାନ କରୁଥିଲେ । ଦିନେ ଯୁଧିଷ୍ଠିରଙ୍କ ଆଦେଶମତେ ଅର୍ଜୁନ ଘଣ୍ଟା ଅନ୍ୱେଷଣରେ ଯାଇ କାଳାଞ୍ଜ ବନ ନିକଟବର୍ତ୍ତୀ କାମାକ୍ଷୀଦେବୀଙ୍କ ମନ୍ଦିର ନିକଟରେ ପହଞ୍ଚିଲେ । ସେଠାରେ ସେ ସ୍ନାନାର୍ଚ୍ଚନ ଶେଷକରି ଦେବୀଙ୍କ ଦର୍ଶନ ଉତ୍ତାରୁ ମଣ୍ଡପରେ ଶ୍ରାନ୍ତ ହୋଇ ଶୋଇ ପଡ଼ିଲେ । ଠିକ୍ ସେହିଦିନ କାମକଳା ସହିତ ହାରାବତୀ ଦେବୀ ଦର୍ଶନ ଉଦ୍ଦେଶ୍ୟରେ ମନ୍ଦିରରେ ପ୍ରବେଶ କଲେ ଏବଂ ଦର୍ଶନ ଉତ୍ତାରୁ ବେଢ଼ା ପ୍ରଦକ୍ଷିଣ କଲାବେଳେ ମହାବୀର ଅର୍ଜୁନଙ୍କୁ ସେଠାରେ ଶୋଇଥିବାର ଦେଖି ତାଙ୍କ ରୂପଜାଲରେ ବନ୍ଦିନୀ ହୋଇପଡ଼ିଲେ । ସଙ୍ଗେ ସଙ୍ଗେ ହାରାବତୀର ଶରୀରରେ ବିରହଦଶା ଜାଗ୍ରତହେଲା । ଏହା ଦେଖି ସଖୀ କାମକଳା ତାକୁ ଅନେକ ପ୍ରକାର ପ୍ରବୋଧନା ଦେଇ ପରପୁରୁଷ ପ୍ରତି ଏ ପ୍ରକାର ମନୋଭାବ ତ୍ୟାଗ କରିବା ଲାଗି ଉପଦେଶ ଦେଲା । କିନ୍ତୁ ବିରହିଣୀ ହାରାବତୀ କାମକଳାର ଉପଦେଶ ପ୍ରତି ଆଦୌ କର୍ଣ୍ଣପାତ କଲାନାହିଁ । ଶେଷରେ କାମକଳା ବାଧ୍ୟହୋଇ ଇନ୍ଦ୍ରଜାଲ ମହାମନ୍ତ୍ରରେ ଅର୍ଜୁନଙ୍କୁ ମୋହିତ କରାଇ ରଥରେ ବସାଇ ନିଜ କେଳିମନ୍ଦିରକୁ ନେଇଆସିଲା । ଧନଞ୍ଜୟଙ୍କର ଅପୂର୍ବ ରୂପଲାବଣ୍ୟ ଦେଖି ଅପ୍ସରୀବାଳା ହାରାବତୀ ଉନ୍ମାଦିନୀ ହୋଇ ଉଠିଲା ଏବଂ ରତ୍ନପଲଙ୍କରେ ଅର୍ଜୁନଙ୍କୁ ଶୁଆଇଦେଇ ତା'ର କୋଳରେ ଅର୍ଜୁନଙ୍କ ଶିର ନିବେଶ କଲା । କିଛି କ୍ଷଣ ପରେ ଅର୍ଜୁନଙ୍କର ମୋହ ଭଙ୍ଗ ହେଲା; କିନ୍ତୁ ସମ୍ମୁଖରେ ଏକ ଅପୂର୍ବ ସୌନ୍ଦର୍ଯ୍ୟଶାଳିନୀ ରମଣୀକୁ ଦେଖି ଚମକି ପଡ଼ି ସେ ବିସ୍ମିତ ହୋଇଉଠିଲେ । ଅର୍ଜୁନଙ୍କ ନିଦ୍ରାଭଙ୍ଗ ଦେଖି ବିରହିଣୀ ହାରାବତୀ ସଲଜ୍ଜବଦନରେ ସେହିଠାରେ ଛିଡ଼ାହୋଇ ସମସ୍ତ ପ୍ରକାର କାମ ଚେଷ୍ଟା ପ୍ରଦର୍ଶନ କଲା । ଅର୍ଜୁନ ଟିକେହେଲେ ସେଥିରେ ବିଚଳିତ ନ ହୋଇ ନିକଟରେ ଛିଡ଼ାହୋଇଥିବା କାମକଳାକୁ ସେଠାକାର ଅବସ୍ଥିତି ଓ ହାରାବତୀର ପରିଚୟ ଜାଣିବା ପାଇଁ ଅନେକ ପ୍ରଶ୍ନ ପଚାରିଲେ । କାମକଳା ହାରାବତୀର ଜନ୍ମଠାରୁ ଆରମ୍ଭ କରି କାମାକ୍ଷୀ ମନ୍ଦିରରେ ଅର୍ଜୁନଙ୍କର ସାକ୍ଷାତ ପର୍ଯ୍ୟନ୍ତ ସମସ୍ତ ଘଟଣା ବିଶଦ ଭାବରେ ବର୍ଣ୍ଣନା କଲା । ଏହାପରେ ଅର୍ଜୁନ ନିଜର ପରିଚୟ ଦେଇ ହାରାବତୀକୁ

ଉତ୍ସାହିତ କରାଇଲେ । ତତ୍ପରେ ହାରାବତୀ ଅର୍ଜୁନଙ୍କୁ ସ୍ୱାମୀ ରୂପରେ ବରଣ କରିବା ପାଇଁ ଆଗ୍ରହ ପ୍ରକାଶ କଲା; କିନ୍ତୁ ଅର୍ଜୁନ ଏହାର ପ୍ରତିବାଦ କରି, 'ପରଦାରା ହରଣ ମହାପାପ' ବୋଲି ନାନାପ୍ରକାର ଯୁକ୍ତି ଉପସ୍ଥାପିତ କଲେ । ଏହି ପ୍ରସଙ୍ଗରେ ହାରାବତୀ ମଧ୍ୟ ବ୍ରହ୍ମା-ସନ୍ଧ୍ୟାବତୀ, ସୁଭଦ୍ରା, ଋଷ୍ୟଶୃଙ୍ଗ-ଜରତା, ଶିବ-ଆଦିଶକ୍ତି, ବୃନ୍ଦା-ବିଷ୍ଣୁ ପ୍ରଭୃତିଙ୍କର ଉଦାହରଣ ଉପସ୍ଥାପିତ କଲା । କିନ୍ତୁ କୌଣସି ପ୍ରକାରେ ଅର୍ଜୁନଙ୍କର ମନ ବିଚଳିତ ହେଲା ନାହିଁ । ସେ ନାରୀମାନଙ୍କ ଯୋଗୁ କପରି ପୁରୁଷମାନଙ୍କର ଅଧୋପତନ ହୋଇଛି ସେହି ସମ୍ବନ୍ଧରେ ରାମାୟଣ, ମହାଭାରତରୁ ଅନେକ ଉଦାହରଣ ଉପସ୍ଥାପିତ କଲେ ।

ଅର୍ଜୁନଙ୍କର ସମସ୍ତ ପ୍ରକାର ନାସ୍ତିବାଚକ ଉତ୍ତରରେ ବିରହିଣୀ ହାରାବତୀ କାମଦଶାରେ ବ୍ୟଥିତା ହୋଇ ଅର୍ଜୁନଙ୍କ ଚରଣତଳେ ପଡ଼ି ନିଜର ପ୍ରଣୟ ନିବେଦନ କଲା । ତଥାପି ଅର୍ଜୁନଙ୍କର ପଥର ଛାତି ତଳେହେଲେ ତରଳିବାର ଆଶା ନ ଦେଖି ପ୍ରଣୟିନୀ ହାରାବତୀ ପ୍ରଚଣ୍ଡ କ୍ରୋଧରେ ଅର୍ଜୁନଙ୍କୁ ନପୁଂସକ ପ୍ରଭୃତି ଅନେକ ଗାଳି ଦେବା ସଙ୍ଗେ ସଙ୍ଗେ ପ୍ରାଙ୍ଗଣରେ ଥିବା ଜୀର୍ଣ୍ଣ କୂପରେ ମୋହ କରି ପକାଇଦେଲା ।

ଦିନେ ନିଶାର୍ଦ୍ଧରେ ସ୍ୱପ୍ନ ଦେଖି ନିକୁମ୍ଭାସୁର ହାରାବତୀ ପୁରରେ ପ୍ରବେଶ କଲା ଏବଂ ସେଠାରେ ମନୁଷ୍ୟର ସୁଗନ୍ଧ ହେଉଥିବାର ସନ୍ଦେହ ପ୍ରକାଶ କଲା । କିନ୍ତୁ ହାରାବତୀ କୌଣସିମତେ ଅସୁରରାଜାକୁ ସନ୍ତୁଷ୍ଟ କରାଇ ସେଠାରୁ ଫେରାଇଦେଲା ।

ଅର୍ଜୁନଙ୍କ ଆସିବାର ବିଳମ୍ବ ଦେଖି ଯୁଧିଷ୍ଠିର ସହଦେବଙ୍କୁ ସତ୍ୟକଥା ପଚାରିଲେ । ସେ କାମାକ୍ଷୀ ମନ୍ଦିରରୁ ଅର୍ଜୁନଙ୍କ ଅପହରଣଠାରୁ ଆରମ୍ଭ କରି ଜୀର୍ଣ୍ଣ କୂପରେ ପଡ଼ିବା ପର୍ଯ୍ୟନ୍ତ ସମସ୍ତ ଘଟଣା ଯୁଧିଷ୍ଠିରଙ୍କ ଆଗରେ ବର୍ଣ୍ଣନା କଲେ । ଏହି ସମୟରେ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ । ଶ୍ରୀକୃଷ୍ଣ ସେଠାରେ ଉପସ୍ଥିତ ହୋଇ ମୋହିନୀବେଶ ଧାରଣପୂର୍ବକ ହାରାବତୀ ପୁରରେ ପ୍ରବେଶ କଲେ । ମୋହିନୀରୂପୀ ଶ୍ରୀକୃଷ୍ଣ ହାରାବତୀ ସହିତ ସଙ୍ଗାରୁଣୀ ହେବାକୁ ଆସିଛନ୍ତି ବୋଲି ପରିଚୟ ଦେଇ ସେଠାରେ କିଛି ଦିନ ରହିଲେ ଏବଂ ହାରାବତୀ ସହିତ ଆତ୍ମୀୟତା ବଢ଼ାଇ ଅର୍ଜୁନର ଖବର ସଂଗ୍ରହ କଲେ ଏବଂ ସଖୀଙ୍କ (ଶ୍ରୀକୃଷ୍ଣ)ଙ୍କ ଅନୁରୋଧରେ ଜୀର୍ଣ୍ଣକୂପରୁ ଅର୍ଜୁନଙ୍କୁ ବାହାର କରି ଆଣିଲେ । ମୋହିନୀ (ଶ୍ରୀକୃଷ୍ଣ) ମାୟାବଳରେ ହାରାବତୀ ପ୍ରତି ଅର୍ଜୁନଙ୍କ ହୃଦୟରେ ଅନୁରାଗ ଜାତ କରାଇଲେ । ତହୁଁ ଅର୍ଜୁନ କାମଶରରେ ବ୍ୟଥିତ ହୋଇ ହାରାବତୀଠାରେ ପ୍ରଣୟ ନିବେଦନ କଲେ । କିନ୍ତୁ ସୁଚତୁରୀ ହାରାବତୀ ଅର୍ଜୁନଙ୍କର ନିବେଦନ ପ୍ରତ୍ୟାଖ୍ୟାନ କରିବା ଛଳରେ ଅଭିମାନପୂର୍ବକ ଅନେକ କଥା କହିଲେ । ତହୁଁ ମୋହିନୀରୂପୀ ଶ୍ରୀକୃଷ୍ଣ ନିଜରୂପରେ ସେ ଦୁହିଁଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଅର୍ଜୁନଙ୍କ ହସ୍ତରେ ହାରାବତୀକୁ ସମର୍ପଣ କଲେ ।

ଏହାପରେ ପଞ୍ଚପାଣ୍ଡବ ଓ ଶ୍ରୀକୃଷ୍ଣ କାଳାକ୍ଷ ନଗର ଆକ୍ରମଣ କଲେ ଏବଂ କକ୍ରୁମ୍ଭ ଓ ଅର୍ଜୁନଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ସଂଘଟିତ ହେଲା । ପରଶେଷରେ ସୂର୍ଯ୍ୟାବର୍ତ୍ତୀ ଶର ଦ୍ୱାରା ଅର୍ଜୁନ କକ୍ରୁମ୍ଭାସୁରକୁ ମାରି ହାରାବତୀ ଓ ଶ୍ରୀକୃଷ୍ଣଙ୍କ ସହିତ ସ୍ୱର୍ଗପୁରରେ ଉପସ୍ଥିତ ହେଲେ । ଇନ୍ଦ୍ରାଦି ଦେବଗଣ କକ୍ରୁମ୍ଭାସୁରର ବଧ ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ଅର୍ଜୁନ ଓ ହାରାବତୀଙ୍କର ଗାନ୍ଧର୍ବ ମତରେ ବିବାହ ସମ୍ପନ୍ନ କରାଇ ଅନେକ ଯୌତୁକ ପ୍ରଦାନପୂର୍ବକ ବରକନ୍ୟାଙ୍କୁ ବିଦାୟ ଦେଲେ ।

ପ୍ରସ୍ତୁତ ଗୀତାଭିନୟ 'ହାରାବତୀ ହରଣ' ଖଣ୍ଡିଏ ଆଦରସାମୂଳ ଦୃଶ୍ୟ କାବ୍ୟ । ଗୀତାଭିନୟଟି ପଞ୍ଚତିରିଶ ଛାନ୍ଦରେ ଶେଷ ହୋଇଛି । କବି ଜଗନ୍ନାଥ ପାଣି ପ୍ରତ୍ୟେକ ଛାନ୍ଦରେ ନିଜର ନାମ ଭଣିତା କରିଥିଲେହେଁ ଶେଷ ଛାନ୍ଦରେ ଛାନ୍ଦ ସଂଖ୍ୟା, ବାସସ୍ଥାନ ଓ ବଂଶ ପରିଚୟ ଆଦି ସଂକ୍ଷେପରେ ବର୍ଣ୍ଣନା କରି ଆଲୋଚକ-ମାନଙ୍କର ମାର୍ଗ ପ୍ରଶସ୍ତ କରିଅଛନ୍ତି ।

"ତାହାଙ୍କ ଚରଣ ଧ୍ୟାୟି କବି ଜଗନ୍ନାଥ,
ପଞ୍ଚତ୍ରିଂଶ ଛାନ୍ଦେ ପୂର୍ଣ୍ଣ କଲେ ଏହି ଗୀତ ।
କଳାଙ୍ଗ ନିଳୟ ନାର କୂଳ କଳାକର,
ଶାରଦା ଚରଣେ ରତି ରହୁ କବିନ୍ଦ୍ରର ।"

କବି ସ୍ୱରଚିତ ଅନ୍ୟାନ୍ୟ ଗୀତାଭିନୟ ଗୁଡ଼ିକ ଅପେକ୍ଷା ପ୍ରସ୍ତୁତ ଗୀତାଭିନୟ-ଟିକୁ ଯମକ ଓ ଅନୁପ୍ରାସ ଆଦି ଅଲଙ୍କାରରେ ଅଧିକ ଚମତ୍କୃତ କରିଛନ୍ତି । ଅବଶ୍ୟ 'ଯମକ' ପ୍ରୟୋଗ କବିଙ୍କର ଏକ ସ୍ୱଭାବସୁଲଭ ଗୁଣ । ସେ ପ୍ରତ୍ୟେକ ଛାନ୍ଦ ରଚନାରେ ପ୍ରାୟ ଅନେକ ସ୍ଥଳରେ 'ଯମକ' ବିନ୍ୟାସ କରି ତତ୍କାଳୀନ ସାମାଜିକଙ୍କ ଶ୍ରଦ୍ଧାଭାଜନ ହୋଇ ପାରିଥିଲେ । ଯମକ ପ୍ରୟୋଗ ସର୍ବସାଧାରଣ ପାଠକଙ୍କ ପକ୍ଷରେ ଅର୍ଥବୋଧକ ନ ହେଲେହେଁ ଶ୍ରୁତିସୁଖକର ହୋଇଥାଏ । କବି ଅନ୍ୟାନ୍ୟ କାବ୍ୟ ଅପେକ୍ଷା ପ୍ରସ୍ତୁତ ଗୀତାଭିନୟର ପ୍ରତ୍ୟେକ ଗୀତର ପ୍ରାୟ ସମସ୍ତ ପଦ ଯମକ ଓ ଅନୁପ୍ରାସମୟ କରିବାର ପ୍ରୟାସ କରିଛନ୍ତି ।

"ବଦନ ମଦନ ମଦ ମନ୍ଦାକ୍ଷ ସୁରୁଚି,
ସୁରବଟପୀ ବଟରେ ଚନ୍ଦ୍ରପ୍ରଭା ପରି ।
ଦର୍ପଣ ଦର୍ପ ଜଳକ ଅର୍ପଣ ପ୍ରଭପେ,
ହାସକନ୍ୟା ପ୍ରେମପାଶ କଟାକ୍ଷ ପ୍ରକାଶେ ।।" (ପ୍ରଥମ ଗୀତ)

ଦିନେ ବଳାବାଡ ଅବାଡ ବାଡରେ ହାରାବତୀ ପାଶେ ଯାଇ
କାମବଶେ ବାମ ହୋଇ ବାମନେତ୍ରୀ ବାମରେ ବସି କହଇ ।

× × ×

ରସାଳଜଘନା ରସାଇଲେ ସିନା ରସଇ ମନସାରସ
ଯୁବା ଯଉବନ ଇକ୍ଷୁରସ ସମ ପୀଡ଼ିଲେ ଦ୍ରବଇ ରସ ॥
(ଏକାଦଶ ଗୀତ)

ପ୍ରେମ ମଧୁସିନ୍ଧୁ ବଧୂ ମଧୁର ହାସିନୀ
ବିଶ୍ୱମୃରାହାରା ହାରାବତୀ ସୀମନ୍ତିନୀ ॥

× × ×

ମଙ୍ଗଳା ଧାଇଁ ମଙ୍ଗଳଦାୟି ସୁମଙ୍ଗଳେ ।
ଧୀରେ ଧୀରେ ଆସେ ଧୀରା ଶୁଭ ଅନୁକୂଳେ ॥
(ତ୍ରୟୋଦଶ ଗୀତ)

ବଢ଼ି ବଢ଼ି କଦମ୍ବ ଗଡ଼ଗଡ଼ ମୋ ଦମ୍ଭ ଭାଜିଲା ଦାଏ ହୁଡ଼ ହୁଡ଼ ସେ ॥

× × ×

ହାଇକି ଘନ ଘନ ମାରଇ ଛନ ଛନ କାହିଁକି ମନ ମନ କରି
ମଦନେ ଘାରି ଘାରି ବଦନେ ଠାଇ ଠାଇ କହଇ ଆଖି ମାରି ମାରି ସେ ॥
(ଊନବିଂଶ ଗୀତ)

ସମକାଳୀନ କାବ୍ୟର ନାୟିକା ବର୍ଣ୍ଣନା ପରି କବି ଜଗନ୍ନାଥ ହାରାବତୀର ନଖ ଶିଖ ବର୍ଣ୍ଣନା କରି ସ୍ୱ-କବିତ୍ୱର ପ୍ରକୃଷ୍ଟ ପରିଚୟ ଦେବା ସଙ୍ଗେ ସଙ୍ଗେ କବି ନରସିଂହ ସେଣ, ଧନଞ୍ଜୟ ଭଞ୍ଜ, ବିଷ୍ଣୁ ଦାସ ଓ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପଦାଙ୍କ ଅନୁସରଣ କରିଛନ୍ତି ।

"ଅପୂର୍ବ ଅମ୍ବୁଜମୁଖ ଚନ୍ଦ୍ରରୁ ଅଧିକ,
ଲାଜପାଇ କ୍ଷୀରଶାୟୀ ହୋଇଲା ଶଶାଙ୍କ ।
ନୟନ ତରଙ୍ଗ ଗୃହି କୁରଙ୍ଗ ଖଞ୍ଜନ,
ଗିରିଗହ୍ୱରେ ପଶିଲେ ହୋଇ ଅତି ଛନ୍ନ ।
ଭ୍ରୂଭଙ୍ଗୀ ଦେଖି ଦୂରୁ ମଦନକମାଣ,
ଅଞ୍ଜନ ଗଞ୍ଜନ ସିଞ୍ଚନରେ ଛାଡ଼େ ପ୍ରାଣ ।"

× × × ×

"ସରୁକଟୀ ଗୃହି ସିଂହ ମେରୁ ଆଶ୍ରାକଲେ,
ଗତିକି ଅନାଇଁ ଗଜ ଦିଗନ୍ତ ହୋଇଲେ ।
ଉଚ୍ଚ କୁଚ ଗୃହି ଜଳେ ଝାସିଲା ମନ୍ଦର,
କେଶ ଅନୁସରି ପୁଚ୍ଛେ ରହିଲା ଚାମର ॥"

କବି ଜଗନ୍ନାଥ ପାଣି କରୁଣରସ ବର୍ଣ୍ଣନାରେ ବିଶେଷ ଦକ୍ଷତା ପ୍ରଦର୍ଶନ କରିଥିଲେହେଁ, ତାଙ୍କ ଲେଖନୀରୁ 'ହାସ୍ୟବତୀ ହରଣ' ଗୀତାଭିନୟରେ ଆଦିରସର

ଯେଉଁ ରସମୟୀ ଧାରା ପ୍ରବାହିତ ହୋଇଛି, ରସିକ ପାଠକ ଓ ରସଜ୍ଞ ସାମାଜିକମାନଙ୍କ ପକ୍ଷରେ ତାହା ଅତ୍ୟନ୍ତ ମନୋଜ୍ଞ ତଥା ରସପେଶଳ ହୋଇପାରିଛି । କବି ଜଗନ୍ନାଥ ପାଣି ନିକୁମ୍ଭାସୁର ଓ ହାସ୍ୟବତୀର ଉକ୍ତି ପ୍ରତ୍ୟୁକ୍ତି ତଥା ବୀରବର ଅର୍ଜ୍ଜୁନଙ୍କୁ ପ୍ରାଣପ୍ରିୟ ରୂପେ ପାଇବା ପାଇଁ ହାସ୍ୟବତୀର କାମଚେଷ୍ଟା ପ୍ରଦର୍ଶନ ପ୍ରକରଣରେ ଆଦିରସର ବର୍ଣ୍ଣନା ବିସ୍ତୃତ ଭାବରେ କରିଛନ୍ତି । ରସଜ୍ଞ ପାଠକ ଓ ଜିଜ୍ଞାସୁ ସମାଲୋଚକମାନଙ୍କ ଅବଗତି ନିମିତ୍ତ କବିଙ୍କ ବର୍ଣ୍ଣନା ପ୍ରକରଣରୁ କେତେକାଂଶ ଏଠାରେ ପ୍ରଦତ୍ତ ହେଲା ।

"ବସ୍ତ୍ରତୋଳ ଜାନୁ କଦଳୀ ଭେଳାରେ କାମସିନ୍ଧୁ କର ପାର
ନିବଡ଼ ଜଙ୍ଘକୁ ଦୃଢ଼ବନ୍ଧେ ଭିଡ଼ି ସ୍ମରର ପ୍ରାଣ ଯାଉ ହରି
ଆରେ ଆରେ ସୁନ୍ଦରୀ !
ମୁହିଁ ଶରଣଜନ ତୋହର" ॥
(ଏକାଦଶ ଗୀତ)

ଧନଞ୍ଜୟ ଧୈର୍ଯ୍ୟକୁ ଅସ୍ଥିର କରିବାରେ,
ନାନାଭଙ୍ଗୀ କଟାକ୍ଷ ପ୍ରକାଶେ ବିରହରେ ॥

× × ×

କବରୀ ଖସାଇ ଖୋସେ ଖୋସଣୀ ବାମୋରୁ ।
ନାସାପୁଡ଼ା ଫୁଲାଇ ନଚାଇ ଦିଏ ଭୂରୁ ॥

× × ×

ପିନ୍ଧି ପିନ୍ଧି ବସନକୁ ପକାଏ ଖସାଇ,
କଟୀ ଚନ୍ଦ୍ରହାର ଗଳପଡ଼େ ଜାନୁଦେଇ ॥
ବସନ ବିହୀନେ ଶୋଭା ଦିଶେ କୁଚ ବେନି ।
ଜାନୁସନ୍ଧି ସନ୍ଧିତେ ମଦନ ରାଜଧାନୀ ॥
(ଦ୍ୱାବିଂଶ ଗୀତ)

ଜାନୁ ଜାନୁ ଛନ୍ଦି ଦେଇ ଅର୍ଜ୍ଜୁନ କଟୀକି ।
ଥନୁ ଅନୁପ୍ରାସେ ଉଚ୍ଚା ଧରଇ ସ୍ତନକ ॥
ସେହି ସେହି ଶେଯେ ଶୋଏ ଉତାନିସ୍ୱା ଧରି ।
ଏହି ଏହି କାମଦ୍ୱାର ଦେଖାଏ ବିସ୍ତାରି ॥
ଗୋଟି ଗୋଟି ଲୋମ ବିଲୋମରେ ଆସେ ଉଠି ।
ପ୍ରବାଳ ପଲ୍ଲବେ ନବଦୂର୍ବା ଛନ୍ତି ଯୋଟି ॥
ନିତମ୍ବ ବିମ୍ବ ଦେଖାଇ ଚରଣ ଟେକଇ ।
ଚୁମ୍ବିଦେବା ଆଶେ ଗଣ୍ଡ ମୂଳକୁ ନୁଆଇଁ ॥
(ଚତୁର୍ବିଂଶ ଛାନ୍ଦ)

କବି ଜଗନ୍ନାଥ ପ୍ରସଙ୍ଗକ୍ରମେ ତଥାକଥିତ ଅସାମାଜିକ ତଥା ଅଶ୍ଳୀଳ ବର୍ଣ୍ଣନା କରିଥିଲେହେଁ, ସମାଜର ନୀତି ସମ୍ବନ୍ଧରେ ଆଦୌ ଉପେକ୍ଷା ପ୍ରଦର୍ଶନ କରିନାହାନ୍ତି । ଜଣେ ସମ୍ଭ୍ରାନ୍ତ ବଂଶର ଯୁବକ ପକ୍ଷରେ ଯେଉଁ ଯେଉଁ ଅତିମାନବୀୟ ଗୁଣାବଳୀ ରହିବାର କଥା କବି ଅର୍ଜ୍ଜୁନଙ୍କଠାରେ ସେ ସମସ୍ତ ଗୁଣ ଠୁଳ କରିଛନ୍ତି । ନବଯୌବନା ସ୍ୱର୍ଗ ସୁନ୍ଦରୀ ଭାଗବତୀ ସମସ୍ତ ପ୍ରକାର କାମଚେଷ୍ଟା ପ୍ରଦର୍ଶନ କରିଥିଲେହେଁ, ଅର୍ଜ୍ଜୁନ ସେଥିପ୍ରତି ଆଦୌ ଆକୃଷ୍ଟ ହୋଇନଥିଲେ । ସାଧାରଣ କ୍ଷେତ୍ରରେ ଯୁବକମାନେ ନାରୀର କମନୀୟ ରୂପଜ୍ୱାଳାରେ ପତଙ୍ଗ ସଦୃଶ ଝାସ ଦେଉଥିବା ବେଳେ, କବି ଅର୍ଜ୍ଜୁନଙ୍କ ମୁଖରେ ନୀତି ବାଣୀ ଶୁଣାଇ ଉଚ୍ଛୃଙ୍ଖଳ ଯୁବସମାଜକୁ ପରୋକ୍ଷରେ ନୀତିଶିକ୍ଷା ଦେଇଛନ୍ତି ।

"ବୀରବର କହେ ସଖି ହୋଇଲୁ କି ବାଇ
ଏହି କଥା କହିଲେ କି ଅର୍ଜ୍ଜୁନ ବୁଝାଇ
ରେ ପ୍ରିୟ ସହି,
ପ୍ରମଦା ପ୍ରୀତି ପ୍ରମାଦ ପ୍ରୟୋଜନ ନାହିଁ ॥
× × ×
ବଡ଼ଶୀକଣ୍ଟା ବଡ଼ ସିହାଣୀଙ୍କ ଯୌବନ ।
ଦେଖାଇ ଅଙ୍ଗ ଚଖାଇ ଛୁଟି ନ୍ୟନ୍ତି ପ୍ରାଣ
ରେ ପ୍ରିୟ ସହି,
ବୈରେଚନ ବନାଣ ମାଳତୀ କନ୍ୟା ପାଇଁ ॥
(ଯସ୍ୟୋବଂଶ ଛନ୍ଦ)

ଅର୍ଜ୍ଜୁନ କହଇ ଶୁଣ ଚନ୍ଦ୍ରମୁଖି ମୋହର ଅଛି ନିୟମ ।
ପରର ସମ୍ପତ୍ତି ପରଦାନ ବୃତ୍ତି ନ ହରଇ ପରସ୍ତ୍ରୀ ପରଧନ ॥
× × ×
ଚନ୍ଦ୍ରାପରା ତୋର ଜନନୀରେ ଧୀରା ଇନ୍ଦ୍ର ପ୍ରିୟ ବିଳାସିନୀ
ସେ ଇନ୍ଦ୍ର ମୋହର ସହୋଦର ପିତା ବୁଝରେ ତୁ ହୋଇଲୁ
ମୋର ଭଉଣୀ ।
× × ×
ସେହି ଲାଗି ବ୍ରହ୍ମା ବୈକୁଣ୍ଠକୁ ସିନା ଲଙ୍ଘନରେ ନପାରେ ଯାଇ
ଦଣ୍ଡରେ ଜିବାର ସ୍ନାନ କରି ତା'ର ଅଙ୍ଗ ଯାକେ ସନ୍ଧ୍ୟା ଦୋଷ
ଛୁଡ଼ିନାହିଁରେ ॥
× × ×

"ଏ ସୃଷ୍ଟି ସର୍ଜନା ଯାଇ ଯେବେ ବ୍ରହ୍ମା ପୃଥ୍ୱୀ ପ୍ରଳୟ ହୋଇବ,
ଜଗନ୍ନାଥ କହେ ତେବେ ସେ କେବେହେଁ
ତୋହ ମୋହ ପ୍ରୀତ ନୋହିବରେ ସୁନ୍ଦରୀ" ॥

(ଏକବିଂଶ ଛାନ୍ଦ)

'ଭକ୍ତର ଭଗବାନ' ଉକ୍ତି ଚରିତାର୍ଥ କରିବା ଲାଗି ଅର୍ଜୁନ ଓ ଅନ୍ୟାନ୍ୟ ଭକ୍ତମାନଙ୍କ ନିମିତ୍ତ ଶ୍ରୀକୃଷ୍ଣ ଅନେକ କଷ୍ଟ ବରଣ କରିଛନ୍ତି । ଶ୍ରୀମଦ୍ ଭାଗବତ, ହରିବଂଶ ଓ ମହାଭାରତ ଆଦି ପୁସ୍ତକରେ ଏହାର ପ୍ରଭୂତ ଉଦାହରଣ ପାଠ କରିବାକୁ ମିଳେ । ପ୍ରସ୍ତୁତ ପ୍ରସଙ୍ଗରେ ମଧ ଭକ୍ତପ୍ରବର ଅର୍ଜୁନଙ୍କ ଲାଗି ଶ୍ରୀକୃଷ୍ଣ ମୋହିନୀ କନ୍ୟା ରୂପ ଧାରଣ କରି ହାସ୍ୟବତୀର ସଖୀରୂପେ କାଞ୍ଚନ ଅନ୍ତଃପୁରରେ ଅବସ୍ଥାପନ କରିଥିଲେ । ସେତେବେଳେ ମୋହିନୀ କନ୍ୟାଙ୍କର ଅପରୂପ ଲାବଣ୍ୟ କବିଙ୍କ ଭାଷାରେ ସଜୀବ ହୋଇଉଠିଛି ।

"ଶୁଣ ଗୁଣିକେ ପ୍ରେମ ପୀୟୂଷ ରସ ।
ତ୍ରୈଲୋକ୍ୟନାଥ ହୋଇ ମୋହିନୀ ବେଶ ॥
ଝଟକ ବିଦ୍ୟୁତ ଛଟକ ଆସ୍ୟ ।
ଅଟକରେ ମନ ହାଟକ ପ୍ରଭା ସେ ॥
ପୀନ ଉରଜ କ୍ଷୀଣ କଟୀକି ଶୋହେ ।
ଝୀନବସନ ମୀନ ନୟନା ଦେହେ ସେ ॥
ଶରଦ ଚନ୍ଦ୍ରମୁଖୀ କଳଙ୍କ କରେ ।
ଦ୍ୱିରଦଗତି ନୀରଦ କେଶ ଭରେ ସେ ॥
ତିଳ ଫୁଲ ନାସାରେ ନୀଳବସଣି ।
ବିଳସି ଉଠେ ହସି କହନ୍ତେ ବାଣୀ ସେ ॥
ଦର ଦର ହାସରେ ବରବରନା ।
ତର ତର ଦୃଶେଁ କରକ ରଦନା ସେ ॥
ବନଜ ନେତ୍ରୀ ବନମାଳାଏ ଘେନ ।
ଘନଜଘନା ଆସେ ସଖୀକି ଘେନ ସେ ॥"

× × ×

ଭାବଗ୍ରାହୀ ନାଥ ଭକ୍ତଭାବେ ବଶ ହୋଇ ।
ହାସ୍ୟବତୀ ଗଳେ ବନମାଳା ଦେଲେ ନେଇ ସେ ॥
ହୋଇଲା ସଖାସମ୍ବନ୍ଧ ହାସ୍ୟର ବେଭାର ।
ବୋଲେ ଜଗନ୍ନାଥ ଧନ୍ୟ ତାହାଙ୍କ ପଟୁର ସେ ॥"

ହାରବତୀ କାମାକ୍ଷୀ ମନ୍ଦିରରେ ଅର୍ଜୁନଙ୍କୁ ଦେଖିବାମାତ୍ରେ ତାଙ୍କର ମୋହନୀ ଛବିରେ ମୁଗ୍ଧ ହୋଇ ତାଙ୍କୁ ଦେହ ମନ ପ୍ରାଣ ଅର୍ପଣ କରିଥିଲା । ଏପରିକି ହାରବତୀ ଅର୍ଜୁନଙ୍କୁ ବଶ କରି ତାଙ୍କର ପ୍ରିୟବତୀ ହେବାଲାଗି କୁଳାଙ୍ଗନାବନ୍ଧନ ତଥା ନାରୀର ମର୍ଯ୍ୟାଦା ବନ୍ଧୁକରେ କେତେକ ଗର୍ହିତ ଆଚରଣ କରିଥିଲା । ସେଥିଲାଗି ସେ ଥରେ ଶଙ୍କିତା ତଥା ଲଜ୍ଜିତା ହୋଇଥିଲେହେଁ ପରକ୍ଷଣରେ ସେ ମନେ ମନେ ଆଶ୍ୱସ୍ତ ହୋଇ କହୁଛି— ।

"ଶାଢ଼ୀ ସଜାଡ଼ିଣ ଲଜେ ଘୋଷଇ ସୁମନା ।
ଦେଖିଲେ ଦେଖନ୍ତୁ ସେ ତାଙ୍କର ଦ୍ରବ୍ୟ ସିନା" ॥

ରସବତୀ ନାରୀ ମନୋମତ ପ୍ରିୟଠାରେ ମନପ୍ରାଣ ଓ ଶରୀର ଅର୍ପଣଲାଗି କୌଣସି ଲଜ୍ଜା ସଙ୍କୋଚ ତଥା ବାଧା ଓ ବନ୍ଧନ ମାନେ ନାହିଁ । ପ୍ରାଣପ୍ରିୟଙ୍କ ଶ୍ରୀଚରଣତଳେ ନିଜର ଅକ୍ଷତ ଯୌବନ ଅର୍ପଣ କରି ତାଙ୍କର ଶ୍ରୀଚରଣରେ ଚିରଦିନ ଲାଗି ଦାସୀ ହେବାର କାମନା ପୋଷଣ କରେ । ବେଳେ ବେଳେ ସେହି ପ୍ରାଣପ୍ରିୟଙ୍କୁ ପାଇବା ଲାଗି ନାରୀକୁ ପ୍ରେମୋନ୍ମାଦିନୀ ସାଜିବାକୁ ପଡ଼େ । କିନ୍ତୁ ପରକ୍ଷଣରେ ଯଦି ଏସବୁ ସତ୍ତ୍ୱେ ନାରୀ ପୁରୁଷଠାରୁ ଆଦର ସୋହାଗ ତଥା ପ୍ରେମ ବଦଳରେ ଘୃଣା, ଅପମାନ ଓ ଧିକ୍‌କାର ବଚନ ଶୁଣିବାକୁ ପାଏ; ତେବେ ସେହି ପ୍ରେମପାଗଳିନୀ ନାରୀ କୋପନା ଚଣ୍ଡୀ ରୂପରେ ଆତ୍ମପ୍ରକାଶ କରେ । ପ୍ରସ୍ତୁତ ପ୍ରସଙ୍ଗରେ ଅର୍ଜୁନଙ୍କୁ ପାଇବା ପାଇଁ ହାରବତୀ ପ୍ରେମପାଗଳିନୀ ହୋଇ କୁଳମାନମର୍ଯ୍ୟାଦା ଜଳାଞ୍ଜଳି ଦେଇ ପ୍ରାଣପ୍ରିୟଙ୍କ ସମ୍ମୁଖରେ ଲଜ୍ଜାକର କାମଚେଷ୍ଟାମାନ ପ୍ରଦର୍ଶନ କରି ପ୍ରଣୟ ନିବେଦନ କରିଛି । କିନ୍ତୁ ତା'ର ସମସ୍ତ ପ୍ରୟାସ ବ୍ୟର୍ଥ ହେବାପରେ ସେ ପରିଶେଷରେ କିଂକର୍ତ୍ତବ୍ୟବିମୂଢ଼ ହୋଇ କହୁଛି—

"ଯାଚଲି ଯୌବନ ରୁଚଲି ଭୋଜନ
ପାଚଲି ଫଳ ଶ୍ରୀଧନ ।
ହେଲା କରି ସ୍ୱାଙ୍କୁ ଖୋଜିଲେ ପଛକୁ
କାଳକାଳ ନମିଲେ ଏମାନ,
ହେ ସୁନ୍ଦର ।"

ଏ ସମ୍ବନ୍ଧରେ 'ନୈଷଧୀୟ ଚରିତ'ରେ ନଳ ଓ ଦମୟନ୍ତୀଙ୍କ କଥୋପକଥନ ପ୍ରସଙ୍ଗରେ ଗୋଟିଏ ଶ୍ଳୋକ ଅନୁଧ୍ୟାନର ବିଷୟ—

"ଯସ୍ତ୍ରବେଦବଦାଂବନ୍ଦ୍ୟଃ ସବ୍ୟାସୋଽପି ଜଳାଲ୍ପବଃ ।
ରମାୟ୍ୟ କାତକାମାସ୍ୟାଃ ପ୍ରଶସ୍ତା ହସ୍ତଧାରଣା" ॥

ତଥାପି ଅର୍ଜୁନଙ୍କ ମନ ଚଳେହେଲେ ବଚଳିତ ହୋଇନାହିଁ । ସେ ଜଣେ ଆଦର୍ଶ ତଥା ସମ୍ଭ୍ରାନ୍ତ ବଂଶର ନାୟକେ ରୂପେ ପରିଚୟ ଦେଇ ହାବଭାବର ପ୍ରେମ ପ୍ରତ୍ୟାଖ୍ୟାନ କରିବା ସଙ୍ଗେ ସଙ୍ଗେ ତାକୁ ବହୁପତି ଯୁବତୀ ରୂପେ ଆକ୍ଷେପ କରି ପରୋକ୍ଷରେ ଭର୍ତ୍ସନା କରିଛନ୍ତି । ଏ ପ୍ରକାର କଦର୍ଯ୍ୟ ବ୍ୟବହାର ନବଯୁବତୀ ପ୍ରଣୟିନୀ ହାବଭାବ ପକ୍ଷରେ ଅସହ୍ୟ ହୋଇଉଠିଛି । ତେଣୁ ସେ ପ୍ରେମପୂଜାରିଣୀର ସ୍ୱରୂପ ପରିତ୍ୟାଗ କରି କୋପନା ଚଣ୍ଡୀ ରୂପ ଧାରଣ କରିଛି । ସେ କେବଳ ଅର୍ଜୁନଙ୍କର ବ୍ୟବହାରରେ କ୍ଷୁବ୍ଧା ହୋଇ ତାଙ୍କ ପୌରୁଷ ପ୍ରତି ବିଦ୍ରୂପ କରିଛି ତା' ନୁହେଁ, ବରଂ ଆତ୍ମର ଟିକିଏ ଅବସର ହୋଇ ପ୍ରତିଶୋଧ ନେବା ଇଚ୍ଛାରେ ଅର୍ଜୁନଙ୍କୁ କାର୍ତ୍ତିକୁପରେ ପକାଇ ଦେଇଛି । କିନ୍ତୁ ହୃଦୟର ଗଭୀରତମ ପ୍ରଦେଶରେ ଅର୍ଜୁନଙ୍କ ପ୍ରତି ତା'ର ଅନାବିଳ ସ୍ନେହ ଓ ପ୍ରେମ ପୂରିରହିଛି । ତେଣୁ ମୋହିନୀରୂପୀ ଶ୍ରୀକୃଷ୍ଣଙ୍କ ମୋହନ ମନ୍ତ୍ର ବଳରେ ଅର୍ଜୁନ ତା'ଠାରେ ପ୍ରେମ ନିବେଦନ କରିଲେ ସେ ଅଭିମାନିନୀ ହୋଇ ପ୍ରାଣପ୍ରିୟଙ୍କ ମିଷ୍ଟବାଣୀ ଶୁଣିବା ଲାଗି ଲାଳାୟିତା ହୋଇଉଠିଛି । ପରିଶେଷରେ ସେ ଅର୍ଜୁନଙ୍କର ବିରହ ସନ୍ତପ୍ତ ପ୍ରାଣକୁ ଆଶ୍ୱସ୍ତ କରି 'ରତିକେଳୀ'ର ପ୍ରକୃଷ୍ଟ ସମୟ ସମ୍ବନ୍ଧରେ ଚେତାଇ ଦେଇ କହିଛି—

"ହେଲେ ହେବ ପଛେ କେଳୀ କାଳ ଏ ନୁହଇ ।
ବୋଲେ ଜଗନ୍ନାଥ ପାର୍ଥ ଧୈର୍ଯ୍ୟଧର ରୁହ ॥"

ପ୍ରସ୍ତୁତ ଦୃଶ୍ୟକାବ୍ୟର ରସ ପରିବେଷଣରେ କବି ଜଗନ୍ନାଥ ପାଣି ଅତି ସୁଚତୁରତା ଦେଖାଇଛନ୍ତି । ପ୍ରଥମେ ଆଦିରସ, ତତ୍ପରେ ରୌଦ୍ରରସ, ମଧ୍ୟରେ ଆଦିରସର ନିର୍ମଳଧାରା ପ୍ରବାହିତ କରିବା ପରେ ନାୟକ ନାୟିକାଙ୍କର ମିଳନକୁ ଆହୁରି ମଧୁମୟ କରିବା ଅଭିଳାଷରେ ଆଦିରସର ପରିପାକ ସମୟରେ ନିକୁମ୍ଭାସୁର ଓ ପାଣ୍ଡବ ବଳର ଘୋରତର ସମର ବର୍ଣ୍ଣନାପୂର୍ବକ ବୀର ରସର ଅବତାରଣା କରିଛନ୍ତି ।

ନିକୁମ୍ଭାସୁରର ବଧ ପରେ କବି ନାୟକ ନାୟିକାଙ୍କୁ ସ୍ୱର୍ଗପୁରକୁ ନେଇ ନଯାଇ ସେଇଠାରେ କାବ୍ୟଟିକୁ ସମ୍ପୂର୍ଣ୍ଣ କରିଥିଲେ 'ହାବଭାବ ହରଣ' ରୁ ପ୍ରକାର କୌଣସି ଅପକର୍ଷ ହୋଇ ନଥାନ୍ତା; ବରଂ ପାଠକଙ୍କ ମନରେ ଆହୁରି ଆନ୍ତରିକ୍ୟ ପ୍ରକାଶ ପାଇ କୌତୂହଳ ସୃଷ୍ଟି କରିଥା'ନ୍ତା । କବି ସେଥିପ୍ରତି ଦୃଷ୍ଟି ନଦେଇ, ପୌରାଣିକ ଆଖ୍ୟାୟିକାର ପଦାଙ୍କ ଅନୁସରଣ କରି 'ପଞ୍ଚବିଂଶ ଗୀତ' ଟି ରଚନା କରି ସାମାଜିକ ରୀତିରେ ହାବଭାବ ଓ ଅର୍ଜୁନଙ୍କ ବିବାହ ତଥା ମଧୁଯାମିନୀ ଉତ୍ସବ ସମ୍ପନ୍ନ କରିଛନ୍ତି ।

"ହାସ୍ୱବତୀଙ୍କୁ ସୁବେଶ କରଣେ ଆଣିଲେ ।
ବିଶ୍ବାବସୁ ଗନ୍ଧର୍ବ ଯେ କନ୍ୟା ସମର୍ପିଲେ ॥"

× × ×

ବାଜିଲା ଶଙ୍ଖ ଦୁନ୍ଦୁଭି ମଙ୍ଗଳ ମଣ୍ଡୁଣି ।
ଅର୍ଘ୍ୟ ବନ୍ଦାପନା କଲେ ରମ୍ଭାଦି ଅପ୍‌ସରି ॥
ଯଉତୁକ ଦେଇ ଯେବଗଲେ କନ୍ୟାବର ।
କାନ୍ତା କାନ୍ତ ବିଜେ କଲେ ମଧୁଶଯ୍ୟା ପୁର ॥
ପ୍ରେମଉନ୍ମାଦନା ପ୍ରେମେ ପାଣ୍ଡବ ଅର୍ଜୁନ ।
ରତିରସେ ତୋଷ କଲେ ହାସ୍ୱବତୀ ମନ ॥"

ହାସ୍ୱବତୀ ହରଣ ଗୀତାଭିନୟରେ ଆଦରସର ଉତ୍ସ ପ୍ରଖର ଭାବରେ ପ୍ରବାହିତ ହୋଇଥିଲେହେଁ ନିତାନ୍ତ ରୁଚିଗର୍ହିତ ବୋଲି ମନେହୁଏ ନାହିଁ । ଏ ପ୍ରକାର ଆଦରସର ପରିବେଷଣ ସଂସ୍କୃତ-କାବ୍ୟଜଗତରେ ଅନେକ ଦେଖିବାକୁ ମିଳେ । ସେହି ଦୃଷ୍ଟି-କୋଣରୁ ବିଚାର କରି ଦେଖିଲେ, ପ୍ରସ୍ତୁତ ପୁସ୍ତକଟି ଦୃଶ୍ୟ-କାବ୍ୟ ଅପେକ୍ଷା ଶ୍ରବ୍ୟକାବ୍ୟ ରୂପେ ଅଧିକ ପ୍ରସ୍ଫୁରିତ ହୋଇଥିବା ଅସମ୍ଭବ ନୁହେଁ ।

---

# ଉଷାବତୀ ହରଣ

ଶ୍ରୀମଦ୍ ଭାଗବତ ଓ ହରିବଂଶ ପୁରାଣର ଅତ୍ୟନ୍ତ ଲୋକପ୍ରିୟ କାହାଣୀ ଉଷାହରଣ ପ୍ରସଙ୍ଗ ଓଡ଼ିଶାର ଘରେ ଘରେ ସୁପରିଚିତ । କାରଣ ଜଗନ୍ନାଥ ଦାସଙ୍କ ଭାଗବତ, ଅଚ୍ୟୁତାନନ୍ଦଙ୍କ ଲକ୍ଷ୍ମୀ ହରିବଂଶ ମାଧ୍ୟମରେ ଏ' କାହାଣୀ ଯେପରି ଲୋକପ୍ରିୟ ହୋଇଥିଲା, ଶିଶୁ ଶଙ୍କର ଦାସଙ୍କ 'ଉଷାଭିଲାଷ' କାବ୍ୟ ଓ ରାଜକବି ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ 'ଉଷାହରଣ ଲୀଳା' ତଥା ସଂସ୍କୃତ କବି ଚମ୍ପୂକ ଚନ୍ଦ୍ରଶେଖର ରାୟଗୁରୁଙ୍କ ରଚିତ ନାଟକ 'ମଧୁର ଅନିରୁଦ୍ଧ' ମାଧ୍ୟମରେ 'ଉଷା ଅନିରୁଦ୍ଧ' ଚରିତ୍ର ଅଧିକ ଜନପ୍ରିୟ ହୋଇ ପାରିଲା । କବି ଜଗନ୍ନାଥ ପାଣି ନିଜର ସ୍ୱଭାବ ସୁଲଭ କମନୀୟ ଶୈଳୀରେ ସେହି ଚରିତକୁ ଗୀତିନାଟ୍ୟ ବା ଗୀତାଭିନୟର ରୂପ ଦେଇ ପୌରାଣିକ ଆଖ୍ୟାନଟିକୁ ଓଡ଼ିଶାର ଜନସାଧାରଣଙ୍କ ସମ୍ମୁଖରେ ବିଶେଷ ଭାବରେ ପ୍ରଚାରିତ କରାଇଥିଲେ ।

ପ୍ରସ୍ତୁତ 'ଉଷାବତୀ ହରଣ' ପୁସ୍ତକଟି ତେତିଶଗୋଟି ଶ୍ରେଷ୍ଠ ବଡ଼ ଗୀତରେ ସମ୍ପୂର୍ଣ୍ଣ ହୋଇଛି । ଗୀତ ଗୁଡ଼ିକ ଚାରିପଦରୁ ଆରମ୍ଭ କରି ସତର ପଦରେ ଶେଷ ହୋଇଥିବାର ଦେଖାଯାଏ । କବି ଜଗନ୍ନାଥ ପ୍ରସ୍ତୁତ ପୁସ୍ତକଟିକୁ ଖଣ୍ଡିଏ ଜନପ୍ରିୟ ଗୀତାଭିନୟରେ ପରିଣତ କରିଥିବାରୁ ଏଥିରେ ଅନେକ ଗୁଡ଼ିଏ ଶ୍ରୁତିସୁଖକର ଛନ୍ଦର ଯୋଜନା କରିଛନ୍ତି । କବି ଜଗନ୍ନାଥ ପାଣି ମାତ୍ର ତେତିଶଗୋଟି ଗୀତରେ ସମୁଦାୟ 'ଉଷା ଅନିରୁଦ୍ଧ' ପ୍ରସଙ୍ଗ ବର୍ଣ୍ଣନା କରିଥିବାରୁ ଯେତେଦୂର ସମ୍ଭବ ଏହା ଅତ୍ୟନ୍ତ ସଂକ୍ଷେପରେ ବର୍ଣ୍ଣନା କରାଯାଇଛି । ପାଠକ ଓ ଆଲୋଚକମାନଙ୍କ ଅବଗତି ନିମିତ୍ତ ଏଠାରେ ପ୍ରତ୍ୟେକ ଗୀତର ବର୍ଣ୍ଣନୀୟ ବିଷୟ ସଂକ୍ଷେପରେ ପ୍ରଦତ୍ତ ହେଲା ।

୧ମ ଗୀତ—ଶୋଣିତପୁର ଓ ବାଣାସୁରର ବର୍ଣ୍ଣନା ।

୨ୟ—ବାଣାସୁର ଦ୍ୱାରା, ଦିନେ ପାତ୍ରମନ୍ତ୍ରୀଙ୍କ ଗହଣରେ, ଉଷାକନ୍ୟା ଲାଗି କାର୍ତ୍ତିକେୟଙ୍କୁ ବରଣ କରିଥିବାର ତଥା ପ୍ରଜାଙ୍କ ଓ କନ୍ୟାର ସୁରକ୍ଷା ଲାଗି ମନ୍ତ୍ରୀଙ୍କ ଚେତାବନୀ ।

୩ୟ—ଉଷାକୁ ଯତନରେ ରଖିବା ଲାଗି ଶିଳ୍ପୀମାନଙ୍କ ଦ୍ୱାରା ସାତପ୍ରସ୍ଥ ଏକ କାଠି
ମେଢ଼ ନିର୍ମାଣ ଏବଂ ତାହା ଦେଖି ବାଣାସୁରର ସନ୍ତୋଷ ପ୍ରକାଶ ।
୪ର୍ଥ, ୫ମ—କନ୍ୟାନ୍ତଃପୁର ବର୍ଣ୍ଣନା ଓ ବସନ୍ତ ବର୍ଣ୍ଣନା ।
୬ଷ୍ଠ—ବସନ୍ତ ଆଗମନରେ ଉଷାର ବିରହ ଓ ଚିତ୍ରକଳାଦ୍ୱାରା ସାନ୍ତ୍ୱନା ପ୍ରଦାନ ।
୭ମ—ଚିତ୍ରକଳା ଦ୍ୱାରା ବସନ୍ତର ଉତ୍ପତ୍ତି ବର୍ଣ୍ଣନା ।
୮ମ-୯ମ—ବାସନ୍ତୀ ରଜନୀରେ ବିରହିଣୀ ଉଷାର ସ୍ୱପ୍ନଦର୍ଶନ ଓ ବିଳାପ ଏବଂ
ଚିତ୍ରଲେଖା ଦ୍ୱାରା କାରଣ ଜିଜ୍ଞାସା ତଥା ଧୈର୍ଯ୍ୟ ଧାରଣ ଲାଗି ଆଶ୍ୱାସନା ।
୧୦ମ—ଉଷାର ଶୋକରେ ଚିତ୍ରଲେଖାର ସ୍ୱର୍ଗ ମର୍ତ୍ତ୍ୟ ପାତାଳର ଅଧିବାସୀଙ୍କ
ଆଲେଖ୍ୟ ଲେଖନ ।

୧୧ଶ—ଚିତ୍ର ଦେଖି ଉଷାର ଆନନ୍ଦ ପ୍ରକାଶ ତଥା ଦ୍ୱାରାବତୀ ପୁରରେ ଅନିରୁଦ୍ଧର
ଚିତ୍ର ଦେଖି ବିହ୍ୱଳାବସ୍ଥା ।

୧୨ଶ, ୧୩ଶ—ଉଷାର ଆନନ୍ଦ ଦେଖି ଚିତ୍ରଲେଖାର ସନ୍ତୋଷ ଏବଂ ଯଦୁବଂଶ
କୁମାରଙ୍କୁ ବର ରୂପେ ବରିଥିବାରୁ ତା'ର ବିଶେଷ ଆନନ୍ଦ ଏବଂ ନିଜର
ପରିଚୟ ପ୍ରଦାନ ତଥା ସିଦ୍ଧବିଦ୍ୟା ସାହାଯ୍ୟରେ ଅସାଧ୍ୟ ସାଧନ କରିବାରେ
ଦକ୍ଷତାର ବିବରଣୀ ପ୍ରଦାନ ।

୧୪ଶ, ୧୫ଶ—ଅନିରୁଦ୍ଧଙ୍କୁ ମନ୍ତ୍ରବଳରେ ଆଣିଦେବା ଲାଗି ଉଷାର ଆଗ୍ରହ ପ୍ରକାଶ
ଏବଂ ଦ୍ୱାରକା ପୁରକୁ ଚିତ୍ରଲେଖାର ଗମନ ଓ ଅନିରୁଦ୍ଧ ପୁରରେ ପ୍ରବେଶ
କରି ନିଦ୍ରାଗତ ଯୁବକକୁ ନେଇ ପ୍ରତ୍ୟାଗମନ ।
୧୬ଶ—ସ୍ୱପ୍ନ ପୁରୁଷଙ୍କୁ ସମ୍ମୁଖରେ ଦେଖି ଉଷାର ଆନନ୍ଦ ଏବଂ ଅସାଧ୍ୟ ଦ୍ୱାରକା-
ପୁରକୁ ଯିବାର ତଥ୍ୟ ଜିଜ୍ଞାସା ।

୧୭ଶ—ଉଷା ଆଗରେ ଚିତ୍ରଲେଖାର ମନ୍ତ୍ର ତଥ୍ୟ ପ୍ରକାଶ ।

୧୮ଶ, ୨୦ଶ—ଅପୂର୍ବ ପୁରରେ ନିଜକୁ ଦେଖି ଅନିରୁଦ୍ଧର ବିସ୍ମୟ ପ୍ରକାଶ ଏବଂ
ଚିତ୍ରଲେଖା ଓ ଉଷାବତୀ ସହିତ କଥୋପକଥନ ଓ ଉଷାବତୀ
ସହିତ ବିଳାସ ।
୨୨ଶ, ୨୩ଶ—ବାଣାସୁର ଆଗରେ ଅନିରୁଦ୍ଧଙ୍କ ପ୍ରବେଶ ସମ୍ବନ୍ଧରେ ପ୍ରହରୀଙ୍କ ତଥ୍ୟ
ପ୍ରକାଶ ଓ ଚିତ୍ରଲେଖା ଉପରେ ଅସୁର ରାଜାର କ୍ରୋଧ ।

୨୪ଶ, ୨୫ଶ—ଚିତ୍ରଲେଖା ଉପରେ ବାଣାସୁରର କ୍ରୋଧ ଓ ତା'ର ରୋଦନ ।

୨୬ଶ, ୨୭ଶ—ଚିତ୍ରଲେଖାର ଉତ୍ତରରେ ବାଣାସୁରର କ୍ରୋଧ, କନ୍ୟାନ୍ତଃପୁରରେ
ପ୍ରବେଶ କରି ଅନିରୁଦ୍ଧକୁ ନାଗପାଶରେ ବନ୍ଧନ ଓ ଉକ୍ତି ପ୍ରତ୍ୟୁକ୍ତି ।

୨୮ଶ—ଅନିରୁଦ୍ଧର ଅବସ୍ଥା ଦେଖି ଉଷାର ଶୋକ ପ୍ରକାଶ ।

୨୯ଶ—ଶ୍ରୀକୃଷ୍ଣଙ୍କ ଆଗରେ ନାରଦଙ୍କ ଉପସ୍ଥିତି ଓ ଅନିରୁଦ୍ଧ ସମ୍ବନ୍ଧରେ ତଥ୍ୟ ପ୍ରକାଶ ।

୩୦ଶ—ନାରଦଙ୍କ ଠାରୁ ସମ୍ବାଦ ପାଇ ଯଦୁବୀରଙ୍କ ଶୋଣିତପୁର ଆକ୍ରମଣ ଓ ବାଣାସୁରର କୈଳାସପୁର ପଳାୟନ ।

୩୧ଶ—ରୁଦ୍ରବଳ ଓ ଯଦୁବଳ ମଧ୍ୟରେ ଘୋର ଯୁଦ୍ଧ ତଥା ବାଣାସୁରର ଭୁଜଚ୍ଛେଦନ ।

୩୨ଶ—ବାଣାସୁରର ପରାଭବରେ ଶିବଙ୍କ କ୍ରୋଧ, ବିଷ୍ଣୁଜ୍ୱର ଶିବଜ୍ୱରର ଉତ୍ପତ୍ତି, ଦେବତାମାନଙ୍କ ପ୍ରବେଶ ତଥା ପୂଜା କାମନାକୁ ଅର୍ପଣ କରି ଶ୍ରୀକୃଷ୍ଣଙ୍କ ନିକଟରେ ଅସୁର ରାଜାର ଆତ୍ମସମର୍ପଣ ।

୩୩ଶ—ପୁତ୍ର ଓ ପୁତ୍ରବଧୂଙ୍କୁ ପାଇ ଶ୍ରୀକୃଷ୍ଣଙ୍କ ଆନନ୍ଦ, ଦ୍ୱାରକା ପ୍ରତ୍ୟାଗମନ, ଉଷା ଅନିରୁଦ୍ଧଙ୍କ ବିବାହ ଓ କେଳିବିଳାସ ।

ଭାଗବତର ସପ୍ତଷଷ୍ଠିତମ ଅଧ୍ୟାୟ ଓ ଅଷ୍ଟଷଷ୍ଠିତମ ଅଧ୍ୟାୟରେ ଉଷାଅନିରୁଦ୍ଧ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ଉକ୍ତ ବର୍ଣ୍ଣନା ଓ ପରବର୍ତ୍ତୀ କାଳରେ କାବ୍ୟିକ ବର୍ଣ୍ଣନା ମଧ୍ୟରେ ବିଶେଷ ପାର୍ଥକ୍ୟ ଥିବାର ଦେଖାଯାଏ ନାହିଁ, କେବଳ ପୌରାଣିକ ତଥ୍ୟ ଓ କାବ୍ୟିକ ମନୋରଞ୍ଜନାତ୍ମକ ଶୈଳୀମଧ୍ୟରେ ବର୍ଣ୍ଣନାଗତ ଭେଦ ପରିଲକ୍ଷିତ ହୁଏ ।

ଉଷାର ସ୍ୱପ୍ନଦର୍ଶନ ବୃତ୍ତାନ୍ତ ଭାଗବତରେ ସଂକ୍ଷେପରେ ବର୍ଣ୍ଣିତ ହୋଇଛି । କିନ୍ତୁ ଶିଶୁଶଙ୍କରଦାସଙ୍କ 'ଉଷାଭିଳାଷ' ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ 'ଉଷାହରଣ ଲୀଳା', ଚମ୍ପୂକ ଚନ୍ଦ୍ରଶେଖରଙ୍କ 'ମଧୁରାନିରୁଦ୍ଧ କାବ୍ୟ' ତଥା କବି ଜଗନ୍ନାଥ ପାଣିଙ୍କ ସ୍ୱପ୍ନ-ଦର୍ଶନ ପ୍ରସଙ୍ଗ ଏଠାରେ ପ୍ରଦତ୍ତ ହେଲା ।

"ସେ କନ୍ୟା ରହିଲେ ଚନ୍ଦ୍ରାକାଳେ
ସ୍ୱପ୍ନେ ମିଳିଲା କାନ୍ତ ମେଳେ ॥
ପ୍ରଦ୍ୟୁମ୍ନ ପୁତ୍ର ଭୁଲେ ରମି
ପ୍ରଳାପେ କଲା ଶୋକଧ୍ୱନି ॥
ହେ କାନ୍ତ କାହିଁ ଗଲ ଛାଡ଼ି
ଶୋକ ସାଗରେ ମୋତେ ଏଡ଼ି ॥
ନ ଦେଖି ଛାଡ଼ିବି ଜୀବନ
ଦେଖାଅ ସୁନ୍ଦର ବଦନ ॥"

(ଭାଗବତ)

"ପଲଙ୍କ ଡେଙ୍ଗି ଉଠିଲ ସେ ସୁମୁଖି
ସପନ ଚେତନା ପାଇଣ ।
ଆହା ପ୍ରାଣନାଥ କେଣେଗଲ ବୋଲି,
ଉଚ ସ୍ୱରେ କରେ କାରୁଣୀ ।
ଦଇବ, ଦେଖାଇ ନିଧି ହରି ନେଲୁ ।
ଶିଶୁ କୁମାରୀ ମୁଁ କିଛୁ ନ ଜାଣଇ
କମ୍ପାଇଁ ମୋତେ ଏହା କଲୁ ।
ସ୍ୱପନେ ଅଙ୍ଗ ସଙ୍ଗ ଲଭି ଅଙ୍ଗନା
ବିରହେ ବାତୁଳ ବଚନ ।
ରତି ଲାଳସେ ଅଳସଭରା ତନୁ,
ତରଳ ଚକିତ ଲୋଚନ ।
ହେନାଥ, ଏହିକ୍ଷଣି ଥିଲ ପଲଙ୍କେ
ବିନା ଅପରାଧେ କିକେ ତେଜିଗଲୁ
ତରୁଣୀ ମରଣ ନାଗଙ୍କେ ।
ଛନ ଛନ ମନ ବାତୁଳ ବଚନ
ନିରେଖି ଗୃହେଁ ଦଶଦିଗ ।
ଦଣ୍ଡକେ ଲେଉଟି ଲାଜ, ବିକାଶିଲ ହେଠ,
ବଦନ ଖର ଶ୍ୱାସ ।"
[ ଉଷାଭିଳାଷ—ଶିଶୁଶଙ୍କର ଦାସ ]

"ଚିତ୍ରଲେଖା—ଭଗବନ୍ ! ସ୍ୱପ୍ନ-ଦୃଷ୍ଟଃ ପୁରୁଷଃ ।

ନାରଦ—କିନ୍ନୁ ଦେବୀ, ନବେଦସ୍ୱତ ସ୍ୱପ୍ନେନ ପୁରୁଷଂ ବିଜୃମ୍ଭିତମ୍ ?

ଚିତ୍ରଲେଖା—ଅଥ କିମ୍ ।

ନାରଦ—ନନୁ ବିଜ୍ଞାତଃ ସ୍ୱପ୍ନ ପୁରୁଷୋ ଭବତୀଭିଃ ।

ଚିତ୍ରଲେଖା—ଭଗବନ୍ ! ସ କଥଂ ସ୍ୱପ୍ନ ଏବ ସଖୀମାତ୍ର ଦୃଷ୍ଟମୂର୍ତ୍ତିର ବିଦିତାନ୍ୱୟ ନାମଧେୟୋଽସ୍ମାଭିଃ ବିଜ୍ଞାତବ୍ୟଃ ।

ନାରଦଃ—ତତ୍ କିଂ କଶ୍ଚିଦସ୍ତ୍ୟସ୍ୟ ବିଜ୍ଞାମେପାୟଃ ?"
(ମଧୁରାନିରୁଦ୍ଧ ନାଟକମ୍)

"ମନେଥିଲ ଏ ପ୍ରସଙ୍ଗ ଉଷାର,
ସ୍ୱପ୍ନେ ସଙ୍ଗ ହେଲ ଅନିରୁଦ୍ଧର ।

ଏହିପରି ସେ ସୁଖେ ମାତିଥିଲି,
ପାପ ଦଇବ ସେକ୍ଷଣି ହରିଲା ॥
ଚେତ ସେ ସୁଖ ଅଙ୍କ ନବ ଯୋଷା ।
ଉଚେ କାନ୍ଦିଲା ବୋଲେ ରାଜଦୁହିତା ॥
× × ×
ହେ ରସମୟ ମଧୁର ମାଦକ ମୋରତ ।
କଲାପ କୁନ୍ତଳା କୁଳ ନୟନ ବରତ ॥
ଆସ ଆସ ମୋ ଧନଟି,
ଦେଖାଅ, ଦେଖିବ କଳାକାର ବଦନଟି ।
ମନପୁଆନର ପିଇ ନ ଥିଲି ଅଧର ।
ଚୁମ୍ବି ଜାଣିନାହିଁ ଗଣ୍ଡ-ଖଣ୍ଡର ମଧୁର ॥
ମଲି ମଲି ବୋଲିବାର
ଶୁଣିନାହିଁ କାନ କୁହା ବାଣୀ ମୋ ବନ୍ଧୁର ॥
କାମୀ ଅମଳରେ ଝୁମି ଝୁମାଇ ମୁଁ ଗ୍ଲତ,
ଭିଡ଼ି ଆଖୁ ଅଣୁ ପାଇ ଆସୁଥିଲା ରାତ ॥
ଭୁଲି ଗଲି ସେ ଖିଆଲେ,
ଇନ୍ଦ୍ର ନଚକ୍ର ସଖା ଦେଇନାହିଁ ଭଲେ ॥
ନାଟ ଦେଖିବାର ଦନ ପର ବ୍ୟର୍ଥ ହେଲି,
ଥିଲି ଏହା ଯେବେ ଶଢେ କାଟିଆନ୍ତା ଗଲା ॥
ଆଉ ଦଶୁନାହିଁ ବୁଦ୍ଧି,
କହ କହ ଏବେ କ କରିବ ରଙ୍କନାଥ ॥
(ଉଷାବଳାସ-ବଶ୍ୱମ୍ଭର ରାଜେନ୍ଦ୍ର)

"ବସନ୍ତ ସମୟେ କାମଦେବ ଭୟେ ବସନ୍ତବାସନା ଅତଛନ୍ଦେ ।
ସେ ରଜନୀରେ, ସ୍ୱପନ ଦେଖିଲି ନୟନରେ ॥
ଗଜରାଜ ଗତ ଗଜଦନ୍ତ ପାତ ପଲ୍ଙ୍କେ ପୁରୁଷ ଆସି ବଳେ
ଧର ବେକମ୍ୱନ ବଦନେ ଚୁମ୍ୱନ ଦେଇ ରତ କଲା ଭାବ ଭୋଳେ ॥
ସେ ବଧିବଶେ, ଅନ୍ତର୍ଦ୍ଧାନ ହେଲା ରତ ଶେଷେ ।
ରମଣୀ ରତନ ଚେତନ ସ୍ୱପନ ଚଆଁଇ ବସିଲା ପଲ୍ୟଙ୍କରେ ।
ଫିଟିଛି ବସନ ନବବନ୍ଧମାନ ଫିଟିଛି କୁସୁମ ବେଣୀ ଶିରେ ॥
ସେ ରସନଦୀ, ଦୁଇ ଜାନୁ ଦେଇ ଯାଏ ଭେଦି ।
ଝାଳେ ଜରଜର ହୃଦୟ ଅସ୍ଥିର ନଖଘାତେ ଜଳେ ବେକକୁଚ ॥

ଛିଡ଼ି ମୋତିମାଳ ପଡ଼ିଅଛି ତଳ କନକ କଙ୍କଣ ଖଣ୍ଡ ଖଣ୍ଡ ।
ଏ ରୀତି ଦେଖି, ଚଉଦିଗେ ଚାହେଁ ଅଶ୍ରୁମୁଖୀ ॥
ନ ଦେଖି ସୁନ୍ଦର ନୟନରୁ ନୀର ଝର ଝର ଝରି ପଡ଼େ କୁଚେ
ଥର ଥର ଦେହା ତରତର ହୋଇ ଘର ଘର ଖୋଜି ଡାକେ ଉଚ୍ଚେ ।
ହେ ପ୍ରାଣବନ୍ଧୁ, ଦେଖାଅ ବାରେ ତୋ ମୁଖ ଇନ୍ଦୁ ॥
ଶୁଣି ନବବାଳୀ ଖୋଜଇ ଅଣ୍ଟାଳି ପଲଙ୍କ ତୁଳୀଠି ଯେତେମାନ ।
ଚିହ୍ନିଲା ବସନ ଅଙ୍ଗରୁ କାଢ଼ିଣ କାହିଁଗଲା ବୋଲି ଖୋଜେ ଧନ ॥
ଅଜନ୍ମ ସୁଖୀ, ଫିଟ'ଇ ଖୋଜଇ କବରୀକି ॥
ବେନି ଜାନୁ ସନ୍ଧି ଖୋଜେ କୁଚ କନ୍ଦି ରତନ ହାରକୁ ଥୋଇ ତଳେ ।
ପଡ଼ଇ ଗଡ଼ଇ ଅଞ୍ଚଳ ଝାଡ଼ଇ ମୋହ ଯାଇ ପଡ଼େ ବେଳେ ବେଳେ ॥
ତା' ଛାଇ ଚାହିଁ, ଏହି ଏହି କୋଳ କରେ ଯାଇ ॥
ଆହା ପ୍ରାଣଧନ ଆହା ଜୀବଧନ ଆହା ଆହା ବନ୍ଧୁ ପ୍ରାଣେଶ୍ୱର ॥
ଦେଖାଅ ବଦନ ନୋହିଲେ ମଦନ ନେଲାଟି ଜୀବନ ଅସି ମୋର ।
ଜଗନ୍ନାଥ ବୋଲେ
ସ୍ତ୍ରୀହତ୍ୟା ହେବ ନ ଅଇଲେ'' ॥
(ଉଷାବତୀ ହରଣ—ଜଗନ୍ନାଥ ପାଣି)

ଏଠାରେ ପ୍ରଦତ୍ତ ପାଞ୍ଚଟିଯାକ ଉଦ୍ଧୃତାଂଶ ପାଠକଲେ ଜଣାଯାଏ ଯେ ଉକ୍ତ ଅଧିକେ ସମସ୍ତେ ଉଷାର ସ୍ୱପ୍ନ ଦର୍ଶନ ବର୍ଣ୍ଣନା କରିଛନ୍ତି । ଏହା ମୂଳ ଭାଗବତରେ ଥିବାରୁ ସେହି ପ୍ରସଙ୍ଗକୁ କେହି ଉପେକ୍ଷା କରିନାହାନ୍ତି । କେବଳ କବିତା ଶକ୍ତିର ବଳରେ ଭିନ୍ନ ଭିନ୍ନ କବିମାନେ ସେହି ପ୍ରସଙ୍ଗକୁ କାବ୍ୟିକ ଛଟାରେ ବର୍ଣ୍ଣନ କରିଛନ୍ତି । ସେହି ବର୍ଣ୍ଣନା ଶୈଳୀ ମଧ୍ୟରେ କବି ଜଗନ୍ନାଥ ପାଣିଙ୍କ ବର୍ଣ୍ଣନା ଶୀର୍ଷ ସ୍ଥାନ ଅଧିକାର କରିଛି । ସେ ସେହି ପ୍ରସଙ୍ଗ ମଧ୍ୟରେ ଆଦିରସର ବହୁଳ ପୁଟ ଦେଇ ଉଷାବତୀର ସାତ୍ତ୍ୱିକ ବିକାର ଟିକିଏ ଅଧିକ ମାତ୍ରାରେ ବର୍ଣ୍ଣନା କରିଛନ୍ତି । ଅର୍ଥାତ୍ କବି ଜଗନ୍ନାଥ ଦ୍ୱିଜ ଉଷାବତୀର ସାତ୍ତ୍ୱିକ ବିକାର ସ୍ୱପ୍ନଦର୍ଶନ ହେତୁରୁ ହୋଇ-ଥିବାର ବର୍ଣ୍ଣନା ନକରି, ପ୍ରକୃତ ନାୟକ ସଙ୍ଗମରେ ନାୟିକାର ଭାବୋଦୟ ହୋଇ-ଥିବାର ଆଲେଖ୍ୟ ଅଙ୍କନ କରିଛନ୍ତି ଏବଂ କବିଙ୍କ ବର୍ଣ୍ଣନା ଉପରେ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ କାବ୍ୟର ସ୍ୱପ୍ନ ଦର୍ଶନ ଛାନ୍ଦର ପ୍ରଭାବ ଅନେକ ପରିମାଣରେ ପଡ଼ିଛି । ତାହା ଫଳରେ କବିଙ୍କ ବର୍ଣ୍ଣନା ଅଧିକ ରୋଚକ ହୋଇ ସାମାଜିକ ଓ ପାଠକମାନଙ୍କ କୌତୂହଳୀ ମନକୁ ବଳାତ୍କାରରେ ପ୍ରସଙ୍ଗଆଡ଼କୁ ଆକର୍ଷଣ କରିଛି ।

ଫଯ୍ତ୍ତ କବି ଚମ୍ପୂର ଚନ୍ଦ୍ରଶେଖର ସେହି ପ୍ରସଙ୍ଗକୁ ନାରଦ ଓ ଚନ୍ଦ୍ରଲେଖା ମାଧ୍ୟମରେ ବର୍ଣ୍ଣନା କରି ନିବୃତ୍ତ ହୋଇଥିବା ସ୍ଥଳେ ଜଗନ୍ନାଥ ପାଣି ନାୟକଙ୍କର ମିଳନରେ ନାୟିକାର ପ୍ରାକ୍ତନ ଭାବୋଦୟର ମାତ୍ରାକୁ ଟିକିଏ ଅଧିକ ଭାବରେ ବର୍ଣ୍ଣନା କରିଛନ୍ତି ।

ଏହି ପ୍ରସଙ୍ଗରେ ଚନ୍ଦ୍ରରେଖାର ଅଦ୍ଭୁତ ବିଦ୍ୟା ସାଧନ ସମ୍ବନ୍ଧରେ ବିଚାର କରି-ମାଇପାରେ । ଅନ୍ୟାନ୍ୟ କବିମାନେ ଚନ୍ଦ୍ରରେଖାର ତାନ୍ତ୍ରିକସାଧନା ସମ୍ବନ୍ଧରେ ପଦେ ଅଧେ କହି ଘଟଣାବଳୀର ପୂର୍ଣ୍ଣଚ୍ଛେଦ ଦେଇଥିବା ସ୍ଥଳେ, ପାଣିମହୋଦୟ ଚନ୍ଦ୍ରରେଖା ମୁଖରେ ତା'ର କୃତିତ୍ୱ ବର୍ଣ୍ଣନା କରି ଘଟଣାବଳୀକୁ ଅଧିକ ଲୋକପ୍ରିୟ କରାଇବାର ପ୍ରୟାସ କରିଛନ୍ତି । କବି ଜଗନ୍ନାଥଙ୍କ ବର୍ଣ୍ଣନାରେ ଚନ୍ଦ୍ରରେଖା ନିଜକୁ ଦେବଶିଳ୍ପୀ ବିଶ୍ୱକର୍ମାଙ୍କ କନ୍ୟା ରୂପେ ଗୋଟିଏ ଛାନ୍ଦ ବା ତେରପଦବିଶିଷ୍ଟ ଗୀତରେ ଉଲ୍ଲେଖ କରିଛନ୍ତି । ସେଥିରୁ ଜଣାଯାଏ ଯେ, ଦିନେ ବିଶ୍ୱକର୍ମା ନିଜ କନ୍ୟାର ସାଧନବିଦ୍ୟା ସମ୍ବନ୍ଧରେ ପରୀକ୍ଷା କରିଥିଲେ । ସେ କନ୍ୟାକୁ ଛପନ ଦଣ୍ଡ ମଧ୍ୟରେ ଛପନ କୋଟି ଜୀବଙ୍କୁ ଛପନ ଅଙ୍ଗୁଳ ବିଶିଷ୍ଟ ପଟରେ ଅଙ୍କନ କରିବାକୁ ଆଦେଶ ଦେଇଥିଲେ । ସେହି କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଲାଗି ବିଶ୍ୱକର୍ମା ନନ୍ଦନୀ ବାଉନ ଦଣ୍ଡ ମଧ୍ୟରେ ପିତାଙ୍କ ଆଦେଶ ପୂରଣ କରିବା ଲାଗି ବ୍ୟଗ୍ର ହୋଇଉଠିଲା । କେବଳ ବ୍ୟଗ୍ରତାବଶତଃ ସେ ଛପନ କୋଟି ସ୍ଥାବର ଜଙ୍ଗମାଦି ଜୀବ ମଧ୍ୟରୁ ଗୋଟିଏ ଊଣା ଅଙ୍କନ କରି ପିତାଙ୍କ ସମ୍ମୁଖରେ ପଟ ଉପସ୍ଥାପିତ କରିଥିଲା । ପିତା ପୁତ୍ରୀର ବିଚକ୍ଷଣ କାରିଗରୀ ବୃତ୍ତିରେ ସନ୍ତୁଷ୍ଟି ପ୍ରକାଶ କରିବା ସଙ୍ଗେ ସଙ୍ଗେ ସେ ଗୋଟିଏ ଜୀବକୁ ଊଣାକରି ଲେଖିଥିବାରୁ, ତାକୁ ମର୍ତ୍ତ୍ୟମଣ୍ଡଳର ଅସୁର କୁଳରେ ଜାତ ହେବା ଲାଗି କଠୋର ଶାପ ପ୍ରଦାନ କରିଛନ୍ତି । ସାମାନ୍ୟ ବ୍ୟଗ୍ରତା ହେତୁରୁ କାର୍ଯ୍ୟରେ ସେ ଯେଉଁ ଅସାବଧାନତା ପ୍ରଦର୍ଶନ କଲା, ସେଥିଲାଗି ତାକୁ ଶୋଣିତପୁରର ଶୋଣିତାକ୍ଷ ଅସୁରର କନ୍ୟା ଚନ୍ଦ୍ରଲେଖା ରୂପେ ଜନ୍ମ ହେବାକୁ ପଡ଼ିଥିଲା ଏବଂ ବ୍ରହ୍ମାଣ୍ଡଠାକୁର ଶ୍ରୀକୃଷ୍ଣଙ୍କ ଦର୍ଶନରେ ଶାପମୁକ୍ତ ହେବାଲାଗି ମଧ୍ୟ ପିତା ବିଧାନ କରିଥିଲେ ।

"ଏହିପରି ନବଲକ୍ଷ ବିଦ୍ୟା ସାଧି କଲି ।
ଏହା ଦେଖି ପିତା ମୋ ପରୀକ୍ଷା ନେବେ ବୋଲି ॥
ବୋଇଲେ ସ୍ଥାବର ଜଙ୍ଗମାଦି କୀଟ ଯେତେ ।
ଛପନ କୋଟି ଜୀବଙ୍କୁ ଲେଖ ତୁ କହିତେ ॥
ଛପନ ଅଙ୍ଗୁଳ ପଟେ ଛପନ ଦଣ୍ଡରେ ।
ଛପନ କୋଟି ଜୀବଙ୍କୁ ଲେଖିବୁ ଭଲପାରେ ॥

ପିତାର ଅଙ୍କରେ ଚନ୍ଦପଟ ମୁଁ ଲେଖିଲି ।
ବାହନ ଦଣ୍ଡରେ ଲେଖି ପିତା ପାଶେ ଦେଲି ॥
ଦେଖି ପିତା ଚନ୍ଦ ଛବି ଆନନ୍ଦିତ ହେଲେ ।
ଛପନ କୋଟିରୁ ଊଣା ଗୋଟିଏ ଦେଖିଲେ ॥
ଅସାଧନ ବିଦ୍ୟା ବୋଲି ଶାପ ଦେଲେ ମୋରେ ।
ଅପୁର ଭୁବନେ ଜାତ ହୁଅ ମର୍ତ୍ତ୍ୟପୁରେ ॥
ଶାପ୍ୟ ପାଇ ମୁହିଁ ଏହି ପୁରେ ହେଲି ଜନ୍ମ ।
ଶୋଣିତାକ୍ଷ ନନ୍ଦନୀ ମୁଁ ଚନ୍ଦ୍ରରେଖା ନାମ ॥
ତୋହ ଲଗି ଦେଖିବି ମୁଁ ବ୍ରହ୍ମାଣ୍ଡ ଭିତର ।
ବୋଲେ ଜଗନ୍ନାଥ ଶାପମୁକ୍ତ ହେବ ମୋର ॥"

(ଉଷାବତୀ ହରଣ—ତ୍ରୟୋଦଶ ଛାନ୍ଦ)

କବି ଜଗନ୍ନାଥ ପାଣି ଚନ୍ଦ୍ରରେଖାର କୃତିତ୍ୱ ବିଷୟରେ ଏତିକି କହି କ୍ଷାନ୍ତ ହୋଇ ନାହାନ୍ତି; ସେ ଚନ୍ଦ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିବା ସଙ୍ଗେ ସଙ୍ଗେ 'ସପ୍ତ ମହାବିଦ୍ୟା' ଅର୍ଥାତ୍ ତନ୍ତ୍ରଶାସ୍ତ୍ରୋକ୍ତ ସପ୍ତମାତୃକାଙ୍କର ସିଦ୍ଧିବିଦ୍ୟାରେ ଦକ୍ଷତା ହାସଲ କରିଥିବାର ବର୍ଣ୍ଣନା କରିଛନ୍ତି ।

× × ×

ରେ ସଖି,
ମୋର ତପସ୍ୟା ନାରଦ ଦେଖି ॥
ଶିଶୁଭକ୍ତ ଯେନ ବରଦେଲେ ମୁନି ପ୍ରସନ୍ନ ହୋଇଣ ମୋତେ ।
ଶାପ ବିମୋଚନ ସପ୍ତ ମହାବିଦ୍ୟା ଶିକ୍ଷାଦେଲେ ଦୟା ଚିତ୍ତେ ॥
ରେ ସଖି !
ସାଧି କଲି ମହାବିଦ୍ୟା ଦେଖି ॥

× × ×

ଦ୍ୱାରବତୀ ଯାଇ ଏହି ମନ୍ତ୍ରେ ମୁହିଁ ନୃସିଂହ ଦ୍ୱାରୀ ତୋଷିଲି ।
ଚର୍ମିଣୀରେ ଚକ୍ର ଭ୍ରମ କରି ବାରାହୀରେ ପାଚେରି ଲଙ୍ଘିଲି ॥
ରେ ସଖି !
ଶୁଳିନୀରେ ଫେଇ କଳଣୀ କି !
କୁମାରୀ ମନ୍ତ୍ରେ ମୁଁ ପୁରରେ ପଶିଲି ବେତାଳେ ପଲଙ୍କ ହରି ।
ଏହି ମନ୍ତ୍ରେ ମୁହିଁ କାର୍ଯ୍ୟସିଦ୍ଧି କଲି ଅକ୍ଷୟ ଦ୍ୱାରକା ପୁରୀ ॥
ରେ ସଖି !
ବୋଲେ ଜଗନ୍ନାଥ ଘେନଦୁଃଖୀ ॥"

ଏ ପ୍ରସଙ୍ଗ ମୂଳ ଭାଗବତ ଗ୍ରନ୍ଥରେ ନ ଥିବାରୁ ଏହା କବିଙ୍କ ନିଜସ୍ୱ କଳ୍ପନା ବୋଲି ବୁଝାଯାଇପାରେ । ତେଣୁ କବି ଜଣେ ସିଦ୍ଧ ତନ୍ତ୍ରସାଧକ ହୋଇ-ଥିବାର ମଧ୍ୟ ଅନୁମାନ କରାଯାଇପାରେ ।

ଉଷାବତୀ ପୁରରେ ପୁରୁଷ ପ୍ରବେଶ କରିଥିବାର ସନ୍ଦେଶ ପାଇବା ମାତ୍ରେ ବାଣାସୁର ପ୍ରଥମେ ଚିତ୍ରରେଖାକୁ ଡକାଇନେଇ ନାନାପ୍ରକାର ଭର୍ତ୍ସନାପୂର୍ଣ୍ଣ ବାକ୍ୟ କହିବା ସଙ୍ଗେ ସଙ୍ଗେ ଦଣ୍ଡବିଧାନ କରିବାର ଧମକ ଦେଇଛନ୍ତି । ଏହାଶୁଣି ନିରାହା ଚିତ୍ରରେଖା ଉପାୟଶୂନ୍ୟା ହୋଇ କ୍ରନ୍ଦନ କରିଛି । କବି ସେହି ପ୍ରସଙ୍ଗକୁ ଗୀତାଭିନୟରେ ଦେଖାଇବାର ପ୍ରୟାସ କରିଥିବାରୁ ତଦୁପଯୋଗୀ ଶବ୍ଦବିନ୍ୟାସ କରି ଗୀତ ରଚନା କରିଛନ୍ତି ।

'ବାଣାସୁର'—

ଚନ୍ଦ୍ରରେଖା ବୃଦ୍ଧି ବାଣାସୁର ଧାଇ ଉଠେ କମ୍ପମାନ ହୋଇ ।
ଅଲେଲେ ପାମରୀ ବୋଲିଣ ଖଡ୍ଗର ଚମକ କୋପେ କହଇ ॥
ଅଲେ ପାମରୀ ରଣ୍ଡ !
ଆଜ କାଟିବି ତୋହର ମୁଣ୍ଡ ॥
ଏଡ଼େକ ସାହସ କାଳସର୍ପବିଷ ଜାଣୁ ଜାଣୁ ଗ୍ରାସୁ ବସି ।
ଯମପୁରେ ପଶି ଦ୍ୱେଶ କରୁ ଆସି ତୋର କାଳଦଣ୍ଡ ଫାଶି ॥
ଅଲେ କୁଳ କଳଙ୍କି !
ଏଡ଼େ ଗର୍ବ ତୋହର କାହିଁକି ?
କହ କହ ତୁହି ସହକାରୀ ହୋଇ କାହାକୁ ଆଣିଛୁ କହ ।
ବ୍ରହ୍ମା ସର୍ଜନାରେ ବ୍ରହ୍ମାଣ୍ଡ ମଧ୍ୟରେ କେ ଅଛି ଏଡ଼େ ନିର୍ଭୟ ॥
ଅଲେ ଡାକିନୀ ଘୁର ।
କହ କୁଟ୍ଟଣୀ ହୋଇଛୁ କା'ର !

× × ×

ଚନ୍ଦ୍ରରେଖା—ଅତି ଦୁଃଖଭରେ ଚନ୍ଦ୍ରରେଖା ସେ କାନ୍ଦଇ ।
ବିନା ଦୋଷେ ଦଣ୍ଡ ମୋତେ ଦିଅ କାହିଁ ପାଇଁ ॥
ମୁଁ ଦୁଃଖିନୀ ନାରୀ ତୁମ୍ଭ ସେବକୀ ଗୋସାଇଁ ।
ତୁମ୍ଭ ବିନୁ ସାହା ମୋର ଆନ କେହି ନାହିଁ ॥
ପୋଡ଼ୁ ପୋଡ଼ୁ ମନ୍ଦକର୍ମ ପୋଡ଼ୁ ମୋ ଜୀବନ ।
ପୋଡ଼ୁ ପୋଡ଼ୁ ଅଭାଗିନୀ ପୋଡ଼ୁ କୁଳ ଧର୍ମ ॥

× × ×

କାହାକୁ କହିବ ମୋର ବଡ଼ କର୍ମ ମନ୍ଦ ।
ବୋଲେ ଜଗନ୍ନାଥ ଜାଗୁ ଜାଗୁ କଲ ଦ୍ୱନ୍ଦ ॥"

ଉକ୍ତ ପ୍ରସଙ୍ଗ ମଧ୍ୟ ମୂଳ ଭାଗବତରେ ନାହିଁ । କବି ତାଙ୍କ ପ୍ରସଙ୍ଗ ପରି ଏହି ପ୍ରସଙ୍ଗଟିକୁ ମଧ୍ୟ ନିଜର କଳ୍ପନା ଶକ୍ତି ବଳରେ ଦୁଇଟି ଗୀତ ରଚନା କରି ଗୀତାଭିନୟଟିର ଗୁଣର୍ଦ୍ଧିକ ସୌନ୍ଦର୍ଯ୍ୟ ବୃଦ୍ଧି କରିଛନ୍ତି ।

କନ୍ୟାନ୍ତଃପୁରରେ ଅନିରୁଦ୍ଧଙ୍କୁ ଦେଖି ବାଣାସୁର କୋପରେ ପ୍ରଜ୍ୱଳିତ ହୋଇ ଉଠିଛି । ସେହି ପ୍ରସଙ୍ଗରେ ବାଣାସୁର ଓ ଅନିରୁଦ୍ଧ ମଧ୍ୟରେ ଉକ୍ତ ପ୍ରତ୍ୟୁକ୍ତ ମୂଳ ଭାଗବତରେ ନ ଥିଲେ ମଧ୍ୟ ଅନ୍ୟାନ୍ୟ କବିଙ୍କ ପ୍ରଣୀତ କାବ୍ୟ ଓ ଜଗନ୍ନାଥ ପାଣିଙ୍କ ଉଷାବତୀ ହରଣ ଗୀତାଭିନୟରେ ପରିଦୃଷ୍ଟ ହୁଏ । ବିଶେଷତଃ ପ୍ରସ୍ତୁତ ପୁସ୍ତକରେ ପ୍ରଦତ୍ତ ଉକ୍ତ ପ୍ରତ୍ୟୁକ୍ତ ନାଟକୀୟତା ଦୃଷ୍ଟିରୁ ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଛି । କାରଣ ସାମାଜିକମାନଙ୍କ ମନରେ କୌତୂହଳ ଜାତ କରିବା ପାଇଁ କବି ଜଗନ୍ନାଥ ପାଣି ଉଭୟ ବାଣାସୁର ଓ ଅନିରୁଦ୍ଧଙ୍କ ମଧ୍ୟରେ କୌତୂହଳୋଦ୍ଦୀପକ ଉକ୍ତ ପ୍ରତ୍ୟୁକ୍ତିର ଅବତାରଣା କରିଛନ୍ତି । ଏହା ନାଟକୀୟ ଦୃଷ୍ଟିକୋଣରୁ ବେଶ୍ ଉପାଦେୟ ହୋଇଛି ।

"ବାଣାସୁର—ମଲୁ ମଲୁ ଏବେ ଇଷ୍ଟ ଦେବତା ସୁମର ।

× × ×

ଅନିରୁଦ୍ଧ—ମୋତେ ମାରିବାକୁ ଭବେ କେ ହୋଇବ କ୍ଷମ ॥

× × ×

ବାଣାସୁର—କହରେ ପାମର ତୋର କେଉଁ ରାଜ୍ୟେ ଘର ।
କି ନାମ ତୋହର କହ କାହାର କୁମର ॥
ଅନିରୁଦ୍ଧ—ଅଜସ୍ର ଦ୍ୱାରକା ପୁରେ ଅଟେ ମୋର ଘର ।
ପ୍ରଦ୍ୟୁମ୍ନ କୁମାର ଅନିରୁଦ୍ଧ ନାମ ମୋର ॥
ବାଣାସୁର—ଅଗମ୍ୟ ପୁରକୁ ତୁରେ କେମନ୍ତେ ଆଇଲୁ ।
ଏଡ଼େକ ସାହସ ଯମ ପୁରେ ତୁ ପଶିଲୁ ॥
ଅନିରୁଦ୍ଧ—ଯମ ପରେ ଦ୍ୱିତୀୟ ଯମପରି ଯେ ଜଗତେ ।
ତାଙ୍କ ପ୍ରସାଦେ ଏ ପୁର ମାନ ଅବା କେତେ ?
ବାଣା—ଧିକ ତୁମ୍ଭ ବଡ଼ପଣ ଧିକ ତୁମ୍ଭ ନାମ ।
ଚୋରି କରି କରି ଗଲା ତୁମ୍ଭ ଜନ୍ମ ॥
ଅନି—ତୋ ପରି ନିର୍ଲ୍ଲଜ ଆଉ କେ ଅଛୁ ସଂସାରେ ।
ଯୁବା କନ୍ୟା ବିଭା ନ ଦେଇ ରଖିଛୁ ଘରେ ॥

ପ୍ରସ୍ତୁତ ଗୀତାଭିନୟ ଉଷାବତୀ ହରଣ ପୁସ୍ତକରେ କବି ଆଦିରସ ଓ ବୀରରସକୁ ସମାନ୍ତରାଳ ଭାବରେ ବର୍ଣ୍ଣନା କରିଛନ୍ତି । ଶାସ୍ତ୍ରୀୟ ନିୟମ ରକ୍ଷା କରିବାକୁ ଯାଇ କବି ଆଦିରସ ଓ ବୀରରସ ମଧ୍ୟରେ ଗୋଟିଏ ବିଶ୍ରାମଦାୟକ ରସର ପରିବେଷଣ କରିଛନ୍ତି । ତା'ର ଫଳରେ ବୀର ଓ ଶୃଙ୍ଗାର ପ୍ରତ୍ୟେକ ପ୍ରତ୍ୟେକର ପରିପୂରକ ରସ ଭାବରେ ଏଠାରେ ପ୍ରତିଭାତ ହୋଇଛନ୍ତି । ଅବଶ୍ୟ କବି ଜଗନ୍ନାଥ ପାଣି ପୂର୍ବୋକ୍ତ 'ଲୀଳାବତୀ ହରଣ' ପରି ଏଠାରେ ଆଦିରସର ଉଦ୍‌ବେଳ ଉତ୍ସ ସୃଷ୍ଟି କରିନାହାନ୍ତି; ତଥାପି ଯେତିକ ବର୍ଣ୍ଣନା କରିଛନ୍ତି ତାହା ଅତ୍ୟନ୍ତ ଚମତ୍କାରିତ ହୋଇଛି ।

"ଗଣ୍ଡେ ଚୁମ୍ବ ଦେଇ ଦଣ୍ଡେ ରହେ ସ୍ତମ୍ଭୀଭୂତେ ।
ତରଳିତ ହୃଦ ପୁଲକିତ ଅଶ୍ରୁ ନେତ୍ରେ ॥
କୁଚେ ଲଗାଇଣ ଉଚ୍ଚେ ରୋଦନ କରଇ ।
କି ଦୋଷ କଲି କି କଥା ନ କୁହ କିମ୍ପାଇଁ ॥
କୋଳରେ ପକାଇ ବେନି ଜାନୁକୁ ଭିଡ଼ଇ ।
ମୁଁ ତୁମ୍ଭର ଦାସୀ ବୋଲି କରକୁ ଯୋଡ଼ଇ ॥"

(ଅନିରୁଦ୍ଧର ଚନ୍ଦ୍ର ଦର୍ଶନ ପ୍ରସଙ୍ଗ)

"ଫୁଟି ଚମ୍ପା ରଙ୍ଗ ଦଶେ ବେନି ଜଙ୍ଘ ସନ୍ଧିନାହିଁ ଥିବୁ ଜନ୍ତ,
ସେ ଭଗ୍ନ ପନ୍ତ ।
କାମେ କମ୍ପ କମ୍ପ ଦେହ୍ମା ।
ଘନ ଘନ ଉଠେ ହାଇ ॥
ପରମ ଗ୍ରୁଢ଼ିଣ ମରମ ବାଧାରେ ଆଡ଼ ଲକେ ଉଭା ହୋଇ,
ସେ ଗୃହମୂର୍ତ୍ତି ॥
ସଙ୍ଗୀତ ଗାୟନ ଉଚ୍ଚେ ।
ଇଙ୍ଗିତ ଭଙ୍ଗୀକି ରଚେ ॥
ବେନି ଭୁଜ ଟେକି କବରୀ ବାନ୍ଧଇ ଅଞ୍ଚଳ ଘୋଇ କୁଚରେ,
ସେ କି ସୁପଷ୍ଟେ ।
ଅଧ କାମେ ବାଇ ହୋଇ ।
ବଢ଼ ଅଣେ ଲୋଭ ବନ୍ଧ ॥
ନେତେବେଳେ ଜଙ୍ଘୁ ବସନ ଟୋଳିଣ ହସେ କର କର ହୋଇ,
ସେ ବାଟକୁ ଚାହିଁ ।
ନାଚନ୍ତେ ଅଙ୍ଗୁଳି ମାର ।
ନୟନ ଦାଅଇ ଠାର ॥

ବୋଲେ ଜଗନ୍ନାଥ ଦେଖି ଏ ଭଙ୍ଗୀକି ଅନିରୁଦ୍ଧ କାମେପାଶ,
ସେ ଅନୁସରି ॥"

କବି 'ହାରାବତୀ ହରଣ' ପରି ପ୍ରସ୍ତୁତ ପୁସ୍ତକରେ ମଧ୍ୟ ଅନିରୁଦ୍ଧଙ୍କର ଚରିତ୍ର ଅର୍ଜୁନ ପରି ଅତ୍ୟନ୍ତ ସଂଯମୀ ତଥା ନିଷ୍ଠାବାନ୍ କରି ଗଢ଼ିନଥିଲେହେଁ, ଯଦୁବଂଶ ସନ୍ତାନର ମର୍ଯ୍ୟାଦା ପଦେ ପଦେ ରକ୍ଷାକରି ଅନିରୁଦ୍ଧଙ୍କର ବ୍ୟବହାର କୁଶଳତା ଦର୍ଶାଇ-ଛନ୍ତି । ଚିତ୍ରରେଖାର ସିଦ୍ଧବିଦ୍ୟା ବଳରେ ଅନିରୁଦ୍ଧ ଶୋଣିତପୁରର କନ୍ୟାନ୍ତଃପୁରରେ ପ୍ରବେଶ କରି ଅପରୂପ ଲାବଣ୍ୟମୟୀ କନକ ପ୍ରତିମାତୁଲ୍ୟ ଊଷାବତୀର ନିର୍ଲଜ୍ଜ କାମଚେଷ୍ଟା ସନ୍ଦର୍ଶନ କରି ମଧ୍ୟ ବଂଶମର୍ଯ୍ୟାଦା ପ୍ରତି ଦୃଷ୍ଟି ରଖି ସେ କୁମାରୀର ପ୍ରଣୟ ନିବେଦନରେ ହଠାତ୍ ଭଳି ଯାଇନାହିଁ । ପିତାଗୃହରେ କନ୍ୟାର ମାନମର୍ଯ୍ୟାଦା ସହିତ ବଂଶର ମାନମର୍ଯ୍ୟାଦା କିପରି ଜଡ଼ିତ ଏବଂ ପରନାରୀ ହରଣର ପରିଣାମ ସମ୍ବନ୍ଧରେ ଚେତାବନୀ ଶୁଣାଇ କବି ଅନିରୁଦ୍ଧଙ୍କର ଚରିତ୍ର ନିଷ୍କଳଙ୍କ କରି ଗଠନ କରିଛନ୍ତି । କବି ଜଗନ୍ନାଥ ନିଜ ସମୟର ସାମାଜିକ ବ୍ୟବସ୍ଥା ପ୍ରତି ସଦାସର୍ବଦା ଜାଗ୍ରତ ରହି ସ୍ୱରଚିତ କାବ୍ୟର ନାୟକକୁ ସମାଜର ଅନୁକୂଳ କରାଇବାରେ ତିଳେ-ହେଲେ ତ୍ରୁଟି ପ୍ରଦର୍ଶନ କରିନାହାନ୍ତି । ଏହାହିଁ କବିଙ୍କର ନୈପୁଣ୍ୟ ତଥା କବି ପ୍ରତିଭାର ବୈଶିଷ୍ଟ୍ୟ । କବି ଗୀତାଭିନୟ ଶେଷରେ ଦ୍ୱାରକାଧୀଶ ଶ୍ରୀକୃଷ୍ଣଙ୍କ ପାଦ-ପଙ୍କଜରେ ଧ୍ୟାନ କରି ପୁସ୍ତକଟିକୁ ଶେଷ କରି ପାଠକ ଓ ସାମାଜିକମାନଙ୍କୁ ରସ-ପାରାବାରରେ ନିମଜ୍ଜିତ କରାଇଛନ୍ତି ।

"ଦ୍ୱାରକା ନାୟକ କୃଷ୍ଣ ଚରଣ ପଙ୍କଜ ।
ଛନ୍ଦ ଶେଷେ ଭଣେ କବି ଜଗନ୍ନାଥ ଦ୍ୱିଜ ॥"

---

# ପାରିଜାତ ହରଣ

ଧ୍ରୁବ, ପ୍ରହ୍ଲାଦ, ଉଷା ଅନିରୁଦ୍ଧ, ଦକ୍ଷଯଜ୍ଞ ଚରିତ ପରି 'ପାରିଜାତ ହରଣ' ପ୍ରସଙ୍ଗ ମଧ୍ୟ ଶ୍ରୀମଦ୍ ଭାଗବତରୁ କବି ଜଗନ୍ନାଥ ପାଣି ଗ୍ରହଣ କରିଛନ୍ତି । କାରଣ ତତ୍କାଳୀନ ସମାଜରେ ପୌରାଣିକ ଉପାଖ୍ୟାନଯୁକ୍ତ କାବ୍ୟ ଓ ଗୀତାଭିନୟ ସମାଜରେ ଅତ୍ୟନ୍ତ ଲୋକପ୍ରିୟ ହୋଇ ଉଠିଥିଲା । ଏହାର କାରଣ ସ୍ୱରୂପ ଏତିକି କୁହାଯାଇପାରେ ଯେ, ମହାବୀର ସମ୍ରାଟ୍ ଖାରବେଳଙ୍କ ସମୟରୁ କାହିଁକି ଅନ୍ତର ପୂର୍ବରୁ ଅର୍ଥାତ୍ ସମ୍ରାଟ୍ ଅଶୋକଙ୍କ କଳିଙ୍ଗ ବିଜୟ ପୂର୍ବରୁ ଆରମ୍ଭ କରି ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଓଡ଼ିଆମାନେ ମଧ୍ୟଯୁଗୀୟ ରାଜପୁତ୍ର ବୀର-ମାନଙ୍କ ଠାରୁ ଆହୁରି ଦୁର୍ଦ୍ଧର୍ଷ ଯୁଦ୍ଧରେ ଲିପ୍ତ ରହି ଗୋଟିଏ ବୀରଜାତି ରୂପେ 'କଳିଙ୍ଗାଃ ସାହସିକାଃ' ଆପ୍ତବଚନର ଚରିତାର୍ଥ କରିଥିଲେ । ଏହି ଦୀର୍ଘ ଅଠରଶହ ବର୍ଷ ମଧ୍ୟରେ ଉତ୍କଳୀୟମାନେ ଯୁଦ୍ଧ, ରାଜ୍ୟଜୟ ତଥା ପ୍ରଭୁପତ୍ତି ବିସ୍ତାରକୁ ହିଁ ନିଜର ଜାତୀୟ ଧର୍ମ ରୂପେ ଗ୍ରହଣ କରିଥିଲେ । କିନ୍ତୁ ହଜାର ହଜାର ବର୍ଷ ବ୍ୟାପି ଗୋଟିଏ ପ୍ରକାର ମନୋବଳ ନେଇ କୌଣସି ଜାତି ଭୂପୃଷ୍ଠରେ ରହିପାରେନାହିଁ । ଉତ୍ଥାନର ପତନ, ବୃଦ୍ଧିର କ୍ଷୟ, ସୁଖ ପରେ ଦୁଃଖ ଏହା ସୃଷ୍ଟିର ଚିରନ୍ତନ ନିୟମ । ତେଣୁ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ଗଜପତି ପ୍ରତାପରୁଦ୍ର ଦେବଙ୍କ ପରେ, ଅର୍ଥାତ୍ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଦାକ୍ଷିଣାତ୍ୟରୁ ପ୍ରବଳ ବେଗରେ ମାଡ଼ିଆସୁଥିବା ଶ୍ରୀ ନିମ୍ବାର୍କଙ୍କ ପ୍ରବର୍ତ୍ତିତ ରାଧାକୃଷ୍ଣ ପ୍ରେମଭକ୍ତିମୂଳକ ବୈଷ୍ଣବ ମତବାଦ ଓଡ଼ିଶାର ଘର କେଦାରକୁ ପ୍ଲାବିତ କରିଦେଲା । ପ୍ରାଚୀନଦୀର ତଟବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମର ପ୍ରସିଦ୍ଧ ଓଡ଼ିଆ ବୈଷ୍ଣବ କବି ଶ୍ରୀ ଜୟଦେବଙ୍କ ଶ୍ରୀ ଗୀତଗୋବିନ୍ଦର 'ଚଳ ସଖି କୁଞ୍ଜଂ ସତିମିର ପୁଞ୍ଜଂ', 'ପୀନପୟୋଧର ପରିସର ମର୍ଦ୍ଦନ ଚଞ୍ଚଳ କରଯୁଗଶାଳୀ', 'ଦେହି ସୁନ୍ଦରି ଦର୍ଶନଂ ମୟି ମନ୍ମଥେନ ଦୁନୋମି' ପ୍ରଭୃତି ଜନଜୀବନକୁ ଅନୁରାଗମୟ କରିବାକୁ ପ୍ରୟାସ କରୁଥିବାବେଳେ, ଗୌଡ଼ ଲକ୍ଷ୍ମଣାବତୀ ବିଜୟୀ ନରସିଂହଦେବ, ଆଗଙ୍ଗା ଗୋଦାବରୀ ସୀମା ବିସ୍ତୃତକାରୀ ବୀର କପିଳେନ୍ଦ୍ର ଦେବ ଓ କାଞ୍ଚିବିଜେତା ପୁରୁଷୋତ୍ତମ ଦେବ ଶିଥିଳିତ ଜାତୀୟ ଜୀବନକୁ ବୀରରସର ଜ୍ୱାଳାମୟୀ ଧାରାରେ

ସିକ୍ତ କରିଦେଇଥିଲେ । କିନ୍ତୁ ଶ୍ରୀ ଚୈତନ୍ୟଙ୍କ ଉଦଣ୍ଡ କୀର୍ତ୍ତନ ତଥା ପରକୀୟା ଭକ୍ତିଧାରାର ପ୍ରବଳ ବାତ୍ୟାରେ ଅଠରଶହ ବର୍ଷର କୀର୍ତ୍ତିସୌଧ ଧୂଳିସାତ୍ ହୋଇଗଲା । ଯୁଦ୍ଧରୁ ନିଷ୍କୃତି ପାଇ କୀର୍ତ୍ତନର ଉଦ୍ଦଣ୍ଡତାରେ ଗୋଟିଏ ଜାତିର ବୀରୋଚିତ ଧର୍ମ କେଉଁଆଡ଼େ ଉଭେଇ ଗଲା । ତା'ର ଫଳରେ ସୁଲତାନ, ମୋଗଲ, ମରହଟ୍ଟା ଓ ପରିଶେଷରେ ଇଂରେଜମାନଙ୍କ ଦ୍ଵାରା ଅଧ୍ୟୁଷିତ ହୋଇ ଓଡ଼ିଆ ଜାତି କେବଳ ପୁରାଣ ଶ୍ରବଣରେ ମୁକ୍ତିଲାଭକୁ ଜୀବନର ଶ୍ରେଷ୍ଠ ଧନ ମନେକଲା । ତେଣୁ ଆମ ଦେଶରେ ସେହି ସମୟ ମଧ୍ୟରେ ଶତ ଶତ ପୁରାଣ, କାବ୍ୟ ରଚିତ ହେଲା ଏବଂ ଲୋକେ ପୌରାଣିକ ଆଖ୍ୟାୟିକା ମାଧ୍ୟମରେ ଯେ କୌଣସି ସମାଜଗର୍ହିତ ବିଷୟବସ୍ତୁକୁ ମଧ୍ୟ ଆଦର୍ଶ ଚରିତ ରୂପେ ଆଦର କଲେ । ତାହାର ଫଳସ୍ୱରୂପ ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ମଧ୍ୟ ଓଡ଼ିଶାରେ ପୌରାଣିକ କାବ୍ୟ ନାଟକ, ଲୀଳା, ଗୀତାଭିନୟ ଆଦିର ପରମ୍ପରା ଅବ୍ୟାହତ ରହିଥିଲା ।

ପାରିଜାତ ହରଣ ପ୍ରସଙ୍ଗ ହରିବଂଶ, ଶ୍ରୀମଦ୍ ଭାଗବତ ଆଦି ଅନେକ ପୁରାଣରେ ବର୍ଣ୍ଣିତ ହୋଇଛି । କିନ୍ତୁ ଶ୍ରୀମଦ୍ ଭାଗବତ ହିଁ ସବୁ ପୁରାଣର ମୂଳସ୍ରୋତ ବୋଲି ଜଣାଯାଏ । କିନ୍ତୁ ଭାଗବତର ଓଡ଼ିଆ ଅନୁବାଦରେ ଉକ୍ତ ପ୍ରସଙ୍ଗଟିକୁ କବି ଜଗନ୍ନାଥ ଦାସ ଅତି ସଂକ୍ଷେପରେ ବର୍ଣ୍ଣନା କରିଛନ୍ତି ।

ଇନ୍ଦ୍ରଙ୍କ ଅନୁରୋଧ କ୍ରମେ ଶ୍ରୀକୃଷ୍ଣ ସତ୍ୟଭାମାଙ୍କ ସଙ୍ଗରେ ଧରି ଗରୁଡ଼ ପୃଷ୍ଠରେ ବସି ନାରକାସୁରର ବଧ ନିମିତ୍ତ ପ୍ରାଗ୍ ଜ୍ୟୋତିଷପୁର (ଆଧୁନିକ ଆସାମ, ମେଘାଳୟ ଆଦି ଅଞ୍ଚଳ)କୁ ଗମନ କଲେ । ସେଠାରେ ନାରକାସୁରକୁ ବଧକରି ତା'ର ପୁତ୍ରକୁ ଅଭୟ ଦାନ କରିବା ସଙ୍ଗେ ସଙ୍ଗେ ଦେବତାମାନଙ୍କଠାରୁ ଅପହୃତ-ଅମୃତ କୁଣ୍ଡଳ, ବରୁଣ ଛତ୍ର, ମଣିଗିରି ଘେନି ସ୍ୱର୍ଗପୁରରେ ପ୍ରବେଶ ହେଲେ । ଶ୍ରୀକୃଷ୍ଣ ଅଦିତିଙ୍କୁ 'ଅମୃତ କୁଣ୍ଡଳ' ପ୍ରତ୍ୟର୍ପଣ କରନ୍ତେ, ଶଚୀ ସହିତ ପୁରନ୍ଦର ତାଙ୍କ ଶ୍ରୀଚରଣରେ ବନ୍ଦନା କଲେ । ଏହିପରି ଔପଚାରିକତା ପରେ ଶ୍ରୀକୃଷ୍ଣ ଦ୍ୱାରକା ଫେରିଯିବାକୁ ବସନ୍ତେ, ସତ୍ୟଭାମା ପାରିଜାତ ପୁଷ୍ପ ବୃକ୍ଷଟିଏ ଦ୍ୱାରକା ନେବାପାଇଁ ଅଭିଳାଷ ପ୍ରକାଶ କଲେ । ଶ୍ରୀକୃଷ୍ଣ ସଙ୍ଗେ ସଙ୍ଗେ ଗୋଟିଏ ପାରିଜାତ ପୁଷ୍ପ ବୃକ୍ଷ ଓପାଡ଼ି ଗରୁଡ଼ ଉପରେ ରଖନ୍ତେ, ବନ ରକ୍ଷକ ଓ ବାସବସମେତ ଅନ୍ୟାନ୍ୟ ଦେବବୃନ୍ଦ ବିଷ୍ଣୁମାୟା ବୁଝିନପାରି, ତାଙ୍କ ସହିତ ଘୋରଯୁଦ୍ଧରେ ବ୍ୟାପୃତ ହେଲେ । ଶ୍ରୀକୃଷ୍ଣ ତତ୍କ୍ଷଣାତ୍ ଦେବବଳଙ୍କୁ ପରାସ୍ତ କରି ବଳପୂର୍ବକ ନନ୍ଦନ ବନରୁ ପାରିଜାତ ବୃକ୍ଷ ଆଣି ସତ୍ୟଭାମାଙ୍କ ପୁରରେ ରୋପଣ କଲେ ।

"ସନ୍ତୋଷ କରି ଦେବବୃନ୍ଦ, ଦ୍ୱାରିକା ଗମନେ ଆନନ୍ଦ ।
ସଙ୍ଗେ ସୁନ୍ଦରୀ ସତ୍ୟାବତୀ, ବୋଲନ୍ତି ଶୁଣ ଯଦୁପତି ॥

ଦେଖି ସୁଗନ୍ଧ ପାରିଜାତ, ଗନ୍ଧେ ମୋହିତ ମୋର ଚିତ୍ତ ।
ସିନ୍ଧୁ ମନ୍ଥନୁ ଯେ ପ୍ରକାଶେ, ବଜିଲ ପୁନାପ୍ରାପ୍ତ ଦିଶେ ॥
ଏ ବୃକ୍ଷ ନରଲୋକେ ନାହିଁ, ମୋର ମନ୍ଦିରେ ନେବ ମୁହିଁ ।
ଜଗନ୍ନାଥ ଘେନ ପାରିଜାତ, ସତ୍ୟା ବଚନେ ଗୋପୀନାଥ ॥
ବୃକ୍ଷ ଉପାଡ଼ି ଅଗ୍ରଭରେ, ଥୋଇଲେ ଗରୁଡ଼ ଉପରେ ।
ବନ ରକ୍ଷକ ଯେତେ ଥିଲେ, ଗୋବିନ୍ଦ ସଙ୍ଗେ ଯୁଦ୍ଧ କଲେ ॥
ବାସବ ଆଦି ଦିଗପାଳ, ଆବୋରି ଆକାଶ ମଣ୍ଡଳ ।
କୃଷ୍ଣର ସଙ୍ଗେ କଲେ ରଣ, ଜ୍ଞାନ ହାରିଲେ ଦେବଗଣ ॥
ବିଷ୍ଣୁ ମାୟାରେ ଭୋଳ ହୋଇ, ଅଜ୍ଞାନେ ତମ ଗୁଣେ ବନ୍ଧି ।
ଯାହାର ପାଦପଦ୍ମ ନିତ, ମୁକୁଟ ଶିରେ ଯେ ଲଗାନ୍ତି ॥
ସେ ହରି ମହିମା ନ ଜାଣି, ମନୁଷ୍ୟ ପ୍ରାୟେ ତାଙ୍କୁ ମଣି ।
ଦେବଙ୍କ ବଳ ବେଗେ ହରି, ଏବେ ହୋ ଶୁଣ ଦଣ୍ଡଧାରୀ ॥

× × ×

ସତ୍ୟଭାମାର ପୁରେ ଆଣି, ଅନନ୍ଦେ ପ୍ରଭୁ ଚକ୍ରପାଣି ।
ସ୍ଥାପିଲେ ପାରିଜାତ ବନ, ଗନ୍ଧେ ଲୋଭନ୍ତ ସର୍ବଜନ ॥
ତାହାର ଗନ୍ଧ୍ୟା ଲାଗି ଦେହେ, ବୃଦ୍ଧ ଦିଶନ୍ତି ଯୁବା ପ୍ରାୟେ ।

(ଭାଗବତ, ଦ୍ୱାରକା ଲୀଳା, ୭୪ତମ ଅଧ୍ୟାୟ)

ଏହି ଆଖ୍ୟାୟିକାକୁ ଭିତ୍ତି କରି କବି ଜଗନ୍ନାଥ ପାଣି 'ପାରିଜାତ ହରଣ' ରଚନା କରିଛନ୍ତି । କବି ଜଗନ୍ନାଥ ସାମାଜିକମାନଙ୍କ ମନୋରଞ୍ଜନ ନିମିତ୍ତ ସ୍ୱରଚିତ ଗୀତାଭିନୟଟିକୁ ଭିନ୍ନ ଭାବରେ ସଜ୍ଜିତ କରାଇଛନ୍ତି । ପାଠକମାନଙ୍କ ଅବଗତି ନିମିତ୍ତ କବି ଜଗନ୍ନାଥ ପାଣିଙ୍କ ପାରିଜାତ ହରଣର କଥାବସ୍ତୁ ଏଠାରେ ପ୍ରଦତ୍ତ ହେଲା ।

ଶ୍ରୀକୃଷ୍ଣଙ୍କ ବରଦହସ୍ତ ଲାଭକରି ଯଦୁବଂଶୀୟମାନେ ମହାସୁଖରେ କାଳ-ଯାପନ କରୁଥିଲେ । ଦିନେ ରୁକ୍ମିଣୀ ଦେବୀ ମନମୋହିନୀ ବେଶରେ ସଜ୍ଜିତା ହୋଇ ଶ୍ରୀକୃଷ୍ଣଙ୍କ ଆଗମନକୁ ପ୍ରତୀକ୍ଷା କରି ରହିଲେ । ଶ୍ରୀକୃଷ୍ଣ ରୁକ୍ମିଣୀଙ୍କ ମନୋଭାବ ଜାଣି ପ୍ରିୟାମନ ବୁଝିବା ଲାଗି ବ୍ୟଙ୍ଗକରି ଶିଶୁପାଳଙ୍କ ତୁଳନାରେ ସେ ଆଦୌ ଯୋଗ୍ୟ ନୁହନ୍ତି ବୋଲି ଅଭିମତ ପ୍ରକାଶ କଲେ ଏବଂ ପୁଣି ଶିଶୁପାଳଙ୍କ ପୁରକୁ ଫେରିଯିବା ଲାଗି ତାଙ୍କୁ କହିଲେ । ପ୍ରାଣପ୍ରିୟଙ୍କର ଏପରି କଠୋର ବଚନ ଶୁଣି ରୁକ୍ମିଣୀ ହତଜ୍ଞାନ ହୋଇପଡ଼ିଲେ ଏବଂ ତାଙ୍କର ବେଶ ବସନର ଜ୍ଞାନ ରହିଲା ନାହିଁ । ଏହା ଦେଖି ଶ୍ରୀକୃଷ୍ଣ ବ୍ୟସ୍ତ ହୋଇ ରୁକ୍ମିଣୀଙ୍କୁ ସଚେତନ କରାଇ ଆଶ୍ୱସ୍ତ କଲେ । ରୁକ୍ମିଣୀ ଚେତନା ଲାଭ କରି ନିଜକୁ କୃଷ୍ଣଗତପ୍ରାଣା ବୋଲି ବିନୀତ ବାକ୍ୟ ପ୍ରକାଶ

କଲେ । ପ୍ରଭୁ ପ୍ରିୟା ଉପରେ ସନ୍ତୁଷ୍ଟ ହୋଇ ପରଦିନ ଗରୁଡ଼ ଆରୋହଣପୂର୍ବକ 'ଅମରାବତୀ' ପୁରକୁ ଗମନ କଲେ । ସେଠାରେ ଇନ୍ଦ୍ର ଓ ଇନ୍ଦ୍ରାଣୀ ତାଙ୍କୁ ସ୍ୱାଗତ ଜଣାଇଲେ । କିନ୍ତୁ ଶ୍ରୀକୃଷ୍ଣ ନାରକାସୁରକୁ ମାରି ଅଦିତିଙ୍କ 'କୁଣ୍ଡଳୀ' ଫେରାଇବାକୁ ଆସିଛୁ ବୋଲି ପ୍ରକାଶ କରନ୍ତେ, ଶଚୀଦେବୀ ରୁକ୍ମିଣୀଙ୍କୁ ପାରିଜାତ ପୁଷ୍ପ ଭେଟି ଦେଇ ସମ୍ବର୍ଦ୍ଧନା ଜଣାଇଲେ । ରୁକ୍ମିଣୀ ଦ୍ୱାରକା ଫେରି ଆସିବା ପରେ ରସରାଜ ଶ୍ରୀକୃଷ୍ଣ ପ୍ରିୟାର ଗଳାରେ ପାରିଜାତ ମାଳା ପିନ୍ଧାଇ ବିନୋଦରେ ବିହାରକଲେ ।

ଦିନେ ନାରଦ ସତ୍ୟଭାମାଙ୍କ ପୁରରେ ପ୍ରବେଶ କରି ରୁକ୍ମିଣୀଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଅନୁରାଗ ଓ ସ୍ୱର୍ଗର ପାରିଜାତ ଆଣି ପ୍ରାଣପ୍ରିୟାଙ୍କୁ ଦାନ କରିଥିବା ପ୍ରସଙ୍ଗ ଅତିରଞ୍ଜିତ କରି ତାଙ୍କ ଆଗରେ ପ୍ରକାଶ କଲେ । ସତ୍ୟଭାମା ଏହା ଶୁଣି ମନେ ମନେ ନିଜକୁ ଧିକ୍କାର କରି ଆତ୍ମଅବମାନନାରେ ପଡ଼ିଗଲେ । ଶ୍ରୀକୃଷ୍ଣ ଏହା ଜାଣି ପ୍ରିୟାର ମାନଭଞ୍ଜନ ନିମିତ୍ତ ସତ୍ୟଭାମାଙ୍କ ପୁରରେ ପ୍ରବେଶ ହୋଇ ତୁଷ୍ଟି ପ୍ରକାଶ କରନ୍ତେ, ସତ୍ୟଭାମା ଅଭିମାନଭରା ସ୍ୱରରେ ନିଜର ଅଭିଯୋଗମାନ ପ୍ରକାଶ କଲେ ଏବଂ ଶ୍ରୀକୃଷ୍ଣ ତା'ର ଉତ୍ତର ଦେଇ ଯେତେ ବୁଝାଇଲେ ହେଁ ସେ ଆଦୌ କିଛି ନବୁଝି ନିଜ ପୁରର ପ୍ରାଙ୍ଗଣରେ ପାରିଜାତ ବୃକ୍ଷ ରୋପଣ କରିବା ଲାଗି ଜିଦ୍ ଧରିଲେ ।

ପରଦିନ ଶ୍ରୀକୃଷ୍ଣ ସତ୍ୟଭାମାଙ୍କ ସହିତ ପୁରନ୍ଦର ପୁରକୁ ଗମନ କଲେ ଏବଂ ସେଠାରେ ମଧ୍ୟ ଇନ୍ଦ୍ରାଣୀ ଇନ୍ଦ୍ରଙ୍କ ସହିତ ତାଙ୍କୁ ସମ୍ବର୍ଦ୍ଧନା ଜଣାଇ ନନ୍ଦନବନ ବୁଲାଇ ଦେଖାଇଦେଲେ । ସତ୍ୟଭାମା ପାରିଜାତ ପୁଷ୍ପ ଦେଖି ତାହା ନେବା ଲାଗି ଆଗ୍ରହ ପ୍ରକାଶ କରନ୍ତେ, ଇନ୍ଦ୍ରାଣୀ ପ୍ରତିବାଦ କଲେ । ତହୁଁ ସତ୍ୟଭାମା ଓ ଇନ୍ଦ୍ରାଣୀଙ୍କ ମଧ୍ୟରେ କଳହ ଲାଗିଲା । ଇନ୍ଦ୍ରାଣୀଙ୍କର ଭର୍ତ୍ସନା ବାକ୍ୟ ଶୁଣି ଶ୍ରୀକୃଷ୍ଣ ସତ୍ୟଭାମାଙ୍କ ମାନ ରକ୍ଷା କରିବା ଲାଗି ଗୋଟିଏ ପାରିଜାତ ବୃକ୍ଷ ଉପାଡ଼ି ଗରୁଡ଼ ପୃଷ୍ଠରେ ସ୍ଥାପନ କଲେ । ତା'ଦେଖି ବନରକ୍ଷକ ଗନ୍ଧର୍ବ ଓ ପରିଶେଷରେ ଦେବଗଣଙ୍କ ସହିତ ଇନ୍ଦ୍ର ଶ୍ରୀକୃଷ୍ଣଙ୍କ ବିରୋଧରେ ଅସ୍ତ୍ରଧାରଣ କଲେ । ଏହାଦେଖି ଶ୍ରୀକୃଷ୍ଣ ଦେବ-ଦୁର୍ଲଭ ଯୁଦ୍ଧରେ ସମସ୍ତଙ୍କୁ ପରାସ୍ତ କରି ସତ୍ୟଭାମାଙ୍କ ସହିତ ଦ୍ୱାରକା ପୁରୀକୁ ଫେରି ଆସିଲେ ଏବଂ ପାରିଜାତ ବୃକ୍ଷଟିକୁ ସତ୍ୟଭାମା ମନ୍ଦିରର ପ୍ରାଙ୍ଗଣରେ ରୋପଣକଲେ ।

ଅନ୍ୟ ଏକ ଦିବସରେ ନାରଦ ସତ୍ୟଭାମା ପୁରରେ ପ୍ରବେଶ କରି, ରୁକ୍ମିଣୀ ଶ୍ରୀକୃଷ୍ଣଙ୍କର ଏକମାତ୍ର ପ୍ରିୟବତୀ ଓ ସେ ସତ୍ୟଭାମାକୁ ପାଦପୃଷ୍ଠରେ ଭଣ୍ଡି ଦେଇଛନ୍ତି ବୋଲି ଉତ୍କଟ ବାଣୀ ପ୍ରକାଶ କଲେ । ତହୁଁ ସତ୍ୟଭାମା ପ୍ରଭୁଙ୍କ ପ୍ରିୟତମା ହେବାର ଉପାୟ ନାରଦଙ୍କୁ ପଚାରନ୍ତେ, ସେ ବଶୀକରଣ ମନ୍ତ୍ର ଜପ, ହୋମ, ବ୍ରାହ୍ମଣ ଭୋଜନ, ହରଗୌରୀ ପୂଜା ଓ ପରିଶେଷରେ ଦକ୍ଷିଣା ସ୍ୱରୂପ ଶ୍ରୀକୃଷ୍ଣଙ୍କୁ ଦାନ ଦେଲେ ପ୍ରଭୁ ବଶ

ହେବେ ବୋଲି ବିଧାନ ଦେଲେ । ସତ୍ୟଭାମା ତଦନୁସାରେ ବ୍ରତପୂର୍ଣ୍ଣ କରି ଶ୍ରୀକୃଷ୍ଣଙ୍କୁ ଦକ୍ଷିଣା ସ୍ୱରୂପ ନାରଦଙ୍କୁ ଅର୍ପଣ କଲେ ଏବଂ ନାରଦ ଆନନ୍ଦ ମନରେ ଦ୍ୱାରକା ରାଜସଭାରେ ପ୍ରବେଶ ହେଲେ ଏବଂ ଶ୍ରୀକୃଷ୍ଣ ନିଜର ଦାନ ସମ୍ପତ୍ତି ବୋଲି ଦାବୀ କରି ତାଙ୍କୁ ସାଙ୍ଗରେ ନେବାଲାଗି ଜିଦ୍ ଧରିଲେ । ଏହାଦେଖି ସତ୍ୟଭାମା ନିଜର ଭ୍ରମ ବୁଝିପାରି ଶ୍ରୀକୃଷ୍ଣଙ୍କୁ ନେଇ ନ ଯିବା ଲାଗି ନାରଦଙ୍କଠାରେ ଅନୁନୟ କଲେ । ତହୁଁ ନାରଦ ଶ୍ରୀକୃଷ୍ଣଙ୍କ ଓଜନର ସୁବର୍ଣ୍ଣ ନେଇ ସନ୍ତୁଷ୍ଟ ହେବେ ବୋଲି ଜଣାନ୍ତେ, ସତ୍ୟଭାମା ନିଜର ଅଲଙ୍କାର ସମେତ ବହୁ ସୁବର୍ଣ୍ଣରେ ପ୍ରଭୁଙ୍କୁ ତୁଳିବାକୁ ଚେଷ୍ଟାକରି ବିଫଳ ହେଲେ । ଏହାମଧ୍ୟରେ ଅନ୍ୟ ପାଟବଂଶୀ ଓ ଦ୍ୱାରକାପୁରର ରମଣୀମାନେ ସତ୍ୟଭାମାଙ୍କୁ ନାନାପ୍ରକାର ଭର୍ତ୍ସନା ବାଣୀରେ ଧିକ୍କାର କଲେ । ଏହାଶୁଣି ବିକୃଷ୍ଣ ସତ୍ୟଭାମା ଉପାୟଶୂନ୍ୟା ହୋଇ କ୍ରନ୍ଦନ କଲେ । ତହୁଁ ପ୍ରଭୁ ଶ୍ରୀକୃଷ୍ଣ ପ୍ରିୟାର ବେଦନାରେ ଦୟାର୍ଦ୍ର ହୋଇ ରୁକ୍ମିଣୀଙ୍କୁ ଆଣିଲେ । ସେହି କେବଳ ଏ ବିପଦରୁ ରକ୍ଷା କରିବାକୁ ସମର୍ଥ ହେବେ ବୋଲି କହିଲେ । ସତ୍ୟଭାମା ଏହାଶୁଣି କେଶବାସ ଅସମ୍ଭାଳ ହୋଇ ରୁକ୍ମିଣୀଙ୍କ ନିକଟରେ କ୍ଷମାପ୍ରାର୍ଥନା ମାଗି, ତାଙ୍କୁ ସଙ୍ଗରେ ଆଣି ସେଠାରେ ପହଞ୍ଚିଲେ । ରୁକ୍ମିଣୀ ସେଠାରେ ଉପସ୍ଥିତ ହୋଇ ଗୋଟିଏ ତୁଳସୀ ପତ୍ରରେ ମହାମନ୍ତ୍ର ଲେଖି ତୁଳାଦଣ୍ଡରେ ପକାନ୍ତେ ସଙ୍ଗେ ସଙ୍ଗେ ତାହା ଓଜନରେ ପ୍ରଭୁଙ୍କ ସମତୁଲ ହେଲା । ତାହା ଦେଖି ବଳରାମ ଶ୍ରୀକୃଷ୍ଣଙ୍କୁ କୋଳକରି ପେନ୍ଥିଗଲେ ଏବଂ ପୁରନାରୀମାନେ ତାଳିଦେଇ ନାରଦଙ୍କୁ ପରିହାସକଲେ । ନାରଦ ଅଧୋବଦନରେ ସେଠାରୁ ପ୍ରସ୍ଥାନ କଲେ ଏବଂ ସତ୍ୟଭାମା ନିଜ କୁକୃତ୍ୟ ଲାଗି ଅନୁଶୋଚନା କରନ୍ତେ, ରୁକ୍ମିଣୀ ତାଙ୍କୁ ଆଶ୍ୱାସନା ବାଣୀରେ ଆଶ୍ୱସ୍ତ କଲେ ।"

ହରିବଂଶର ଏହି ପବିତ୍ର ଉପାଖ୍ୟାନକୁ କବି ସରସ ଓ ମଞ୍ଜୁଳ ପଦାବଳୀର ପ୍ରୟୋଗରେ ବିଭିନ୍ନଛନ୍ଦ ରଚନା କରିଛନ୍ତି । ପ୍ରତ୍ୟେକ ଛନ୍ଦରେ କବିଙ୍କର ରଚନାଗତ ବୈଶିଷ୍ଟ୍ୟ କହୁନା କହୁ ରହିଛି । କେଉଁ ଛନ୍ଦରେ ଯମକ, କେଉଁ ଛନ୍ଦରେ ଅନୁପ୍ରାସ, କେଉଁ ଗୀତରେ ସରସ ପଦାବଳୀ ଓ ଅନ୍ୟ କେଉଁ ଗୀତରେ ସିଂହାବଲୋକନ ଆଦିର ପ୍ରୟୋଗ କରି କବି କ୍ରତିତ୍ୱ ପ୍ରଦର୍ଶନ କରିଛନ୍ତି । ଉଦାହରଣ ସ୍ୱରୂପ କେତୋଟି ଉଦ୍ଧୃତାଂଶ ଏଠାରେ ପ୍ରଦତ୍ତ ହେଲା—

"ଶରଦ ଚନ୍ଦ୍ରମାମୁହିଁ, ବରଜ ଯଙ୍ଗ ନ ପାଇ ।
ଦ୍ୱିରଦେଗମନା ନାରଦଙ୍କ ବାଣୀ ଶୁଣି ଦହେ କ୍ରୋଧ ବଢ଼ି, ମାନ ବଢ଼ି ॥
ଛନ ଛନ ମନ ତା'ର, ଘନ ଘନ ଉଚ୍ଚ ସ୍ୱର ।
ଧନ ଧନ ବୋଲି ନବ ବନଜାକ୍ଷୀ ଭବନ ଜରେ ଧିକ୍କାର, ସେ ଅମ୍ବିକାର ॥

ବାର ବାର କହୁବାର, ଧାର ଧାର ବହେ ନୀର ।
ସାର ସାର ସହୁ ତା'ର ତା'ର ଏହୁ ମାର ମାରସ୍ଥୁ ଏବାର, ରେ ଗ୍ରାମାବର ।" ॥

(୧୧ଶ ଗୀତ)

"ଭାବ ଭାବନକ ଜନେ କର ଅନୁଭବ ।
ବରତ ବରଣ୍ଣି ସୁନ କୌତୁକ ସମ୍ଭବ ॥
ନବ ନବମୀରେ କର ସଙ୍କଳ୍ପ ଯୋଜନ ।
ଦେବ ଦେବଦ୍ବିଜେ ଦାନ ମିଷ୍ଟାନ୍ନ ଭୋଜନ ॥

x x x

ଜାଗର ଜାଗର ଜାଳ ବସିବୁ ଯାମିନୀ ।
ନାଗର ନାଗରଫଳ ଲଭିବୁ କାମିନୀ ॥
ହର ହରଶୋଷି କର ଏ ଭାବ ବ୍ରତକୁ ।
କର କରଯୋଡ଼ ଦେବୁ ଦକ୍ଷିଣା କାନ୍ତକୁ ॥"

(୨୧ଶ ଗୀତ)

"ରସ କେଦାରଗୌରେ ରସିକେ ରସ ।
ରସମଞ୍ଜରୀ ପ୍ରେମ ମାଧୁରୀ ରସ ।
ରସକଳପନା ସତ୍ୟଭାମା ହରଷ ।
ରସଇ ପାଇ ଦୃଷ୍ଟିବାଣୀ ପରଶ ସେ ।"

(୨୨ଶ ଗୀତ)

"ନରକ ରଦନା ଧର ନୀରଦ ଚରଣ
ନର କର ଯାହୁ ବୋଲି ପଶଇ ଶରଣ
ବରବରଣା
ବାର ବାର ମାଗି ପଡ଼େ ଧାରଣା ॥
ଜୀବ ଜୀବ ଜୀବନ ମାଧବ ଯେବେ ନେବ
ଜୀବ ଜୀବନରେ ଥାଇ କି ସୁଖ ଲଭିବ ॥
ଯେବେ ନ ଦେବ
ଶିବ ଶିବ ବୋଲି ଛାଡ଼ିବ ଜୀବ ॥"

(୨୪ଶ ଗୀତ)

'ପାରିଜାତ ହରଣ' ଗୀତାଭିନୟ ମଧ୍ୟରେ ସପତ୍ନୀବାଦ ପ୍ରତି କବି ପାଠକ ଓ ସାମାଜିକଙ୍କ ଦୃଷ୍ଟି ବିଶେଷ ଭାବରେ ଆକର୍ଷଣ କରିଛନ୍ତି । ସାଧାରଣତଃ ଭାରତୀୟ ସମାଜରେ ବହୁବିବାହ ପ୍ରଥା ଥିବାରୁ ସପତ୍ନୀବାଦ ସାମାଜିକ ଜୀବନରେ ଉଗ୍ର ରୂପ

ଧାରଣ କରି ଗୃହର ଶାନ୍ତିମୟ ବାତାବରଣକୁ ନଷ୍ଟ କରିଦିଏ । ବିଶେଷତଃ ଅର୍ଥନୈତିକ ପରିସ୍ଥିତି ସ୍ୱଚ୍ଛଳ ନଥିବା ପରିବାରରେ ଏ ପ୍ରକାର ଅଶାନ୍ତି ଅତ୍ୟନ୍ତ ଉଗ୍ର ରୂପ ଧାରଣ କରେ । ରାଜା ମହାରାଜା ଓ ଜମିଦାରମାନଙ୍କ ପରିବାରରେ ସପତ୍ନୀବାଦ ବେଳେ ବେଳେ ବଂଶନାଶ, ଗୃହଯୁଦ୍ଧର ମୂଳ କାରଣ ହୋଇଥିଲେହେଁ ସମ୍ଭ୍ରାନ୍ତ ପରିବାର ସେ ପ୍ରକାର କୁରୀତିକୁ କେବଳ ବଂଶଧର ରକ୍ଷାର୍ଥ ଓ ଆଭିଜାତ୍ୟର ଦ୍ୟୋତକ ରୂପେ ଆଦରି ନେଇଥିଲେ; କିନ୍ତୁ ବହୁବିବାହର ପ୍ରଥା ଈର୍ଷ୍ୟା, କଳହ, ଗୃହଯୁଦ୍ଧ ତଥା ଅଶାନ୍ତିର ମୂଳ କାରଣ, ଏଥିରେ ତିଳେହେଲେ ସନ୍ଦେହ ନାହିଁ । ଆଜିର ସଭ୍ୟ ଜନସମାଜର ଗୋଟିଏ ପ୍ରଧାନ ଅଙ୍ଗ ନାରୀଜାତି ପ୍ରତି ଏହା ପରୋକ୍ଷରେ କାହିଁକି ପ୍ରତ୍ୟକ୍ଷରେ ଅପମାନ ଓ ଲାଞ୍ଛନା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

କବି ଜଗନ୍ନାଥ ପାଣିଙ୍କର ବ୍ୟକ୍ତିଗତ ଜୀବନ ଏହି ଅଶାନ୍ତିରେ ଜଡ଼ିତ ଥିଲା । ତାଙ୍କ ଜୀବନୀରୁ ଯାହା ଜଣାଯାଏ—ତାଙ୍କର ଦ୍ୱିପତ୍ନୀକ ଜୀବନ ବିଶେଷ ଜଞ୍ଜାଳମୟ ନ ଥିଲା । ତଥାପି କବି ବ୍ୟାବହାରିକ ଜୀବନରେ ସଦାସର୍ବଦା ଏ ପ୍ରକାର କୌଟୁମ୍ବିକ ଅଶାନ୍ତିର ଆଶଙ୍କା କରୁଥିବା ଆଦୌ ଅସମ୍ଭବ ନୁହେଁ । ତେଣୁ ଦକ୍ଷଯଜ୍ଞ ଗୀତାଭିନୟରେ ସପତ୍ନୀ କଳହର ଅବତାରଣା ଆଦୌ ପ୍ରାସଙ୍ଗିକ ନ ହେଲେହେଁ, ସାମାଜିକମାନଙ୍କ କୌତୂହଳ ଛଳରେ ସେ ନିଜ ମନ ମଧ୍ୟରେ ଥିବା ଆଶଙ୍କାର ପ୍ରତିଫଳନ ଗୀତାଭିନୟରେ କରାଇଛନ୍ତି । ଅନୁରୂପ ପ୍ରସଙ୍ଗ 'ଧ୍ରୁବଚରିତ' ଗୀତାଭିନୟର ପ୍ରାକରଣିକ ହୋଇଥିଲେ ମଧ୍ୟ କବିଙ୍କ ବର୍ଣ୍ଣନାରେ ତାହା ଅଧିକ ପୁଷ୍ପିତ ତଥା ପଲ୍ଲବିତ ହୋଇପାରିଛି ।

ଠିକ୍ ସେହିପରି 'ପାରିଜାତ ହରଣ'ରେ କବି ସତ୍ୟଭାମା ଓ ରୁକ୍ମିଣୀଙ୍କ ମଧ୍ୟରେ ସପତ୍ନୀବାଦର ବର୍ଣ୍ଣନା କରି କବି ନାରଦଙ୍କ ଦ୍ୱାରା ପାଟରାଣୀ ସତ୍ୟଭାମାଙ୍କ ଗର୍ବ ଗଞ୍ଜନ କରାଇଛନ୍ତି । ସତ୍ୟଭାମା ରୁକ୍ମିଣୀଙ୍କ ପ୍ରତି ଈର୍ଷ୍ୟାନ୍ୱିତା ହୋଇ ସ୍ୱାମୀଙ୍କୁ ବଶ କରିବା କାମନାରେ ବଶୀକରଣ ମନ୍ତ୍ର ଜପ, ହୋମ ଓ ପରିଶେଷରେ ଶ୍ରୀକୃଷ୍ଣଙ୍କୁ ଦକ୍ଷିଣା ସ୍ୱରୂପ ଦାନ କରିବା ଫଳରେ ଭୟାବହ ତଥା ଲଜ୍ଜାକର ପରିସ୍ଥିତି ଉପସ୍ଥିତ ହେଲା । ସେହି ପରିସ୍ଥିତିରୁ ଉଦ୍ଧାର ପାଇବା ଲାଗି ଅନ୍ୟ କୌଣସି ଉପାୟ ନଦେଖି ମାନିନୀ ସତ୍ୟଭାମା ନିଜର ଭୁଲ ତ୍ରୁଟି ପାଇଁ ଜ୍ୟେଷ୍ଠା ସପତ୍ନୀ ରୁକ୍ମିଣୀଙ୍କ ପାଦତଳେ ଶରଣ ପଶିଛନ୍ତି—

"ମୋହନ ମଧୁର ବଚନ ଶୁଣି ।
ଆତୁରେ ଧାଏଁ ସତ୍ୟଭାମା ରାଣୀ ॥

କେଶବାସ ଅସମ୍ଭାଳ ଶରୀର ।
ଝର ଝର ନେତ୍ରୁ ବହଇ ନୀର ॥
କୁସୁମ କବରୀ ଫିଟି ଯେ ।
ଜମ୍ବୁଗ୍ରୀରେ ବସନ୍ତର ନୀର ପରି ଖସିପଡ଼େ ଗୋଟି ଗୋଟି ଯେ ॥"

କାଙ୍ଗାଳିନୀ ପ୍ରାୟେ ବାଳୀ ରତନ ।
ଗଳାରେ ବସନ ଦନ୍ତେ ଧରଣ ॥
ଶୋକ ଗଦଗଦେ ନ ପାରେ କହି ।
ରୁକ୍ମିଣୀ ଚରଣେ ପଡ଼ିଲା ଯାଇ ॥
କୃଷ୍ଣ କାଟିଦେଲା ପ୍ରାୟ ଯେ ।
ରକ୍ଷ ରକ୍ଷ ବାରେ ନ ରଖ ଜନ ମୁଁ ଆଷ୍ଟକ ରାଜ ତନୟେ ଯେ ॥"

× × ×

ମୁହିଁ ଗ୍ରସ୍ତ ଭ୍ରମିଁ ମୋହ ମାୟାରେ ।
ଦ୍ରୋହ ଅର୍ଜିଲି ଯା ତୋହ ପସ୍ତରେ ॥
ଜାଣି ଜାଣି ପଡ଼ି ପର କଥାରେ ।
ସପତ୍ନୀ ହିଂସା କଲି ତୋଠାରେ ॥
ସେ ଦୋଷ ମନେ ନ ଧର ଗୋ !
ଲୋକ ଅପବାଦ-ପ୍ରମାଦ ସିନ୍ଧୁରୁ ସିନ୍ଧୁସୁତା ପାରେ କର ଗୋ ॥"

(୨୮ଶ ଗୀତ)

କବି ଜଗନ୍ନାଥ ପାଣିଙ୍କ ବର୍ଣ୍ଣନାରେ ସ୍ତ୍ରୀ ସ୍ତ୍ରୀ ମଧ୍ୟରେ କଳହ ସୁନ୍ଦର ଭାବରେ ରୂପାୟିତ ହୋଇ ପାରିଛି । ତାଙ୍କର ଏପ୍ରକାର ବର୍ଣ୍ଣନା ପ୍ରଥମେ 'ଦକ୍ଷଯଜ୍ଞ ଗୀତାଭିନୟ'ରେ ଗଙ୍ଗା ଓ ଉମାଙ୍କ କଳହ ମାଧ୍ୟମରେ ଚରିତାର୍ଥ ହୋଇଥିଲା । ସେଠାରେ କେବଳ ସପତ୍ନୀବାଦ ଦେଖାଇ କଳହର ପରିସମାପ୍ତି ଘଟାଇଥିଲେହେଁ 'ପାରିଜାତ ହରଣ'ରେ ସତ୍ୟଭାମା ଓ ଶଚୀ ମଧ୍ୟରେ କଳହ ଗାଁ ଗହଳର ସ୍ତ୍ରୀଲୋକମାନଙ୍କ 'କଳିକଜିଆ'କୁ ବଳିପଡ଼ିଛି । ଗାଁ ଗହଳର ସ୍ତ୍ରୀଲୋକମାନେ ସାଧାରଣ କଥାରୁ ଭୀଷଣ ତମ୍ବୁ-ତୋଫାନ ଉଠାଇ, ଉଭୟ ପରିବାର ମଧ୍ୟରେ ମତାନ୍ତର ଓ ମନାନ୍ତର କରାଇ ବସନ୍ତି । ଛୋଟ ଛୋଟ କଥା ମଧ୍ୟରେ କାହା ବାଡ଼ି ବଗିଚାରୁ କିଏ କ'ଣ ନେଇଗଲା, କାହା ପିଲା ଅନ୍ୟର ପିଲାକୁ ମାରିଲା, କାହା ବାଡ଼ିରେ କାହାର ଗୋରୁ ଗାଈ ପଶି ଖାଇଗଲା ଇତ୍ୟାଦି । ତେବେ ଗୋଟିଏ ପ୍ରକାର ଧନରେ ନିଜେ ନିଜର ଅଭିଜାତ୍ୟ ପ୍ରକାଶ କରୁଥିବାବେଳେ, ସେହି ଧନ ନିଜ ଭଣ୍ଡାରରେ ଯେତେ ଅଧିକ ଥିଲେ ମଧ୍ୟ କୌଣସି ସ୍ତ୍ରୀ ଅପରକୁ ସ୍ୱେଚ୍ଛାକୃତ

ଭାବରେ କମ୍ଭା ଯାତଙ୍କ ଫଳରେ ଦେବାକୁ ଆଦୌ ପସନ୍ଦ କରେନାହିଁ । ସେହି ଏକାଧିପତ୍ୟ ଉପରେ ଯେତେବେଳେ କୌଣସି ପ୍ରକାର ଆଞ୍ଚ ଆସୁଥିବାର ଦେଖାଯାଏ, ସେତେବେଳେ ପ୍ରାୟ ପ୍ରତ୍ୟେକ ସ୍ତ୍ରୀ ନାଗୁଣୀ ପରି ଗର୍ଜିଉଠନ୍ତି । କବି ଜଗନ୍ନାଥ ପାଣି ଗୋଟିଏ ସାଧାରଣ ଗ୍ରାମର ଅଧିବାସୀ ହୋଇଥିବାରୁ ପ୍ରାୟ ଅନେକଥର ଏପ୍ରକାର ଘଟଣାର ସମ୍ମୁଖୀନ ହୋଇଥିବେ । ତେଣୁ ସେ ଗ୍ରାମ୍ୟ ଲଳନାଙ୍କ କଳତକରିଲକୁ ସାମାଜିକମାନଙ୍କ ଆଗରେ ଅବିକଳ ଭାବରେ ଫୁଟାଇପାରୁଥିଲେ । ଗଙ୍ଗା ପାର୍ବତୀଙ୍କ କଳହ ପରେ ପାରିଜାତ ହରଣରେ ପୁଣି କବିଙ୍କୁ ଆଉ ଗୋଟିଏ ସୁଯୋଗ ମିଳିଲା । ସେ ସତ୍ୟଭାମା ଓ ଇନ୍ଦ୍ରାଣୀଙ୍କ ମଧ୍ୟରେ ଉପୁଜିଥିବା ଗାଳିଗୁଲଜକୁ ଗୋଟିଏ ଛାନ୍ଦରେ ବର୍ଣ୍ଣନା କରି ପାଠକ ଓ ସାମାଜିକମାନଙ୍କ ମନରେ ହାସ୍ୟରସର ସ୍ରୋତ ଛୁଟାଇଛନ୍ତି । ଉଦାହରଣ ସ୍ୱରୂପ ସେହି ଛାନ୍ଦରୁ କେତୋଟି ପଦ ଏଠାରେ ପ୍ରଦତ୍ତ ହେଲା ।

ଇନ୍ଦ୍ରାଣୀ—ଇନ୍ଦ୍ରାଣୀ ବୋଲୁ ଏ ଫୁଲ ନ ଲଭନ୍ତି କେହି,
ମାନବୀ ହୋଇ ତୁ ମାଗୁ ମୁଖେ ଲାଜ ନାହିଁ ॥
ସତ୍ୟ —ଅମର ବୈକୁଣ୍ଠ ମର୍ତ୍ତ୍ୟେ ଦ୍ୱାରକା ନଗର,
କୋଟି ଇନ୍ଦ୍ର ଯହିଁ ଭୃତ୍ୟ ଏ ଫୁଲ କି ଛାର ।

× × ×

ଇନ୍ଦ୍ରାଣୀ—ଯାଗଶାଳ କଥା କଲେ ପାଶୋରିଲୁ ଏବେ,
ଗୋପିଂହ ଅପୂର ହରି ନେଉଥିଲା ଯେବେ ।
ସତ୍ୟ— ବାର ଜାଉ ଯାର ପଥ ତା'ର କି ମହତ
ଇନ୍ଦ୍ରାସନେ ଯେ ବସିଲା ସେ ହେଲା ଗେରସ୍ତ ।
ଇନ୍ଦ୍ରାଣୀ—ଅଭିଆଡ଼ୀ ପଣେ ବାପଘରେ ଧନଗଲା,
କେହି ବଶ ନ ହେବାରୁ ଗଉଡ଼କୁ ଦେଲା ।
ସତ୍ୟ— ସେ ଗଉଡ଼ ଲାଗି ଇନ୍ଦ୍ରପଦେ ନେ ରହିଲା ।
କଂସ ଦ୍ୱାରେ ପଡ଼ି ପଡ଼ି ଦିନ ଯାଉଥିଲା ॥
ଇନ୍ଦ୍ରାଣୀ—ଗଉଡ଼ ବଡ଼ାଇ ଗଉଡ଼ୁଣୀ କଲେ'ହେଲା ।
ସେହି କଂସ ଡରେ ଗୋପପୁରରେ ଲୁଚିଲା ॥
ସତ୍ୟ— ଗଉଡ଼ ହୋଇ ଇନ୍ଦ୍ରକୁ ଘଉଡ଼ାଇଦେଲା ।
ସାତଦିନ ବରଷିଲା ମେଘେ ନ ଡରିଲା ॥
ଇନ୍ଦ୍ରାଣୀ—ଗଉଡ଼ ଜାତରେ ସିନା ଏହି କଥା ହୁଏ ।
ମାଈଙ୍କୁ ମାଇପ କରି ଭଣଜା ବୋଲାଏ ॥

ସତ୍ୟ— କାହାର କଳଙ୍କ ନାହିଁ ନିଷ୍କଳଙ୍କ କିଏ ।
ଗୁରୁ ପତ୍ନୀ ହରି ଦେହ ହେଲା ଯୋନିମୟେ ॥

× × ×

ଇନ୍ଦ୍ରାଣୀ—ଏ ଚନ୍ଦ୍ର ନୁହେଁ ମୋ ପୁତ୍ର ଜୟସେନ ଗଲା ।
ସଚଲାକୁ ହରି ପଦ୍ମୁନକୁ ଶଳା କଲା ॥

ସତ୍ୟ— ମାନବ ହୋଇ ମୋ ପୁତ୍ର ଦେବଙ୍କୁ ଜିଣିଲା ।
ଶକୁନ୍ତଳା ହରି ଗନ୍ଧର୍ବଙ୍କୁ ଶଳା କଲା ॥

(୧୪ଶ ଗ୍ରନ୍ଥ)

ଜଗନ୍ନାଥ ପାଣି ଭୂଷଣ ଓ ଅଳଙ୍କାର ବର୍ଣ୍ଣନା କରିବାରେ ଜଣେ ସିଦ୍ଧହସ୍ତ କବି । ତତ୍କାଳୀନ ସମାଜରେ ଯେଉଁ ଯେଉଁ ଅଳଙ୍କାର ଗୁଡ଼ିକରେ ନାରୀମାନେ ଭୂଷିତା ହେଉଥିଲେ, କବି ଜଗନ୍ନାଥ ପାଣି ସେ ସବୁର ନିଖୁଣ ବର୍ଣ୍ଣନା କରି ପାଠକମାନଙ୍କ ମନରେ, ବିଶେଷତଃ ଆଜିକାଲିର ପାଠକଙ୍କ ମନରେ କୌତୁହଳ ସୃଷ୍ଟି କରିଛନ୍ତି । ପ୍ରତ୍ୟେକ ଗୀତାଭିନୟରେ କବି ନାୟିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ ଅଳଙ୍କାର ବର୍ଣ୍ଣନା କରିବାକୁ କେବେହେଲେ ଭୁଲି ନାହାନ୍ତି । 'ଦକ୍ଷଯଜ୍ଞ' ପୁସ୍ତକରେ କୁବେରଙ୍କ ପ୍ରଦତ୍ତ ପାର୍ବତୀଙ୍କ ଅଳଙ୍କାର ବର୍ଣ୍ଣନା ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଥିଲେହେଁ, ପ୍ରସ୍ତୁତ ପୁସ୍ତକରେ ମଧ୍ୟ ଅଳଙ୍କାର ବର୍ଣ୍ଣନା କମ୍ କୌତୁହଳୋଦ୍ଦୀପକ ହୋଇନାହିଁ । 'ଦକ୍ଷ ଯଜ୍ଞ' ଗୀତାଭିନୟରେ ସୀତାଙ୍କର ଅଳଙ୍କାର ପିନ୍ଧିବା ଦୃଶ୍ୟ କବିଙ୍କଦ୍ୱାରା ବର୍ଣ୍ଣିତ ହୋଇଥିବାବେଳେ, ଏଠାରେ ସତ୍ୟଭାମାଙ୍କ ଅଙ୍ଗରୁ ଅଳଙ୍କାର ଓହ୍ଲାଇବା ଦୃଶ୍ୟ ଅଙ୍କିତ ହୋଇଛି ।

"ତରଭରେ ରାଜସୁତା ହୋଇ ଚମତ୍କାର ।
ସର୍ବାଙ୍ଗରୁ କାଢ଼ିଲା ସୁବର୍ଣ୍ଣ ଅଳଙ୍କାର ॥
ମସ୍ତକରୁ ମଥାମଣି ଚନ୍ଦ୍ରସୂର୍ଯ୍ୟ ଖୋସା ।
ମୋତିଜାଲି ସୀମନ୍ତିନୀ ହିରାକଣି ମିଶା ॥
ସୁବର୍ଣ୍ଣ ଚଉଁରୀ ଥୋପ ଘୁଙ୍ଗୁର ତାଟଙ୍କ ।
ନାସା ନୀଳମଣି ବସା ଝରାନୋଥ ଚଙ୍କ ॥
ଗଳା ରୂପସରି ମାଳାଚମ୍ପକ କଳିକା ।
ସାତସରି ଗଣିଦେଲା ପଦକ ଚନ୍ଦ୍ରିକା ॥
ବେଣ୍ଟକରୁ କନକ କଙ୍କଣ ରତ୍ନବାଲା ।
କଣ୍ଟି ବାହୁଟି ଦେଲା ବାଜୁବନ୍ଧ ବଳା ॥

କ୍ଷୁଦ୍ରଘଣ୍ଟି ଘୁନାସୁତା ପୂର୍ଣ୍ଣଚନ୍ଦ୍ର ହାର ।
ପଦ୍ମ ପାଦବଳା ଦେଲ ଗୁଜରୀ ନୂପୁର ॥
ତେବେ ଢଳେ ତନ୍ତୁ ନ ହଠିଲେ ବେଣୁପାଣି ।
ପୁଣି ଫେଉଦେଲ ବାଳା କଟୀରୁ କିଙ୍କିଣୀ ॥"

(୨୭ଶ ପଦ)

ଏହିପରି ଭାବରେ ଦେଖିବାକୁ ଗଲେ କବି ଜଗନ୍ନାଥ ପାଣି ପ୍ରସ୍ତୁତ 'ପାରିଜାତ ହରଣ' ଗୀତାଭିନୟଟିକୁ ସର୍ବସାଧାରଣ ପାଠକ ଓ ସାମାଜିକଙ୍କ ମହଲରେ ରୋଚକ କରାଇବାର ସମସ୍ତ ପ୍ରୟାସ କରି ବଂଶ ଗୀତରେ କଥାବସ୍ତୁର ମୂଳସୂତ୍ର ଓ ଶେଷ ଗୀତରେ ନିଜର ବଂଶ, ବାସସ୍ଥାନାଦିର ପରିଚୟ ଦେଇ ଦୃଶ୍ୟ କାବ୍ୟଟିକୁ ସବୁ ଦୃଷ୍ଟିକୋଣରୁ ଖଣ୍ଟିଏ ସଫଳ ସୃଷ୍ଟି ରୂପରେ ପରିଣତ କରାଇଛନ୍ତି ।

"ରସିକ କଳାକର ଗଳାମଣ୍ଡନ ହାର ବୋଲି ପୀୟୂଷ ରସାବଳୀ ।
ଭାରତ ନିକୁଞ୍ଜରୁ ପଦ କୁସୁମ ଗୁଚ୍ଛ ଚୟନ କଲି ମନେ ଭାଳି ॥
ସେ ନାନା ରଙ୍ଗେ
ପ୍ରେମ ଭୃଙ୍ଗୀ ଧରି ସଙ୍ଗେ,
ଭବ ସୌରଭ ରାଶି ଚତୁରବର୍ଗ ମିଶି ଗ୍ରହଣ କର ଅନୁରାଗେ" ॥

(ବଂଶ ଗୀତ)

"ସେ କାନ୍ତ କାମିନୀ ପାଦପଦ୍ମ ତଳେ ଧ୍ୟାୟି ।
ବୋଲେ ଜଗନ୍ନାଥ ଜୀବ ଯାଉ ବାଞ୍ଛା ଏହି ॥
ନିଳାଙ୍ଗ ନିଳୟ ମାରୁବଂଶୀ ନିଶାକର ।
ଶାରଦା ପ୍ରସନ୍ନେ ଭଣେ ବଢଣି ସୁନ୍ଦର ॥"

(ଶେଷ ଛାନ୍ଦ)

---

# ସୁଭଦ୍ରା ପରିଣୟ

ମହାଭାରତ, ଶ୍ରୀମଦ୍‌ଭାଗବତ ଓ ହରିବଂଶ ଆଦି ଗ୍ରନ୍ଥରେ ସୁଭଦ୍ରା ଓ ଅର୍ଜୁନଙ୍କ ବିବାହ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ଏହି ପ୍ରସଙ୍ଗରୁ ଅର୍ଜୁନଙ୍କ ପ୍ରତି କୃଷ୍ଣଙ୍କର ଆତ୍ମୀୟତା ତଥା ଶ୍ରୀକୃଷ୍ଣଙ୍କ ପ୍ରତି ଅର୍ଜୁନଙ୍କର ଶ୍ରଦ୍ଧା ଓ ଭକ୍ତିର ଐକାନ୍ତିକତା ସ୍ପଷ୍ଟଭାବରେ ସୂଚିତ ହୁଏ । ବିଷ୍ଣୁ ଅଂଶରେ ସମ୍ଭୂତ ଅର୍ଜୁନଙ୍କ ପରି ଧନୁର୍ଦ୍ଧାରୀ ବୀରଙ୍କୁ ନିଜର ଅନୁଗାମୀ କରାଇବା ଲାଗି ଶ୍ରୀକୃଷ୍ଣ ନିଜ ଅନୁଜା ସୁଭଦ୍ରାଙ୍କୁ ମାଧ୍ୟମରୂପେ ଗ୍ରହଣ କରିଥିଲେ । ଅର୍ଜୁନଙ୍କ ପରି ଧନୁର୍ଦ୍ଧାରୀ ବୀରଙ୍କ ହସ୍ତରେ ପରମ ରୂପବତୀ ସୁଭଦ୍ରାଙ୍କୁ ପ୍ରଦାନ କଲେ ସୁଭଦ୍ରା ଜଣେ ପ୍ରସିଦ୍ଧ ବୀରଙ୍କ ପତ୍ନୀରୂପେ ପ୍ରଖ୍ୟାତି ଲାଭକରିବେ ଏବଂ ସେ ଅର୍ଜୁନଙ୍କ ପରି ଜଣେ ଧନୁର୍ଦ୍ଧରଙ୍କୁ ବନ୍ଧୁ, ଅନୁଗାମୀ ତଥା ଭକ୍ତରୂପେ ପାଇ ପ୍ରଖ୍ୟାତ ହେବାର ପରିକଳ୍ପନା କରି ଶ୍ରୀକୃଷ୍ଣ ଅର୍ଜୁନଙ୍କ ସହିତ ସୁଭଦ୍ରା ବିବାହର ସୂତ୍ରପାତ କରିଥିଲେ ।

ଏହି ପ୍ରସଙ୍ଗଟି ଭିନ୍ନ ଭିନ୍ନ ପୁରାଣରେ ସଂକ୍ଷିପ୍ତ ରୂପେ ବର୍ଣ୍ଣନା କରାଯାଇଥିଲେ ହେଁ, ମହାଭାରତର ମଧ୍ୟପର୍ବରେ ଅତି ବିସ୍ତୃତ ରୂପେ ବର୍ଣ୍ଣିତ ହୋଇଛି । କବି ଜଗନ୍ନାଥ ପାଣି ମହାଭାରତର ମଧ୍ୟପର୍ବରୁ କଥାବସ୍ତୁ ଗ୍ରହଣ କରିଛନ୍ତି ବୋଲି ସ୍ୱରଚିତ ପୁସ୍ତକର ଦ୍ୱିତୀୟ ଛାନ୍ଦରେ ଉଲ୍ଲେଖ କରିଛନ୍ତି ।

"ସୁଧୀରେ ପଣ୍ଡିତେ ଶୁଣ ସୁଧା ପ୍ରେମ ଗୀତ ।
ଶ୍ରୀ ମହାଭାରତ ମଧ୍ୟ ପର୍ବ ମହାଗ୍ରନ୍ଥ ।"

କବି ଜଗନ୍ନାଥ ପାଣି 'ସୁଭଦ୍ରା ପରିଣୟ' ଗୀତାଭିନୟଟିକୁ ଚଉରାଳିଶି (୪୪)ଟି ଛାନ୍ଦ ବା ଗୀତରେ ଶେଷ କରିଛନ୍ତି । କବିଙ୍କ ବର୍ଣ୍ଣନା ଅନୁସାରେ 'ସୁଭଦ୍ରା ପରିଣୟ'ର ସାରାଂଶ ଏଠାରେ ପ୍ରଦତ୍ତ ହେଲା ।

"ଅର୍ଜୁନ ଗୋସିଂହଦନ୍ତଠାରୁ ସତ୍ୟଭାମାଙ୍କୁ ଉଦ୍ଧାର କରି ଅଗ୍ନିଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରନ୍ତେ ଅଗ୍ନି ମହାଭୟରେ ରାମକୃଷ୍ଣଙ୍କୁ ସମର୍ପଣକଲେ । ଅର୍ଜୁନ, ଶ୍ରୀକୃଷ୍ଣ ଓ ବଳରାମ ଦ୍ୱାରକାରେ ଉପସ୍ଥିତ ହେଲେ । ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ମଧ୍ୟରେ ଅଭେଦ ସ୍ୱରୂପ ଦେଖି ଦ୍ୱାରକାର କାମିନୀମାନେ ପ୍ରସ୍ତୀଭୂତ ହୋଇଗଲେ । ସତ୍ୟଭାମା

ଅସ୍ତ୍ର ପାଟବଂଶୀଙ୍କ ଆଗରେ ଅର୍ଜ୍ଜୁନଙ୍କ ଉତ୍ପତ୍ତି ସମ୍ବନ୍ଧରେ ବ୍ୟାଖ୍ୟା କଲେ । ଦ୍ୱାରକା ରମଣୀମାନେ ମହା ଆନନ୍ଦରେ ରାମକୃଷ୍ଣ ଓ ଅର୍ଜ୍ଜୁନଙ୍କୁ ବନ୍ଦାଇ ପୁରକୁ ପାଛୋଟି ନେଲେ; କିନ୍ତୁ ସୁଭଦ୍ରା ଅର୍ଜ୍ଜୁନଙ୍କ ରୂପରେ ମୁଗ୍ଧ ହୋଇ ମଦନବାଣରେ ସନ୍ତପ୍ତା ହେଲେ । ସୁଭଦ୍ରାର କାମ ଦଶା ଦେଖି ସତ୍ୟଭାମା ତାଙ୍କୁ ଆଶ୍ୱସ୍ତ କଲେ ଏବଂ ତା'ର ଅଭିପ୍ରାୟ ଜାଣି ଅର୍ଜ୍ଜୁନଙ୍କ ସହିତ ସୁଭଦ୍ରାର ବିବାହ ସମ୍ଭବ ନୁହେଁ ବୋଲି ସତ୍ୟଭାମା ବହୁତ ବୁଝାଇଲେ; କିନ୍ତୁ ସୁଭଦ୍ରା କିଛି ବୁଝିଲା ନାହିଁ ଏବଂ ଅର୍ଜ୍ଜୁନଙ୍କୁ ସ୍ୱାମୀ ରୂପରେ ପାଇବା ପାଇଁ ସତ୍ୟଭାମାଙ୍କ ଆଗରେ ଅନଶନ ବସିଲା । ପରିଶେଷରେ ସତ୍ୟଭାମା ଶ୍ରୀକୃଷ୍ଣଙ୍କ ଆଗରେ ସୁଭଦ୍ରାର ଦଶା ପ୍ରକାଶ କଲେ । ପ୍ରଭୁଙ୍କ ଆଜ୍ଞା ପାଇ ସତ୍ୟଭାମା ସୁଭଦ୍ରାକୁ ନେଇ ଅର୍ଜ୍ଜୁନର ଶୟନ ପୁରରେ ପ୍ରବେଶ କଲେ । ନିଶାର୍ଦ୍ଧରେ ସତ୍ୟଭାମାଙ୍କର ଡାକ ଶୁଣି ଅର୍ଜ୍ଜୁନ ପ୍ରଥମେ ଭ୍ରମୀଭୂତ ହୋଇଗଲେ ଏବଂ ପରେ ତାଙ୍କ ଅଭିପ୍ରାୟ ଜାଣି ମାଉସିଝିଅ ଭଉଣୀ ସହିତ ପ୍ରେମ ସମ୍ପର୍କ ସ୍ଥାପନ କରିବା ଲାଗି ଏକାନ୍ତ ଅନିଚ୍ଛା ପ୍ରକାଶ କଲେ । କିନ୍ତୁ ସୁଭଦ୍ରା ଲୋକଲଜ୍ଜା ଛାଡ଼ି ଅର୍ଜ୍ଜୁନଙ୍କ ନିକଟରେ ପ୍ରଣୟ ନିବେଦନ କଲା ଏବଂ ବହୁ ଉଦାହରଣମାନ ଦେଇ ଅର୍ଜ୍ଜୁନଙ୍କୁ ବୁଝାଇବା ପାଇଁ ଚେଷ୍ଟା କଲା; ତଥାପି ଅର୍ଜ୍ଜୁନଙ୍କ ମନ ଟଳିଲା ନାହିଁ । ଲଜ୍ଜି ସୁଭଦ୍ରା ନିଜର ରୂପ-ଯୌବନକୁ ନିନ୍ଦା କରି ସେଠାରୁ ମନଦୁଃଖରେ ଫେରିଆସିଲା ।

ପରଦିନ ପ୍ରଭାତରେ ନନ୍ଦ ଦ୍ୱାରକାରେ ପ୍ରବେଶ ହେଲେ ଏବଂ ସୁଭଦ୍ରାଙ୍କ ବିବାହର ଆୟୋଜନ କରିବା ଲାଗି ଶ୍ରୀ ରାମ କୃଷ୍ଣଙ୍କୁ ଜଣାଇଲେ । ପରିଶେଷରେ ସେ ଅର୍ଜ୍ଜୁନଙ୍କ ସହିତ ସୁଭଦ୍ରାର ବିବାହଲାଗି ପ୍ରସ୍ତାବ ଦେଲେ । ଏହା ଶୁଣି ବଳରାମ ଉତ୍‌କ୍ଷିପ୍ତ ହୋଇ ଉଠିଲେ ଏବଂ ଜାରଜାତକ ପାଣ୍ଡବଙ୍କୁ ଝିଅ ନଦେବା ଲାଗି ମତ ପ୍ରକାଶ କରିବା ସଙ୍ଗେ ସଙ୍ଗେ ମହା ଭାଗ୍ୟଶାଳୀ ଦୁର୍ଯ୍ୟୋଧନଙ୍କୁ ବର ରୂପେ ବରଣ କରିବା ଲାଗି ସମସ୍ତଙ୍କୁ ବାଧ୍ୟ କଲେ ଏବଂ ସାତ୍ୟକି ହସ୍ତରେ ହସ୍ତିନାକୁ ଦୂତ ପଠାଇଲେ । ସାତଦିନ ମଧ୍ୟରେ ସୁଭଦ୍ରାଙ୍କ ସହିତ ତାଙ୍କର ବିବାହ ହେବାର ସମ୍ବାଦ ପାଇ ଦୁର୍ଯ୍ୟୋଧନ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ସାତ୍ୟକିଙ୍କୁ ଆଦରର ସହିତ ସମ୍ବର୍ଦ୍ଧନା ଜଣାଇଲେ । ପ୍ରଭୁଙ୍କ ଆଜ୍ଞା ପାଇ ପୁଣି ଥରେ ସତ୍ୟଭାମା ସୁଭଦ୍ରାଙ୍କୁ ନେଇ ଅର୍ଜ୍ଜୁନଙ୍କ ପୁରରେ ପ୍ରବେଶ ହେଲେ; କିନ୍ତୁ ତାଙ୍କଠାରୁ ଧିକ୍କାର ବଚନ ଶୁଣି ମନ ଦୁଃଖରେ ଫେରି ଆସିଲେ । ସୁଭଦ୍ରା ସତ୍ୟଭାମାଙ୍କ ହାତ ଧରି ନିଜର ବିବାହାବସ୍ଥା ଜଣାଇଲା ଏବଂ ମଦନର ଉତ୍ପତ୍ତି ସମ୍ବନ୍ଧରେ ଜିଜ୍ଞାସା କଲା । ସତ୍ୟଭାମା ମଦନର ଉତ୍ପତ୍ତି ସମ୍ବନ୍ଧରେ ବ୍ୟାଖ୍ୟାନ କରି ପ୍ରଭୁଙ୍କ ଆଗରେ ଅର୍ଜ୍ଜୁନର ମତିଗତି ଜଣାଇଲେ । ତହୁଁ ଶ୍ରୀକୃଷ୍ଣଙ୍କ ପରାମର୍ଶକ୍ରମେ ସତ୍ୟଭାମା ପ୍ରଦ୍ୟୁମ୍ନର ପତ୍ନୀ ମାୟାବତୀପାଖରେ ପ୍ରବେଶ ହେଲେ । ମାୟାବତୀ ସବୁକଥା ଶୁଣି ସୁଭଦ୍ରା ମୁଣ୍ଡରେ ମନ୍ତ୍ରପୂତ ସିନ୍ଦୂରଗାର

ଟାଣିଦେଲେ ଏବଂ ଗୋଟିଏ ପୁଷ୍ପଧନୁ ଦେଇ ସ୍ତମ୍ଭନ, ମୋହନ, ବଶୀ ଓ ଉଚ୍ଚାଟନ ମନ୍ତ୍ରଜପପୂର୍ବକ ତାହା ଅର୍ଜୁନଙ୍କ ଉପରକୁ ନିକ୍ଷେପ କରିବା ଲାଗି ପରାମର୍ଶ ଦେଲେ । ତତ୍ପରେ ସତ୍ୟଭାମା ଓ ସୁଭଦ୍ରା ଅର୍ଜୁନର ଶୟନ ମନ୍ଦିରରେ ପ୍ରବେଶ କଲେ । ମନ୍ତ୍ର ବଳରେ କବାଟ ଖୋଲି ଶୟନାବସ୍ଥାରେ ଥିବା ଅର୍ଜୁନଙ୍କ ଉପରକୁ ପୁଷ୍ପଶର ନିକ୍ଷେପ କଲେ । ମାୟାବତୀଙ୍କ ମନ୍ତ୍ରରେ ପାର୍ଥ କାମବାଣରେ ଜର୍ଜ୍ଜରିତ ହେଲେ ଏବଂ ସମ୍ମୁଖରେ ରୂପବତୀ ସୁଭଦ୍ରାଙ୍କୁ ଦେଖି ତା' ଠାରେ ପ୍ରଣୟ ନିବେଦନ କଲେ । ସୁଭଦ୍ରା ଅଭିମାନରେ ଅର୍ଜୁନଙ୍କୁ ଅନେକ ଧିକ୍କାର ବଚନ ଶୁଣାଇଲେ ଏବଂ ତାଙ୍କଠାରୁ କାମଶାସ୍ତ୍ର ସମ୍ବନ୍ଧୀୟ ଚନ୍ଦ୍ରସ୍ଖଳନର ରୀତି ଜାଣିବା ପରେ ପରିହାସରେ ତାଙ୍କ ପ୍ରତି ଅର୍ଜୁନ ବଳାତ୍କାର କରୁଛନ୍ତି ବୋଲି ସତ୍ୟଭାମାଙ୍କୁ ଜଣାଇଲେ । ସତ୍ୟଭାମା ସୁଭଦ୍ରାଙ୍କୁ ନେଇ ଅର୍ଜୁନଙ୍କ ହାତରେ ସମର୍ପଣ କଲେ ଏବଂ ଅର୍ଜୁନ ଓ ସୁଭଦ୍ରା ଆନନ୍ଦରେ ରାତ୍ରି ଯାପନ କଲେ ।

ପରଦିନ ପ୍ରଭାତରେ ଦ୍ୱାରକାର କାମିନୀମାନେ ସୁଭଦ୍ରାଙ୍କୁ ସଙ୍ଗରେ ନେଇ ଜଳକେଳି କରିବାକୁ ଗଲେ ଏବଂ ସେଠାରେ ସୁଭଦ୍ରାଙ୍କ ଅଙ୍ଗରେ ସୁରତଚହ୍ନମାନ ଦେଖି ରେବତୀ ତା' ପ୍ରତି କୋପ ପ୍ରକାଶ କଲେ । ସୁଭଦ୍ରା ରେବତୀଙ୍କ ଆଗରେ ଗତ ରାତ୍ରିର ବୃତ୍ତାନ୍ତ ପ୍ରକାଶକରନ୍ତେ, ରେବତୀ ସବୁକଥା ବଳରାମଙ୍କ ଆଗରେ ବଖାଣି ଦେଲେ । ବଳରାମ ଏହା ଶୁଣି କ୍ରୋଧରେ ଜର୍ଜ୍ଜରିତ ହୋଇ ଶ୍ରୀକୃଷ୍ଣଙ୍କୁ ଧିକ୍କାର କରିବା ସଙ୍ଗେ ସଙ୍ଗେ ଅର୍ଜୁନଙ୍କୁ ବଧ କରିବା ନିମିତ୍ତ ଯାଦବ ସୈନ୍ୟମାନଙ୍କୁ ସଜ୍ଜିତ କଲେ । କିନ୍ତୁ ଶ୍ରୀକୃଷ୍ଣ ଏ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ ବୋଲି ବଡ଼ଭାଇଙ୍କ ଆଗରେ ଶପଥପୂର୍ବକ ପ୍ରକାଶ କଲେ ।

ବଳରାମଙ୍କ କ୍ରୋଧ ଦେଖି ସୁଭଦ୍ରା ସବୁକଥା ଅର୍ଜୁନଙ୍କୁ ଜଣାଇଲେ ଏବଂ ମାୟାବତୀଙ୍କ ମନ୍ତ୍ରପୂତ ରଥରେ ବସି ସେଠାରୁ ପଳାୟନ କରିବା ଲାଗି ଅର୍ଜୁନଙ୍କୁ ପରାମର୍ଶ ଦେଲେ । ସତ୍ୟଭାମାଙ୍କଠାରୁ ସମସ୍ତ ଘଟଣା ଶୁଣି ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଗୋପନରେ ସାହାଯ୍ୟ କରିବା ଲାଗି ନିଜ ପୁତ୍ର ପ୍ରଦ୍ୟୁମ୍ନ ପ୍ରଭୃତିଙ୍କୁ ଆଦେଶ ଦେଲେ । ସେହି ଅନୁସାରେ ପୁତ୍ରମାନେ ଅର୍ଜୁନ ନିର୍ବିଘ୍ନରେ ହସ୍ତିନା ଫେରିଯିବା ଲାଗି ଆୟୋଜନ କଲେ । ଦୁର୍ଯୋଧନ ବରବେଶ ହୋଇ ଦ୍ୱାରକା ଆସୁଥିବା ସମୟରେ ଅର୍ଜୁନ ସୁଭଦ୍ରାଙ୍କୁ ନେଇ ପଳାୟନ କରୁଥିବାର ସମ୍ବାଦ ପାଇଲେ । ସେ କ୍ରୋଧରେ ଜର୍ଜ୍ଜରିତ ହୋଇ ଯାଦବଦଳଙ୍କ ସହିତ ମିଶି ଅର୍ଜୁନଙ୍କୁ ଆକ୍ରମଣ କଲେ । ବଳରାମ ହଳମୂଷଳ ଧରି ଅର୍ଜୁନଙ୍କୁ ବଧ କରିବା ଲାଗି ଅଗ୍ରସର ହେଲେ । ଏହାଦେଖି ଅର୍ଜୁନ ମନେ ମନେ ଶ୍ରୀକୃଷ୍ଣଙ୍କୁ ଚିନ୍ତା କଲେ । ଭକ୍ତର ବିପତ୍ତିରେ ଶ୍ରୀକୃଷ୍ଣ ସଙ୍ଗେ

ସଙ୍ଗେ ଅର୍ଜୁନଙ୍କ ଶରୀରରେ ପ୍ରବିଷ୍ଟ ହେଲେ ଏବଂ ତତ୍କ୍ଷଣାତ୍ ଅର୍ଜୁନ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଦ୍ୱିତୀୟ କୃଷ୍ଣ ରୂପେ ରଥ ଉପରେ ଶୋଭା ପ୍ରକାଶିଲେ । ଏହା ଦେଖି ବଳରାମ ଅତ୍ୟନ୍ତ ପ୍ରୀତ ହେଲେ ଏବଂ ଅର୍ଜୁନଙ୍କୁ ଧନ୍ୟବାଦ ଜଣାଇଲେ । ଅର୍ଜୁନ ରଥ ଉପରୁ ଓହ୍ଲାଇ ଆସି ବଳରାମଙ୍କ ପାଦରେ ପ୍ରଣାମ କଲେ । ତହିଁ ବଳରାମ ଅର୍ଜୁନଙ୍କୁ ପାଛୋଟିଆଣି ପରଦିନ ମହା ଆଡ଼ମ୍ବରରେ ବିବାହର ଆୟୋଜନ କଲେ । ନନ୍ଦ କନ୍ୟାପିତାରୂପେ ସୁଭଦ୍ରାଙ୍କୁ ଅର୍ଜୁନଙ୍କ ହସ୍ତରେ ସମର୍ପଣ କଲେ ଏବଂ ବିବାହ ବିଧି ଶେଷ ପରେ ବରବଧୂ ମଧୁଯାମିନୀର ଆନନ୍ଦ ଉପଭୋଗ କଲେ ।”

କବି ଜଗନ୍ନାଥ ପାଣି ସୁଭଦ୍ରା ପରିଣୟର ପ୍ରଥମ ଗୀତରେ ମହାଭାରତ ଗ୍ରନ୍ଥର ପ୍ରଶଂସା କରି ପାଞ୍ଚୋଟି ପଦ ଲେଖିଛନ୍ତି । ସେଥିରେ ଯେଉଁ ଅଷ୍ଟାଦଶ ପର୍ବର ନାମ ଉଲ୍ଲେଖ କରିଛନ୍ତି, ତାହା ସାରଳାମହାଭାରତର ପର୍ବକ୍ରମ ଅନୁସାରେ କରିଥିବାର ଜଣାଯାଏ ।

କବି ଜଗନ୍ନାଥ ଦ୍ୱିତୀୟ ଗୀତରେ ଗୋସିଂହ ଦୈତ୍ୟକୁ ମାରି ଅର୍ଜୁନ ସତ୍ୟଭାମାଙ୍କୁ ଉଦ୍ଧାର କରି ଆଣିବା ପରେ ରୈବତକ ପର୍ବତରେ ବିଜେ କରି ଅସୁର ଦ୍ୱାରା ଅଗ୍ନିରେ ନିକ୍ଷେପ ହୋଇଥିବା ରାମକୃଷ୍ଣଙ୍କୁ ଫେରାଇ ଦେବା ଲାଗି ବୈଶ୍ୱାନରଙ୍କୁ ସ୍ତୁତି କରିବା ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ସେଥିରେ ଅଗ୍ନିଦେବ ସନ୍ତୁଷ୍ଟ ନ ହେବାରୁ ପାର୍ଥ କ୍ରୋଧରେ ପ୍ରଜ୍ୱଳିତ ହୋଇ ଧନୁରେ ଗୁଣ ଦେଇ ଅଗ୍ନିକୁ ଧ୍ୱଂସ କରିବାକୁ ବସନ୍ତେ ଅଗ୍ନିଦେବ ଭୟରେ ତ୍ରସ୍ତ ହୋଇ ରାମକୃଷ୍ଣଙ୍କୁ ଅର୍ଜୁନଙ୍କ ଆଗରେ ସମର୍ପଣ କରିଥିବାର ବିଷୟ ଉଲ୍ଲେଖ ରହିଛି । କିନ୍ତୁ ସାରଳା ମହାଭାରତରେ କେବଳ ଅର୍ଜୁନଙ୍କ ଦ୍ୱାରା ଅଗ୍ନିଙ୍କ ସ୍ତୁତି ପ୍ରକରଣ ଉଲ୍ଲେଖ ରହିଛି । ଉଦାହରଣ ସ୍ୱରୂପ ଉଭୟ ପୁସ୍ତକରୁ କେତେକାଂଶ ଏଠାରେ ଉଦ୍ଧୃତ ହେଲା ।

“ଗୋସିଂହକୁ ମାରି ସତ୍ୟଭାମାଙ୍କୁ ଉଦ୍ଧରି,
ରୈବତ ପର୍ବତେ ବିଜେ ବାରୁଣୀବିହାରୀ ।
ପ୍ରଭୁଙ୍କୁ ନପାଇ ପୁରେ ପୁରନ୍ଦରବଳା,
ଯାଗକୁଣ୍ଡ ନିକଟେ ଯାଇଣ ସ୍ତୁତି କଲା ।
ଜୟ ଜୟ ବୈଶ୍ୱାନର କାଳାନଳ ମୂର୍ତ୍ତି,
ଜୟ ଜୟ ଅବ୍ୟୟ ଅକ୍ଷୟ ବ୍ରହ୍ମଜ୍ୟୋତି ।” ଇତ୍ୟାଦି
(ସୁଭଦ୍ରା ପରିଣୟ)

“ଉଦ୍ଧବେ ପ୍ରବେଶିଲେ ରୈବତ ପର୍ବତେ,
ଦେଖିଲେ ଯଜ୍ଞଭବନ ଭଗ୍ନ ଇନ୍ଦ୍ରଯତେ ।

କୃଷ୍ଣେ ଅଗ୍ନି ଗୋପ୍ୟ କରିଛନ୍ତି ବେନି ଭ୍ରାତେ,
ତହିଁ ସତ୍ୟା ସହ ପାର୍ଥ ମିଳିଲେ ତୁରିତେ ।
କୃଷ୍ଣ ସନ୍ନିଧାନେ ଯାଇ ପ୍ରବେଶି ଅର୍ଜୁନ,
ଅଗ୍ନି ଦେବତାଙ୍କୁ ସ୍ତୁତି କଲେ କରି ମାନ୍ୟ ।
ଜୟ ତୁ ଅନଳ ବୈଶ୍ୱାନର ଯେ ଦେବତା,
ଶୋଷକ ନାଶକ ଦେବ ତୁହି ଉଦ୍ଧାରନ୍ତା ।
ଯେବେ ମୋ ଠାରେ ସଦୟ ତୁମ୍ଭେ ଦେବସ୍ୱାମୀ,
ସ୍ୱରୂପ ଦେଖାଅ ମୋତେ ରାମକୃଷ୍ଣ ବେନି ।
(ସାରଳା ମହାଭାରତ—ମଧ୍ୟପର୍ବ)

ଅର୍ଜୁନଙ୍କୁ କୋଳରେ ବସାଇ ଶ୍ରୀକୃଷ୍ଣ ଦ୍ୱାରକାରେ ପ୍ରବେଶ ହେଲେ । ସ୍ୱାମୀଙ୍କୁ ଅକ୍ଷତ ଶରୀରରେ ଫେରି ଆସିଥିବାର ଦେଖି ଶ୍ରୀକୃଷ୍ଣଙ୍କ ପତ୍ନୀଗଣ ନାନା ଅଳଙ୍କାରରେ ଭୂଷିତା ହୋଇ ଅର୍ଘ୍ୟ ବନ୍ଦାପନା କରିବା ଲାଗି ଦ୍ୱାରଦେଶରେ ଉପସ୍ଥିତ ହେଲେ ଏବଂ ସେଠାରେ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ମଧ୍ୟରେ ସ୍ୱରୂପଗତ କିଛି ପାର୍ଥକ୍ୟ ନଦେଖି ସମସ୍ତେ ଭ୍ରମରେ ପଡ଼ିଲେ । କେହି କେହି ମନେକଲେ ବୋଧହୁଏ ଅର୍ଜୁନଙ୍କ କୋଳରେ ଶ୍ରୀକୃଷ୍ଣ ବସି ଆସିଛନ୍ତି । କିନ୍ତୁ ଅନ୍ୟମାନେ ଏ ବିଷୟରେ ସନ୍ଦେହ ପ୍ରକାଶ କଲେ । ଏହାଶୁଣି ସତ୍ୟଭାମା ଅର୍ଜୁନଙ୍କର ଜନ୍ମ ସମ୍ବନ୍ଧରେ ଅନ୍ୟ ରମଣୀମାନଙ୍କୁ ବୁଝାଇଲେ । ଏହି ପ୍ରସଙ୍ଗ କବି ଜଗନ୍ନାଥ ପାଣି ସୁଭଦ୍ରା ପରିଣୟର ତୃତୀୟ ଚତୁର୍ଥ ଗୀତରେ ବର୍ଣ୍ଣନା କରିଛନ୍ତି ।

"କୃଷ୍ଣଙ୍କ ମାୟାରେ ମୋହ ହୋଇଣ କାମିନୀ ।
ହରି ଅର୍ଜୁନଙ୍କୁ ଆଉ ନ ପାରିଲେ ଚିହ୍ନି ॥
ସ୍ତମ୍ଭୀଭୂତ ହୋଇ ଏକ ଆରେକ କହନ୍ତି ।
କିଏ ଏଥି ଅର୍ଜୁନ ଗୋ କିଏ ଆମ୍ଭ ପତି ॥
ଦୁହେଁ ଚତୁର୍ଭୁଜ ଶୋଭ ନବଘନ ପ୍ରାୟେ ।
ନଜାଣି କାହାକୁ ଆଗେ ବନ୍ଦାଇବା ପ୍ରିୟେ ॥
ଜମ୍ବୁବତୀ କହନ୍ତି ଗୋ ଶୁଣେକ କୁମାରୀ ।
ଅର୍ଜୁନ କୋଳରେ ବସେ ନକୁଣ୍ଠବିହାରୀ ॥
ସତ୍ୟଭାମା କହଇ ନୁହଇ ଏ ଉଚିତ ।
କନିଷ୍ଠ କୋଳରେ ଜ୍ୟେଷ୍ଠ ବସିବେ କେମନ୍ତ ॥

× × ×

ଏହା ଶୁଣି ରୁକ୍ମିଣୀ ଆନନ୍ଦ ସ୍ନେହଭରେ ।
ସତ୍ରାଣୀ ଛଳେ ସତ୍ୟଭାମାକୁ ପଚ୍ଚାରେ ॥
କୃଷ୍ଣ ବର୍ଣ୍ଣ କଲା କାହିଁ ପାଇଲା ଅର୍ଜ୍ଜୁନ ।
ବୋଲେ ଜଗନ୍ନାଥ କହ ଏଥିର ବିଧାନ ॥
× × ×
ବିଷ୍ଣୁ ଏକ କଳା ଯେହ୍ନ ଶ୍ରୀବସ୍ତ୍ର କରଣ ।
ଇନ୍ଦ୍ର ଅଂଶେ ସୋମବଂଶେ ଜନ୍ମିଲେ ଅର୍ଜ୍ଜୁନ ॥
ଶେଷଦେବ ବଳରାମ ଶ୍ରୀହରି ଅର୍ଜ୍ଜୁନ ।
ବୋଲେ ଜଗନ୍ନାଥ ଏକ କଳା ନାହିଁ ଭିନ୍ନ ॥
(ସୁଭଦ୍ରା ପରିଣୟ—୩ୟ ଓ ୪ର୍ଥ ଗୀତ)

ଏହି ପ୍ରସଙ୍ଗଟିକୁ କବି ସାରଳା ଦାସ ଅବିକଳ ଭାବରେ ବର୍ଣ୍ଣନା କରିଛନ୍ତି । ବର୍ଣ୍ଣନା ମଧ୍ୟରେ କେବଳ ପଦଗତ ତାରତମ୍ୟ ରହିଛି । ଅନ୍ୟଥା ବର୍ଣ୍ଣନାର ଶୈଳୀ ସମ୍ପୂର୍ଣ୍ଣ ସମାନ ।

"ଦ୍ୱାରେ ଉଭା ହୋଇଲେକ ସମସ୍ତ କାମିନୀ ।
ହରି ଅର୍ଜ୍ଜୁନଙ୍କୁ କେହି ନ ପାରିଲେ ଚିହ୍ନି ॥
କେ ହରି କେହୁ ଅଟଇ ବୀରବର ପାର୍ଥ ।
କାହାର ଶିରରେ ଅର୍ଘ୍ୟ ଦେବା ଗୋ ସଙ୍ଗାତ ॥
× × ×
ଜମ୍ବୁବତୀ ବୋଲନ୍ତି ଗୋ ଜାଣିଲି ସଙ୍ଗାତ ।
ବସିଅଛନ୍ତି ଅର୍ଜ୍ଜୁନ କୋଳେ ଜଗନ୍ନାଥ ॥
ରୁକ୍ମିଣୀ ବୋଲନ୍ତି ସଖି ନୁହଇ ଏମନ୍ତ ।
ଆମ୍ଭର ପୁରେ ଅର୍ଜ୍ଜୁନ ଅଟେ ଅଭ୍ୟାଗତ ॥
ବସିବ କି ଅଭ୍ୟାଗତ କୋଳେ ଗୃହବାସୀ ।
ଏ ମୋହର ମନକୁ ତ ଏମନ୍ତ ନ ଆସି ॥
ଆବର ବିଶେଷେ ଜାଣ ଅର୍ଜ୍ଜୁନ କନିଷ୍ଠ ।
କନିଷ୍ଠର କୋଳେ କାହିଁ ବସିବାକି ଜ୍ୟେଷ୍ଠ ॥
(ମହାଭାରତ—ମଧ୍ୟପର୍ବ)

ଅର୍ଘ୍ୟ ବନ୍ଦାପନାବେଳେ ନାରୀମାନଙ୍କ ମେଳରେ ସୁଭଦ୍ରା ଆଇ ଅର୍ଜ୍ଜୁନଙ୍କର ଅନନ୍ୟ ସୁନ୍ଦର ରୂପ ଦେଖି କାମବାଣରେ ଜର୍ଜ୍ଜରିତା ହେଲେ । କିନ୍ତୁ ସତ୍ୟଭାମା ଏହା ଜାଣି ତାଙ୍କୁ ନାରୀର କର୍ତ୍ତବ୍ୟ ସମ୍ବନ୍ଧରେ ଅନେକ ବୁଝାଇଲେ; ତଥାପି ସୁଭଦ୍ରା ଉପରେ ସତ୍ୟଭାମାଙ୍କ ଉପଦେଶର କୌଣସି ପ୍ରଭାବ ନ ପଡ଼ିବାରୁ

ସେ (ସତ୍ୟଭାମା) ଶ୍ରୀକୃଷ୍ଣଙ୍କ ନିକଟରେ ସମସ୍ତ କଥା ପ୍ରକାଶ କଲେ । ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ସତ୍ୟଭାମା ସୁଭଦ୍ରାଙ୍କୁ ନେଇ ଅର୍ଜୁନଙ୍କ ଶୟନ ମନ୍ଦିରରେ ପ୍ରବେଶ ହେଲେ ଏବଂ ସେଠାରେ ଅର୍ଜୁନଙ୍କଦ୍ୱାରା ତିରସ୍କୃତା ହୋଇ ଫେରି ଆସିଲେ । ପରେ ପ୍ରଦ୍ୟୁମ୍ନଙ୍କ ପତ୍ନୀ ମାୟାବତୀଙ୍କ ମନ୍ତ୍ର ବଳରେ ସୁଭଦ୍ରା ଅର୍ଜୁନଙ୍କର ହୃଦୟ ଜୟ କଲେ । ଏହି ପ୍ରସଙ୍ଗଟିକୁ କବି ଜଗନ୍ନାଥ ପାଣି ସାରଳା ଦାସଙ୍କ ମହାଭାରତରୁ ଅବିକଳ ଭାବରେ ଗ୍ରହଣ କରିଛନ୍ତି । କେବଳ ସ୍ଥଳ ବିଶେଷରେ ନିଜ ପ୍ରତିଭାର ପରିଚୟ ଦେଇ ଗୀତ ରଚନା କରିଛନ୍ତି ମାତ୍ର ।

"ଅନେକ ପ୍ରଶଂସା କରି ସୁଭଦ୍ରା କୁମାରୀ ।
ଅର୍ଜୁନର ରୂପ ଦେଖି କାମ ଶରେ ପାରି ॥
× × ×
ମୋହେ ସେ ସୁନ୍ଦରୀ ତଳେ ପଡ଼ିଲେକ ଢଳି ।
କୋଳରେ ଧଇଲେ ଶତ୍ରାଜିତର ଦୁଲାଳୀ ॥
× × ×
ମୁହିଁ ବାଳା ସ୍ତ୍ରୀ ତୋତେ କରିଥିବି ସେବା ।
କୁନ୍ତୀଙ୍କ ନନ୍ଦନ ମୋତେ ଅର୍ଜୁନଙ୍କୁ ଦେବା ॥
× × ×
ସୁଭଦ୍ରା ବିକଳ ଦେଖି ଦେବୀ ସତ୍ୟଭାମା ।
ଅନେକ ମତେ ବୁଝାଏ ନାରାୟଣ ବାମା ॥
× × ×
ସତ୍ୟଭାମାଏ ବୋଇଲେ କରିବା କେମନ୍ତ ।
ଗୋବିନ୍ଦ ବୋଇଲେ କର ହୋଇବ ଯେମନ୍ତ ॥
ସୁଭଦ୍ରା ସଙ୍ଗେ କରାଅ ଅର୍ଜୁନର ଭେଟ ।
ତୁମ୍ଭଙ୍କୁ ଭକତ କଲି ଫିଟୁ ତା'ର କଷ୍ଟ ।
× × ×
ଅର୍ଜୁନ ବୋଇଲେ ପରସ୍ତ୍ରୀ ମୋର ମାତା ।
ପରସ୍ତ୍ରୀର ଯେ ସ୍ୱାମୀ ସେହି ମୋର ପିତା ॥
ପରର ଦ୍ରବ୍ୟ ମୋହର ଅଟଇ ଦେବତା ।
ପରରର ଶିରୀ ଦେଖି ମୁଁ ନ କରଇ ଚିନ୍ତା ॥
× × ×
ବିନୟ ବଚନେ ତାଙ୍କୁ ବୋଲେ ଫାଲଗୁନି ।
ସୁଭଦ୍ରା ଗୋ ତୋତେ ମୋର ଅନେକ ବିନ୍ତି ନା ॥

ପର ଦାର ଦୋଷେ ମାଗୋ ନାଶ ଯାଇ ତପ ।
ମୋର ସ୍ଥିର ଦେହ ଲଗି ତୋର ଏତେ ତାପ ॥
× × ×
ତୁ ମୋହର ମା' ତୁଳ୍ୟ ସ୍ନେହ ମୋର ଅଂଶ ।
ତୋହର ସଦୃଶ ବର ଦେଖ ତୁ ମନୁଷ୍ୟ ॥
× × ×
ବସ ଗୋ ବୋଲନ୍ତି ମାତା ଧୀରେ ମାୟାବତୀ ।
କରାଇବା ଅର୍ଜୁନର ତୋହର ପୀରତି ॥"

(ସାରଳା ମହାଭାରତ-ମଧ୍ୟପର୍ବ)

"କାମଦେବ ପ୍ରାୟ ସୁନ୍ଦର ଦିଶେ ଅର୍ଜୁନ ଦେହ ।
ସୁଭଦ୍ରା ଅନାଇ ତାଙ୍କୁ କାମେ ହେଲା ମୋହ ॥
× × ×
ସୁଭଦ୍ରା ଅଚେତ ଦେଖି ସତ୍ୟଭାମା ରାଣୀ ।
ବେନି ଭୁଜେ ତୋଳି କୋଳେ ବସାଇଲେ ଆଣି ॥
ସେ ନାଗବର
ସଚେତ କରାଇ ମୁଖେ ସିଞ୍ଚିଦେଲେ ନୀର ।
× × ×
କି ବୋଲି ବୋଲିବେ ଏହା ଶୁଣି ବଳରାମ ।
କି ବୋଲି ବୋଲିବେ ନନ୍ଦ ଯଶୋଦା ଶୁଣିଣ ॥
ରେ ରାମାବର,
ବୋଲେ ଜଗନ୍ନାଥ ଦେହ କି ହେଲା କି ତୋ'ର ।
× × ×
ସତ୍ୟଭାମା ବୋଲେ ବୃଦ୍ଧ ହୋଇଲୁ କି ବାଇ ॥
କି ଅଗାଧ କଥା କହୁ ଲାଜ ମାତ୍ରୁ ନାହିଁ ।
ସହୋଦର ମାଉସୀ ପୁଅ ଭାଇ ଅର୍ଜୁନ ॥
କାହିଁ ପାଇଁ ତାହାଠାରେ ବଳାଇଛୁ ମନ ।
× × ×
ସତ୍ୟଭାମା ବାଣୀ ଶୁଣି ସାରମଣି—
କୋପେ ଖଡ଼୍ଗ ଝମକାଇଲା ।
କି କହିଲୁ କି କହିଲୁ ବୋଲି ଭୁଇଁ ବୁଇଁ
କର୍ଣ୍ଣେ ହସ୍ତ ଦେଲା ।

ମହା ସତୀ ହୋଇ ଅମିତ କର୍ମାରେ
କହିଲୁ କାଳ ଘୋଟିଲା ।
ବଇକୁଣ୍ଠପୁର ଦ୍ୱାରକା ନଗରୁ
ଆଜହୁଁ ଧର୍ମ ହଟିଲା ।

× × ×

ଶ୍ରୀକୃଷ୍ଣଙ୍କୁ ନେଇ ଯଶୋଦା ପାଳିଲେ ମାଉସୀ ହେଲା ଏଥର ।
ବୋଲେ ଜଗନ୍ନାଥ ତା' ଝିଅ ସୁଭଦ୍ରା ଭଉଣୀ ହେଲା ମୋହର ॥

× × ×

ମାୟାବତୀ ବୋଲଇ ଏ ଗୁରୁ ମୋତେ କେତେ,
ଅଯାଚିଲୁ ସାଧି କରିପାରେ ମୁଁ କହିବେ ॥

(ସୁଭଦ୍ରା ପରିଣୟ—୨ୟ, ୭ମ ଓ ୩°ଶ ଗୀତ)

ଏହି ପ୍ରସଙ୍ଗରେ ଉଭୟ କବି ସାରଳା ଦାସ ଓ କବି ଜଗନ୍ନାଥ କାମଦେବର ଜନ୍ମ, କାମର ଦଶ ଦଶା ଓ ଚନ୍ଦ୍ର ସ୍ଖଳନ ଆଦି ଭିନ୍ନ ଭିନ୍ନ ପ୍ରସଙ୍ଗରେ ବର୍ଣ୍ଣନା କରିଛନ୍ତି । ତାହା ଉଭୟ କବିଙ୍କ ବର୍ଣ୍ଣନାରେ ଭିନ୍ନ ରୂପ ଧାରଣ କରିଥିଲେହେଁ, କବି ଜଗନ୍ନାଥ ଏହା ସମ୍ପୂର୍ଣ୍ଣ ରୂପେ ସାରଳା ମହାଭାରତରୁ ଗ୍ରହଣ କରିଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ କବି ଜଗନ୍ନାଥ ପାଣି ସୁଭଦ୍ରା ପରିଣୟଟିକୁ ଗୀତାଭିନୟ ରୂପେ ପ୍ରସ୍ତୁତ କରିଥିବାରୁ ସେଥିରେ ଉକ୍ତି ପ୍ରତ୍ୟୁକ୍ତିର ଅଂଶ ବେଶି ମାତ୍ରାରେ ରହିଛି ଏବଂ ଆପଣ ମଧ୍ୟ ନିଜକୁ ପତ୍ନୀ ରୂପେ ଗ୍ରହଣ କରିବା ଲାଗି ଅର୍ଜୁନଙ୍କୁ ଅନେକ ପ୍ରକାର ଶାସ୍ତ୍ରୀୟ ଉଦାହରଣ ଦେଇ ସୁଭଦ୍ରା ବୁଝାଇଛନ୍ତି । କିନ୍ତୁ ବାରବାର ଅର୍ଜୁନ ସୁଭଦ୍ରାଙ୍କର ପ୍ରତ୍ୟେକ ଉଦାହରଣ ବିପକ୍ଷରେ ଯୁକ୍ତି କରି ନିଜର ଅକ୍ଷମତା ପ୍ରଦର୍ଶନ କରିଛନ୍ତି ।

'ସୁଭଦ୍ରା—ଇନ୍ଦ୍ର-ଦେବ ପରି ପିଅର ସେ ଚୋର
ଋଷି ଅହଲ୍ୟା ହରିଲା,
ବୃହସ୍ପତି ବାମା ତାରିକୁ ଚନ୍ଦ୍ରମା
ହରିଲା ତା'ର କି ହେଲା ।
ସୁନ୍ଦର ହେ !

ଅର୍ଜୁନ—ଅହଲ୍ୟାକୁ ହରି ଇନ୍ଦ୍ର ବଜ୍ରଧାରୀ
ସହସ୍ରଯୋନି ବହିଲା,
ତାରି ସଙ୍ଗେ ପ୍ରୀତି କରି ନିଶାପତି,
ତା' ଅଙ୍ଗେ ଗନ୍ତ ଘୋଟିଲା ।
ସୁନ୍ଦରୀ ହେ !

ସୁଭଦ୍ରା—ବାଳୀ ପରିବାର ସଭି ବୋଲୁ ହରି

ରାମାଙ୍କୁ କଲ ରମଣ,

ଏଭଳେ ନ୍ୟାୟପଥ କଲାହୁ ଯୁବତୀ

ବୃନ୍ଦାଙ୍କୁ କଲେ ହରଣ ।

ସୁନ୍ଦର ହେ !

ଅର୍ଜୁନ—ରାମାଙ୍କୁ ହରଣ ବାଳୀ କପିରାଣ

ରାମ ତୀକ୍ଷ୍ଣ ବାଣେ ମଲା,

ପ୍ରଭୁ ହୋଇ ଯହୁଁ ବୃନ୍ଦାଙ୍କୁ ହରିଲେ,

ସୀତାଙ୍କୁ ରାବଣ ନେଲା ।

ସୁନ୍ଦରୀ ହେ ।

(ସୁଭଦ୍ରା ପରିଣୟ—୨୯ଶ ଗୀତ)

ଏହି ପ୍ରସଙ୍ଗରେ ମାୟାବତୀଙ୍କ ମନ୍ତ୍ର ସମ୍ବନ୍ଧରେ ସାରଳା ଦାସ କେବଳ ଗୋଟିଏ ଦୁଇଟି ପଦ ଉଲ୍ଲେଖ କରି ପଟଣାର ବର୍ଣ୍ଣନା କରିଥିଲେ ହେଁ, କବି ଜଗନ୍ନାଥ ଓଡ଼ିଶାରେ ପ୍ରଚଳିତ ଗୁଣୀଗାରେଡ଼ିସମ୍ପୃକ୍ତ ବଶୀକରଣ ମନ୍ତ୍ର ସମ୍ପର୍କରେ ଆଠପଦ ବିଶିଷ୍ଟ ଗୋଟିଏ ଗୀତ ରଚନା କରିଛନ୍ତି । କବି ଜଗନ୍ନାଥ ସାମାଜିକମାନଙ୍କ ମନରେ କୌତୂହଳ ଜାତ କରିବା ଲାଗି ଏ ପ୍ରକାର ଗୀତର ଅବତାରଣା କରିଛନ୍ତି ବୋଲି କହିଲେ ଆଦୌ ଅଯୌକ୍ତିକ ହେବନାହିଁ ।

"ସିନ୍ଦୂର ସିନ୍ଦୂର ଯେ ଗାର ସାର

ଏ ସିନ୍ଦୂର ସୁଭଦ୍ରା ଗୋ ଦେଖିବୁ ଶିରର

ବୃନ୍ଦିଲ ମାତ୍ରକେ ପାର୍ଥ ସାହୁ ମୋହ ହୋଇ,

ମାୟାବତୀ ମହାମାୟୀ କୋଟି କୋଟି ଦ୍ରୋହି ।

କଳା କଳା କଳା ଯେ ମୋହନ କଳା ମନ୍ତ୍ରେ

ଏ କଳାକୁ ସୁଭଦ୍ରା ଗୋ ଦେଖିବୁ ତୁ ନେତ୍ରେ ।

କଟାକ୍ଷେ ବୃନ୍ଦିଲେ ମୋହ ହୋଇବ ଅର୍ଜୁନ

କାଉଁରୀ କାମାକ୍ଷୀଙ୍କର କୋଟି କୋଟି ଆଣ ।

ବିଭୂତି ବିଭୂତି ଏ ଯେ ଈଶ୍ୱର ବିଭୂତି,

ଏ ବିଭୂତି ସୁଭଦ୍ରା ଗୋ ପକାଇବୁ ମନ୍ତ୍ରି ।

ପକାଇଲେ ଫିଟିବ ବଜ୍ର କବାଟ-କିଳଣୀ,

ସିଦ୍ଧେଶ୍ୱରଙ୍କର ଆଜ୍ଞା ଆନ କୋଟି ପୁଣି ।" ଇତ୍ୟାଦି

( ସୁଭଦ୍ରା ପରିଣୟ, ୩୯ଶ ଛାନ୍ଦ )

ମାୟାବତୀଙ୍କ ପ୍ରଦତ୍ତ ବଶୀକରଣ ମନ୍ତ୍ର ଓ ପୁଷ୍ପଧନୁର ପ୍ରୟୋଗ ପରେ ସୁଭଦ୍ରାଙ୍କ ପ୍ରତି ଅର୍ଜୁନ ଆକୃଷ୍ଟ ହୋଇଉଠିଲେ ଏବଂ ସୁଭଦ୍ରାଙ୍କର ପାଦ ଧରି ପ୍ରଣୟ ନିବେଦନ କଲେ । ଏତିକିବେଳେ ସୁଭଦ୍ରା ଅର୍ଜୁନଙ୍କର ବ୍ୟାକୁଳତା ଲକ୍ଷ୍ୟ କରି ନିଜେ ଅଭିମାନିନୀ ହୋଇଉଠିଲ ଏବଂ ଅର୍ଜୁନଙ୍କର ପୂର୍ବ ବ୍ୟବହାରକୁ ଚେତାଇ ଅନେକ ପ୍ରକାର ଭର୍ତ୍ସନା କଲ । ଏହି ପ୍ରସଙ୍ଗଟିକୁ କବି ସାରଳା ଦାସ ବିସ୍ତୃତ ଭାବରେ ବର୍ଣ୍ଣନା କରିଥିଲେ ହେଁ, କବି ଜଗନ୍ନାଥ ସୁଭଦ୍ରାଙ୍କ ମୁଖରେ ପ୍ରୀତି ଭରର ଉପୃତ୍ତି ଓ ଚରିତ୍ର ସ୍ଖଳନ ସମ୍ବନ୍ଧୀୟ ଗୋଟିଏ ପ୍ରଶ୍ନ ଏବଂ ଭର୍ତ୍ସନାପୂର୍ଣ୍ଣ ଉକ୍ତିଟି ପଢ଼ି ଉଲ୍ଲେଖ କରି ପ୍ରସଙ୍ଗର ପରିସମାପ୍ତି ଘଟାଇଛନ୍ତି ।

"ସୁଭଦ୍ରା ବୋଇଲେ ମୋତେ ଛାଡ଼ ଛାଡ଼ ପାର୍ଥ ।
ଅପ୍ରତିଷ୍ଠା କ୍ରିୟାକ ତୁ କରୁଅଛୁ କେମନ୍ତ ॥
ତୁ ମହା ପଣ୍ଡିତ ପୁଣି ଧାର୍ମିକ ସୁଶୀଳ ।
ସତ ସତ କିସ୍ପାରେ ତୁ ବଞ୍ଚୁ ଦିନକାଳ ॥
ଆମ୍ଭେ ଗନ୍ଧକୁମାରୀ ତୁହି ଅଟୁ ଭଲ ଜାତ ।
ନିର୍ଲଜ୍ଜୀ ହୋଇଗଲୁ ପୁଣି ଅଟୁତ ଅସନ୍ତ ॥
କେମନ୍ତେଣ ଛୁଇଁ ମୋତେ ଛାଡ଼ ଛାଡ଼ ବୀର ।
ନ ହରିବ ପରି ପରଧନ ପରଦାର ॥
ନିୟମ କରିଛ ତୁମ୍ଭେ ତୀର୍ଥ ତୀର୍ଥ ବୁଲି ।
ଜଗନ୍ନାଥଙ୍କ ବାରତା କହିବି ମୁଁ ବୋଲି ॥
ଆଇଲି ତୁମ୍ଭ ପାଖକୁ ତୁମ୍ଭେ ବଳେ ଧର ।
ମୁହିଁ ତ ଅବଳା ତୁମ୍ଭେ ବଳବନ୍ତ ବୀର ॥
ରାମଙ୍କ ଭୟ ତୁମ୍ଭର ଥାଏ ପରି ଚିତ୍ତେ ।
ତା'ର ଭଗିନୀକି ବଳେ ଧରୁଛ କେମନ୍ତେ ॥
ଜାଣିଲି ପାଣ୍ଡବ ତୁମ୍ଭେ ଅଟ ଜାରଜାତ ।
ତେଣୁ ବଳେ ଧରି ମୋତେ କରୁଛ ଏମନ୍ତ ॥
ଛାଡ଼ ଛାଡ଼ ଗୁରୁ ପତ୍ନୀ ଅଟେ ମୁଁ ତୁମ୍ଭର ।
ଦୁର୍ଯୋଧନ ଅଟେ ତୁମ୍ଭ ଜ୍ୟେଷ୍ଠ ସହୋଦର ॥
ଏପରି ଅନୀତି ତୁମ୍ଭେ କରୁଛ କେମନ୍ତେ ।
ତୁମ୍ଭେ ପରା ନ୍ୟାୟ ମାର୍ଗେ ଥାଅ ଅବିରତେ ॥"

(ମହାଭାରତ-ମଧ୍ୟପର୍ବ)

ସୁଭଦ୍ରା ବୋଲଇ ପାର୍ଥ ଶୁଣ ମୋ ବଚନ,
ପୌରବ ଶବଦ କାହୁଁ ହୋଇଲା ଜନମ।
ଏହି କଥା ଯେବେ ମୋତେ କହି ଦେବ ବୁଦ୍ଧି,
ବୋଲେ ଜଗନ୍ନାଥ ତେବେ ରଥ ଦେବି ମୁହିଁ।

× × ×

ଅର୍ଜ୍ଜୁନ ବଚନ ଶୁଣିଣ ସୁଭଦ୍ରା କହଇ ଆହେ ରସିକ।
କାମ ଶାସ୍ତ୍ର ଧର୍ମେ ପଣ୍ଡୁରେ ମୁଁ ତୋତେ ଜାଣୁନା ଚନ୍ଦ୍ର ସୁଲକ୍ଷ ॥

× × ×

ଦେଖ ଦେଖ ସଜନୀ ଗୋ ଅର୍ଜ୍ଜୁନ ଅନାଥ।
ବଳେ ଧରାପରା କରି ମୋତେ ମାଗେ ରଥ ॥
ଗୋ ସତ୍ୟଭାମା,
ଦେଖ ଦେଖ ସଖୀ ଦେଖ ଅର୍ଜ୍ଜୁନ ଗହମୋ।

× × ×

କି ହେଲା ଅର୍ଜ୍ଜୁନଙ୍କୁ କି ଗ୍ରହିଲା ବିଧାତା ॥
ପର ସ୍ତ୍ରୀ ବୋଲି ଧରି କରୁଛୁ ଦୂଷିତା ॥
ହେ ଧନଞ୍ଜୟ,
ବଳାତ୍କାରେ କାହିଁକି ତୁ ମାଗୁଅଛୁ ଦେହ।

× × ×

ରାମକୃଷ୍ଣ ଭଗ୍ନୀ ବୋଲି କି ଜାଣୁନି ତୁହି,
ଏତେକ ସାହସ ତୋର ଡର ଭୟ ନାହିଁ।
ହେ ଧନଞ୍ଜୟ,
ବଳାତ୍କାରେ କାହିଁପାଇଁ ମାଗୁଅଛୁ ଦେହ।
(ସୁଭଦ୍ରା ପରିଣୟ—୬୦ଶ, ୬୨ଶ, ୬୨ଶ ଗୀତ)

ସୁଭଦ୍ରାଙ୍କ ସହିତ ଅର୍ଜ୍ଜୁନଙ୍କର ଅବୈଧ ସମ୍ପର୍କ ସମ୍ବନ୍ଧରେ ବଳରାମଙ୍କ ପତ୍ନୀ ରେବତୀ ପ୍ରଥମେ ସୂଚନା ପାଇଲେ ଏବଂ ସେ ବଳରାମଙ୍କୁ ଏ ବିଷୟ ଜଣାନ୍ତେ ବଳରାମ ଭୀଷଣ କ୍ରୋଧ ପ୍ରକାଶ କଲେ। ସେ ଦୁର୍ଯ୍ୟୋଧନଙ୍କୁ ବରରୂପେ ବରଣ କରିଥିବାରୁ ତାଙ୍କ ମନରେ ଭୀଷଣ ଆଘାତ ହେଲା। ସେ ଅର୍ଜ୍ଜୁନଙ୍କୁ ସମୁଚିତ ଦଣ୍ଡ ଦେବା ଲାଗି ପ୍ରସ୍ତୁତ ହେଲେ। ଏହି ପ୍ରସଙ୍ଗକୁ କବି ସାରଳା ଦାସ ଅତି ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି। ବିଶେଷତଃ ଭାଉଜମାନଙ୍କ ମେଳରେ ସୁଭଦ୍ରାଙ୍କ ଜଳ କେଳି ପ୍ରସଙ୍ଗକୁ ସାରଳା ଦାସ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି। କିନ୍ତୁ କବି ଜଗନ୍ନାଥ ଦୁଇ ତିନୋଟି ପଦରେ ପ୍ରସଙ୍ଗଟିକୁ ଶେଷ କରିଛନ୍ତି। ସେହିପରି ଶ୍ରୀକୃଷ୍ଣଙ୍କ ସହାୟତାରେ ଅର୍ଜ୍ଜୁନ ସୁଭଦ୍ରାଙ୍କୁ ନେଇ ଦ୍ୱାରକାପୁରୀରୁ ମାୟାବତୀ ରଥରେ ବସି

ପ୍ରସ୍ଥାନ କରୁଥିବାବେଳେ ଦୁର୍ଯୋଧନଙ୍କ କୁରୁବଳ ଓ ବଳରାମଙ୍କର ଯଦୁବଳ ମିଳିତ ଭାବରେ ଅର୍ଜୁନଙ୍କୁ ଆକ୍ରମଣ କରିଛନ୍ତି । ଅର୍ଜୁନଙ୍କୁ ସାହାଯ୍ୟ କରିବା ଲାଗି ଶ୍ରୀକୃଷ୍ଣ ପ୍ରଚ୍ଛନ୍ନ ଭାବରେ ନିଜର ପୁତ୍ରମାନଙ୍କୁ ନିର୍ଦ୍ଦେଶ ଦେଇଥିବାର ପ୍ରସଙ୍ଗ କବି ଜଗନ୍ନାଥ ପାଣିଙ୍କ ସୁଭଦା ପରିଣୟରେ ଉଲ୍ଲେଖ ହୋଇଛି; କିନ୍ତୁ କବି ସାରଳା ଦାସ ସେହି ପ୍ରସଙ୍ଗଟିକୁ ଅତ୍ୟନ୍ତ ବିସ୍ତୃତ ଭାବରେ ବର୍ଣ୍ଣନା କରି ଗୋଟିଏ ଭୟାବହ ଯୁଦ୍ଧର ପରିସ୍ଥିତି ସୃଷ୍ଟି କରିଛନ୍ତି । ବିଶେଷତଃ ବଳରାମ ଓ ଅର୍ଜୁନଙ୍କର ଯୁଦ୍ଧ ଅତି ବିସ୍ତୃତ ଭାବରେ ସାରଳା ଦାସ ବର୍ଣ୍ଣନା କରିଥିବାବେଳେ, କବି ଜଗନ୍ନାଥ ପାଣି ଗୀତାଭିନୟର କ୍ଷୁଦ୍ର ପରିସର ମଧ୍ୟରେ ବହୁ ସମୟ ଧରି ଯୁଦ୍ଧ ଦୃଶ୍ୟ ଦେଖାଇବା ସମ୍ଭବ ନୁହେଁ ବୋଲି ଅତି ସଂକ୍ଷେପରେ, ଅର୍ଥାତ୍ ଦୁଇଟି ମାତ୍ର ପଦରେ ତାହା ଶେଷ କରିଛନ୍ତି ।

ବଳରାମଙ୍କ ଆଗରେ ଅର୍ଜୁନଙ୍କର ନିର୍ଭୁର୍ଜ ହେବା ପ୍ରସଙ୍ଗ ସାରଳା ମହାଭାରତରେ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି । ସେହି ପ୍ରସଙ୍ଗକୁ ମଧ୍ୟ ଅବିକଳ ଭାବରେ କବି ଜଗନ୍ନାଥ ପାଣି ସାରଳା ମହାଭାରତରୁ ଉଦ୍ଧାର କରି ସ୍ୱରଚିତ ଗୀତାଭିନୟଟିକୁ ଅଭିନୟୋପଯୋଗୀ କରାଇପାରିଛନ୍ତି । ତତ୍ପରେ କବି ସାରଳା ଦାସ ସୁଭଦ୍ରାଙ୍କ ସହିତ ଅର୍ଜୁନଙ୍କର ବିବାହ ଉତ୍ସବ ଦୀର୍ଘ ପଦ ଯୋଜନାରେ ବର୍ଣ୍ଣନା କରିଥିବାବେଳେ କବି ଜଗନ୍ନାଥ ଶେଷ ଛାନ୍ଦର ସ୍ୱଳ୍ପେଟି ପଦରେ ମାତ୍ର ବିବାହ ଉତ୍ସବ ଶେଷ କରାଇ ଗୋଟିଏ ପଦରେ ବର କନ୍ୟାଙ୍କ ମଧୁଚନ୍ଦ୍ରିକା ଉତ୍ସବ ବର୍ଣ୍ଣନପୂର୍ବକ ଗୀତାଭିନୟଟିକୁ ଶେଷ କରିଛନ୍ତି ।

ସାରଳା ମହାଭାରତରେ ସୁଭଦ୍ରା ହରଣ ପ୍ରସଙ୍ଗ ଦୁଇଟି ବଡ଼ ବଡ଼ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି । କବି ଘଟଣାବଳୀର ବିସ୍ତୃତ ବର୍ଣ୍ଣନା କରି ପାଠକମାନଙ୍କର କୌତୂହଳ ଉପଶମ କରିଥିବାବେଳେ କବି ଜଗନ୍ନାଥ ପାଣି ସେହି ପ୍ରସଙ୍ଗଟିକୁ ମାତ୍ର ଚଉରାଳିଶିଟି ଗୀତରେ ଶେଷ କରି ସୁରସିକ ସାମାଜିକମାନଙ୍କର ଚିତ୍ତ ବିନୋଦନ କରିଛନ୍ତି । ପୁରାଣ ରଚନାରେ ସାରଳା ଦାସ ଯେପରି ସିଦ୍ଧହସ୍ତ କବି, ବିଶେଷତଃ ଘଟଣାବଳୀକୁ ସ୍ୱାଭାବିକ ପରିପ୍ରେକ୍ଷୀରେ ସେ ଯେପରି ଭାବରେ ବର୍ଣ୍ଣନା କରିପାରନ୍ତି, ସେପରି ଦକ୍ଷତା କବି ବଳରାମ ଦାସଙ୍କୁ ଛାଡ଼ିଦେଲେ ଅନ୍ୟ କବିମାନଙ୍କଠାରେ ଆଦୌ ଦେଖାଯାଏନାହିଁ । କିନ୍ତୁ ସାଧକ କବି ଜଗନ୍ନାଥ ପାଣି ସାରଳାଙ୍କର ପ୍ରତିଭା ପ୍ରସୂତ ସୁଭଦ୍ରା ହରଣ ପ୍ରସଙ୍ଗକୁ ଅତି ଦକ୍ଷତାର ସହିତ ଗୀତାଭିନୟ ଢଙ୍ଗରେ ରଚନା କରି ଉଭୟ ପାଠକ ଓ ସାମାଜିକମାନଙ୍କର ମନକୁ ଆକୃଷ୍ଟ କରିପାରିଛନ୍ତି ।

---

# ମହାଭାରତ

କବି ଜଗନ୍ନାଥ ବନ୍ଧୁ ଗୀତାଭିନୟ ରଚନା କରିବା ସଙ୍ଗେ ସଙ୍ଗେ ସଂସ୍କୃତ ମହାଭାରତ ଓ ବାଲ୍ମୀକି ରାମାୟଣର ଅନୁବାଦ କରିଥିଲେ । କିନ୍ତୁ ରାମାୟଣ ପୁସ୍ତକ ସମ୍ବନ୍ଧରେ କେବଳ ଲୋକମୁଖରୁ ଶୁଣାଯାଉଥିଲେହେଁ, ଅଦ୍ୟାବଧି ଉକ୍ତ ପୁସ୍ତକ ଲୋକଲୋଚନ ଗୋଚରକୁ ଆସିନାହିଁ । କିନ୍ତୁ ମହାଭାରତର କେତୋଟି ପର୍ବ ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ ହୋଇଛି । ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଏହି ପୋଥିଟି ପଶ୍ଚିମବଙ୍ଗର ମେଦିନୀପୁର ଅଞ୍ଚଳରୁ ସଂଗୃହୀତ ହୋଇଛି । ପୋଥିଟିର ମୋଟ ପତ୍ର ସଂଖ୍ୟା ଏକଶହ ଏକଚାଳିଶ ଏବଂ ପ୍ରତ୍ୟେକ ତାଳପତ୍ରରେ ଦୁଇ, ତିନି ଓ ଚାରି ଧାଡ଼ି ଲେଖାଏଁ ପାଠ ରହିଛି । କବି ଜଗନ୍ନାଥ ସାରଳା ଦାସ ଓ ଜଗମୋହନ ରାମାୟଣର କବି ବଳରାମ ଦାସଙ୍କ ପରି ଦାଣ୍ଡୀବୃତ୍ତର ଆଶ୍ରୟ ନ ନେଇ 'ଭାଗବତ ବାଣୀ' ବା ନବାକ୍ଷରୀ ଛନ୍ଦରେ ସମ୍ପୂର୍ଣ୍ଣ ପୁସ୍ତକଟି ରଚନା କରିଛନ୍ତି । କବିଙ୍କ ରଚିତ ମହାଭାରତରେ 'ପର୍ବ'ଗୁଡ଼ିକ ମଧ୍ୟରେ ରାଜ୍ୟ ସଂଗ୍ରହାଳୟରେ କେବଳ କର୍ଣ୍ଣ, ଶଲ୍ୟ, ଗଦା, କାର୍ତ୍ତିକା, ତୀର୍ଥ, ଅଶ୍ୱମେଧ, ସଭା, ମୂଷଳୀ ଓ ସ୍ୱର୍ଗାରୋହଣ ପର୍ବ ପ୍ରଭୃତି ନଅଗୋଟି ପର୍ବ ସଂରକ୍ଷିତ ହୋଇଛି । ଏଥିରୁ ସ୍ପଷ୍ଟ ଭାବରେ ଜଣାଯାଏ ଯେ, କବି ଜଗନ୍ନାଥଙ୍କ ରଚିତ ମହାଭାରତର ଉକ୍ତ ନଅଗୋଟି ପର୍ବ ମିଳିଥିବାରୁ ସେ ସମୁଦାୟ ମହାଭାରତର ଅନୁବାଦ କରିଥିଲେ ।

କର୍ଣ୍ଣ ପର୍ବର ବିଷୟବସ୍ତୁ ବର୍ଣ୍ଣନାରୁ କବି ଜଗନ୍ନାଥ ସଂସ୍କୃତ ମହାଭାରତରେ ଅବିକଳ ଅନୁବାଦ କରି ନଥିବାର ଜଣାଯାଏ । କବି ମଧ୍ୟ ଏହାର ସୂଚନା କର୍ଣ୍ଣପର୍ବର ଶେଷରେ ଦେଇଛନ୍ତି ।

"ଭାରଥ ଅନେକ ପ୍ରକାର ।
କହିଲି ଯେ ସୁକ୍ଷ୍ମ କରିବ ॥

× × ×

ଇତିଶ୍ରୀ ମହାଭାରଥେ ସୂତ୍ରରୂପାଖ୍ୟେ ଭାଷା ପ୍ରବନ୍ଧେ ଶ୍ରୀ ଜଗନ୍ନାଥ ଦାସକୃତ କର୍ଣ୍ଣପର୍ବ ଭାଷାସୂତ୍ର ସମ୍ପୂର୍ଣ୍ଣ ।"

ଖୁବ୍ ସମ୍ଭବତଃ କବି ଜଗନ୍ନାଥ ଏଠାରେ ସଂକ୍ଷେପ ଅର୍ଥରେ ସୂକ୍ଷ୍ମ ଶବ୍ଦର ବ୍ୟବହାର କରିଛନ୍ତି । କବିଙ୍କ ରଚନା ଶୈଳୀର ପରିଚୟ ଲାଗି ଏଠାରେ କର୍ଣ୍ଣପର୍ବର ଭୀମ ଦୁଃଶାସନ ଯୁଦ୍ଧ ପ୍ରସଙ୍ଗରୁ କେତେକାଂଶ ଉଦ୍ଧୃତ ହେଲା :

"କର୍ଣ୍ଣ ଅର୍ଜୁନ ଯୁଦ୍ଧ ଆଜ,
ନାହିଁ କହନ୍ତି ଦେବରାଜ ॥
ଭୀମ ଦୁଃଶାସନ ଲଢ଼ାଇ,
ଦେଖ ଅର୍ଜୁନ ଆଜ ରହି ॥
ଭୀମ ଦୁଃଶାର ଗଦାଘୋଳେ,
ଭସ୍ମେ ଭାଙ୍ଗିଲେ ଦିଗପାଳେ ॥
କୁରୁ ପାଣ୍ଡବେ ଯେତେବେଳେ,
ଦେଖିଣ ହରଷ ହୋଇଲେ ॥
ଭୀମକୁ ଦୁଃଶା ଗଦା ପିଟି,
ଭୀମର ଅଙ୍ଗେ ଅଗ୍ନି ଉଠି ॥
ଦୁଃଶାର ଗଦା ଭଗ୍ନ ହୋଇ,
ରଣେ ଛାଡ଼ି ଦୁଃଶା ଚଳଇ ॥
ଭୀମ ବୋଇଲେ ଯାଉ କାହିଁ,
ଦୁଃଶା ବୋଇଲେ ଶସ୍ତ୍ର ନାହିଁ ॥
ଛାଡ଼ିଲ ଶସ୍ତ୍ର ଭୀମ କହି,
ମାଲବନ୍ଧେ ଆସ ଲଢ଼ାଇ ॥"
(କର୍ଣ୍ଣ ପର୍ବ)

ଶଲ୍ୟ ପର୍ବ ମାତ୍ର ଛ'ଟି ପୋଥି ପତ୍ରରେ ଶେଷହୋଇଛି । କବି ପୂର୍ବପରି ଏ ପର୍ବକୁ ମଧ୍ୟ ଅତି ସଂକ୍ଷେପରେ ସମାପ୍ତ କରିଛନ୍ତି । କର୍ଣ୍ଣପର୍ବ ପରି ଏ ପର୍ବର ଶେଷରେ କବି ମହାଭାରତର ଫଳଶ୍ରୁତି ସମ୍ବନ୍ଧରେ ଉଲ୍ଲେଖ କରି ବିଷୟବସ୍ତୁ ସମାପ୍ତ କରିଛନ୍ତି ।

"କହଇ ଦାସ ଜଗନ୍ନାଥ, ଭାଷା ପ୍ରବନ୍ଧେ ଏ ଭାରଥ ।
× × ×
ଗଙ୍ଗାସ୍ନାନର ଫଳ ପାଇ, ଅନ୍ତେ ବୈକୁଣ୍ଠ ପୁର ଯାଇ ॥
ଭାରଥ ଶ୍ରବଣର ଫଳ, ଶୃଗାଳ ପଢ଼ିଛି ଆଗର ।"

ଗଦା ପର୍ବ ମାତ୍ର ଚଉଦଟି ପୋଥି ପତ୍ରରେ ଶେଷ ହୋଇଛି । ଏହା ମଧ୍ୟ ପୂର୍ବ ପର୍ବଗୁଡ଼ିକ ପରି ଅତି ସଂକ୍ଷେପରେ ଶେଷ କରି ଦ୍ୱିଜବର ଜଗନ୍ନାଥ ଲେଖିଛନ୍ତି—

"ଅଠର ଦିନ ଯୁଦ୍ଧ ହୋଇଲା, ଗଦା ପର୍ବ ଏଥି ସରିଲା ।
କହିଲା ଦ୍ୱିଜ ବିପ୍ରବର, ଶ୍ରୀ ଜଗନ୍ନାଥଙ୍କ ଆଜ୍ଞାର ॥
× × ×
ଇତିଶ୍ରୀ ମହାଭାରତେ ସୁନ୍ଦରରୂପାଖ୍ୟେ ଭାଷା ପ୍ରବନ୍ଧେ ଶ୍ରୀ ଜଗନ୍ନାଥ ଦାସ ଗଦାପର୍ବ ଭାଷାସୂତ୍ର ସମ୍ପୂର୍ଣ୍ଣ ।"

କବି ଜଗନ୍ନାଥଙ୍କ ବର୍ଣ୍ଣିତ ମହାଭାରତର ଅନ୍ୟାନ୍ୟ ପର୍ବଗୁଡ଼ିକ ମଧ୍ୟରେ କାର୍ତ୍ତିକା ପର୍ବ ମାତ୍ର ସାତଟି ପୋଥି ପତ୍ରରେ, ଗର୍ଭପର୍ବ ପନ୍ଦରଟି ପୋଥି ପତ୍ରରେ, ଅଶ୍ୱମେଧ ପର୍ବ କୋଡ଼ିଏଟି ପୋଥି ପତ୍ରରେ, ପଶା ପର୍ବ ବାଇଶଟି ପତ୍ରରେ, ମୂଷଳୀ ପର୍ବ ତେଇଶଟି ପତ୍ରରେ ଓ ସ୍ୱର୍ଗାରୋହଣ ପର୍ବ (ଅସମ୍ପୂର୍ଣ୍ଣ) ଏଗାରଟି ପୋଥି ପତ୍ରରେ ଶେଷହୋଇଛି ।

କବିଙ୍କ ବର୍ଣ୍ଣିତ ପଶାପର୍ବ ସାରଳା ଦାସଙ୍କ ମହାଭାରତର ସଭାପର୍ବର ଅନ୍ତର୍ଗତ । ପାଣ୍ଡବ ଓ କୌରବଙ୍କ ମଧ୍ୟରେ ପଶାଖେଳରୁ ଭୟାବହ ମହାଭାରତ ଯୁଦ୍ଧର ଉତ୍ପତ୍ତି । କବି ଜଗନ୍ନାଥ ଏହି ପର୍ବଟିକୁ ଅନ୍ୟାନ୍ୟ ପର୍ବ ପରି ଅତି ସଂକ୍ଷେପରେ ବର୍ଣ୍ଣନା କରିଛନ୍ତି । କବି ସାରଳା ଦାସ ସଭା ପର୍ବଟିକୁ ୩୫୭ ପୃଷ୍ଠାରେ ଶେଷ କରିଥିବାବେଳେ, କବି ଜଗନ୍ନାଥ ସେହି ପର୍ବଟିକୁ ମାତ୍ର ବାଇଶଟି ପତ୍ରରେ ଶେଷ କରିଛନ୍ତି । ଏଥିରୁ ସ୍ପଷ୍ଟ ଭାବରେ ଜଣାଯାଏ ଯେ, କବି ଜଗନ୍ନାଥ ଯଥାସମ୍ଭବ ସଂକ୍ଷେପରେ ଉକ୍ତ ପର୍ବଟିକୁ ଶେଷ କରିଛନ୍ତି ଏବଂ ସାରଳା ଦାସଙ୍କ ବର୍ଣ୍ଣିତ ବହୁ ପ୍ରକରଣ ଏଥିରେ ଦେଖିବାକୁ ମିଳେନାହିଁ ।

କବି ଜଗନ୍ନାଥ ତାଙ୍କର ଅନ୍ୟାନ୍ୟ ଗୀତାଭଜନଗୁଡ଼ିକ ପରି ମହାଭାରତକୁ ଅତି ସରଳ ଓ ସର୍ବଜନବୋଧ୍ୟ ଭାଷାରେ ରଚନା କରିଛନ୍ତି । କବିଙ୍କ ଶବ୍ଦଯୋଜନା ଓ ବର୍ଣ୍ଣନାଶୈଳୀ ସମ୍ବନ୍ଧରେ ଜାଣିବାକୁ ଇଚ୍ଛାକରୁଥିବା ପାଠକ ଓ କୌତୂହଳୀ ସମାଲୋଚକମାନଙ୍କ ଆଲୋଚନା ନିମିତ୍ତ ପଶା ପର୍ବରୁ କେତେକାଂଶ ଏଠାରେ ଉଦ୍ଧୃତ ହେଲା ।

"ଏଥୁ ଯେ କହେ ଧର୍ମନାନ, କି ପୀଢ଼ି ବିଶ ଦୁର୍ଯ୍ୟୋଧନ ।
ମୁହିଁ ରଖିଛି ଶତେ ଭାଇ, ଧର୍ମେ ରଖିଲେ ନିଜ ଦେହୀ ॥
ଯେବେ ଜିଣିବି ମୁଁ ଏବାର, ପଶା ପାଡ଼ିଲା ମନ୍ତ୍ରୀବର ।
ଖେଳେ ହାରିଲେ ଧର୍ମରାଜ, ଦୁଃଶା ଧରିଲା ଧର୍ମଭୁଜ ॥
ସଭାରୁ ଉଠ ହେ ତୁରିତେ, ବସ ହେ ଭାଇଙ୍କ ସଙ୍ଗତେ ।
ଧର୍ମେ ଉଠିଲେ ହୋଇ ଲାଜି, ଭୀମ ଉଠିଲା ଗଳଗାଜି ॥
× × ×

ଯୁଧିଷ୍ଠି ଭୂଜ ଦୁଃଶା ଧର, ସଭାର ତଳେ ନେଇକର ।
ଦୁର୍ଯ୍ୟୋଧନକୁ କହେ ଭୀଷ୍ମ, ଧର୍ମକୁ ନ କର କଷଣ ॥
ଲକ୍ଷେକ ରାଜାର ସେ ଶିର, ଲୋଟିଛୁ ଯା ପାଦ ତଳର ।
ପାତାଳ ରାଜା ଲଙ୍କପତି, ଯା ପାଦେ ହୋଇଲେ ଭକତି ॥
ତାହାକୁ ଲଜ୍ଜାଯ ନକର, ସଭାରେ ଥାଉ ଯୁଧିଷ୍ଠିର ।
× × ×
କୋପେ ବୋଲଇ ଜାଜ୍ଞସେନୀ, ଧିକ ତୋ ଜୀବନ ପାପେନୀ ।
ସିଂହ ହୋଇ ହୋଇଲ ଛେଳି, କୋପେ ମାରୁତି ପରଜ୍ୱଳି ॥
ରେ ରେ କୌରବା ବୋଲି ଡାକ, ଲକ୍ଷଯୋଜଣେ ଯମ ଚମକ ।
ଦୁଃଶା ବୋଇଲ କି ବଢ଼ାଇ, ସେବକ ଗଲ ଭ୍ରମେ ହୋଇ ॥
× × ×
ଏଥୁ ଯେ ଦ୍ରୌପଦୀ ନରନେ, ଡାକିଲ ରଖ ପୀତବାସେ ।
ଆତଙ୍କେ ଦ୍ରୌପଦୀ ଡାକିଲେ, ଖେଳନ୍ତେ କୃଷ୍ଣ ତା' ଜାଣିଲେ ॥
ସତ୍ୟ ଯେ ଭାମା ଦେବ ହରି, ଗରୁଡ଼ ପରେ ବିଜେ କରି ।
ସଭାର ଶୂନ୍ୟେ ଝଗ ଝେକ, ଦ୍ରୌପଦୀ ଶ୍ରୀହରିଙ୍କି ଡାକ ॥
ଆଦିତ୍ୟଙ୍କୁ ଚନ୍ଦ୍ର ବୋଇଲେ, ଦ୍ରୌପଦୀ ଆଦିତ୍ୟ ଚନ୍ଦ୍ରଲେ ।
ଶ୍ରୁଗ୍ନା ମାଯାଙ୍କୁ କୃଷ୍ଣ ପେଶି, ଦ୍ରୌପଦୀକ ବସ୍ତ୍ର ଦିଶିଲି ॥"

(ପଶାପର୍ବ)

ମହାଭାରତର ରଚନା ଶୈଳୀରୁ ଜଣାଯାଏ, କବି ପ୍ରଥମାବସ୍ଥାରେ ମହାଭାରତ ପାଠ କରି ତା'ର ସାରାଂଶ ଲେଖିଥିଲେ, କାରଣ ମହାଭାରତର ବର୍ଣ୍ଣବିନ୍ୟାସ, ଭାବପ୍ରକାଶ ଓ ଶବ୍ଦଯୋଜନା ଆଦିରେ ଯେପରି ପରିପକ୍ୱତା ଥିବାପରି ବୋଧହୁଏନାହିଁ । କିମ୍ବଦନ୍ତୀରୁ ଜଣାଯାଏ, କବି ପ୍ରଥମେ ରାମାୟଣ ରଚନା କରିଥିଲେ ଏବଂ ତତ୍ପରେ ମହାଭାରତ ପ୍ରଣୟନ କରିଥିଲେ । ରାମାୟଣ ଅଦ୍ୟାପି ମିଳି ନ ଥିବାରୁ ତା'ର ଭାଷା, ବର୍ଣ୍ଣନା ଶୈଳୀ ଓ ପଦବିନ୍ୟାସ ସମ୍ବନ୍ଧରେ କୌଣସି ଧାରଣା ଦେଇ ହୁଏ ନାହିଁ । ମହାଭାରତର ରଚନାରୁ ଯାହା ଜଣାଯାଏ, ସେଥିରୁ ଅନୁମିତ ହୁଏ ଯେ, ଖୁବ୍ ସମ୍ଭବତଃ କବି ଜଗନ୍ନାଥ ଏହି ଭାଷାବନ୍ଧ ଭାରତକୁ ପ୍ରାରମ୍ଭିକ ଅବସ୍ଥାରେ ଆରମ୍ଭକରିଥିଲେ ।

ମହାଭାରତରେ କବି ନିଜର ପରିଚୟସୂଚକ କୌଣସି ପଦ ଉଲ୍ଲେଖ କରି-ନାହାନ୍ତି । ଗୋଟିଏ ଦୁଇଟି ସ୍ଥାନରେ ଦ୍ୱିଜବର ଜଗନ୍ନାଥ ଓ ଅନ୍ୟ କେତେକ ସ୍ଥାନରେ ଜଗନ୍ନାଥ ଦାସ ବୋଲି ଭଣିତାରେ ରହିଛି । ସେଥିରୁ ଏହା ଭଦ୍ରକ ଅନ୍ତର୍ଗତ 'ନଲାଙ୍ଗ' ଗ୍ରାମର କବି ଜଗନ୍ନାଥ ପାଣିଙ୍କର ରଚନା ବୋଲି ନିଃସନ୍ଦେହରେ

କୁହାଯାଇ ପାରିବ ନାହିଁ । ଆହୁରି ମଧ୍ୟ ଜଣାଯାଏ, ଭାଗବତକାର ଅତିବଡ଼ି ଜଗନ୍ନାଥ ଦାସ ଖଣ୍ଡିଏ ମହାଭାରତ ଲେଖିଥିଲେ; କିନ୍ତୁ ପ୍ରସ୍ତୁତ ପୋଥିର ଭାଷା, ବର୍ଣ୍ଣନାଶୈଳୀ ଓ ଶବ୍ଦବିନ୍ୟାସରୁ ଏହା ଅତିବଡ଼ିଙ୍କ ରଚନା ବୋଲି କହି ହେବନାହିଁ । କାରଣ ଭାଗବତର ମାର୍ଜିତ ଭାଷା, ସୁସ୍ପଷ୍ଟ ଭାବବିନ୍ୟାସ ଓ ପାଣ୍ଡିତ୍ୟପୂର୍ଣ୍ଣ ଶୈଳୀ ଦେଖିଲେ ପ୍ରସ୍ତୁତ ମହାଭାରତ ରଚନାଟି ତାଙ୍କର ଲେଖନୀରୁ ନିଃସୃତ ହୋଇନାହିଁ ବୋଲି ଯେ କୌଣସି ଆଲୋଚକ ନିଃସନ୍ଦେହରେ କହିପାରିବେ ।

ଏହି ମହାଭାରତର ଅନ୍ୟ କୌଣସି ନକଲ ଅଦ୍ୟାପି ଓଡ଼ିଶାର ଅନ୍ୟ କୌଣସି ଅଞ୍ଚଳରୁ ମିଳିନାହିଁ । ପ୍ରସ୍ତୁତ ପୋଥି ଖଣ୍ଡିକ ବିଚ୍ଛିନ୍ନାଞ୍ଚଳ ପଶ୍ଚିମବଙ୍ଗର ମେଦିନୀପୁର ଅଞ୍ଚଳରୁ ମିଳିଥିବାରୁ ଏହା ବାଲେଶ୍ୱର ଜିଲ୍ଲାର ଭଦ୍ରକ ଅଞ୍ଚଳର କବି ଜଗନ୍ନାଥ ପାଣିଙ୍କ ରଚିତ ମହାଭାରତ ହେବା ଅସମ୍ଭବ ନୁହେଁ । ଯା'ହେଉ, ପ୍ରସ୍ତୁତ ମହାଭାରତର ଅନ୍ୟାନ୍ୟ ପର୍ବଗୁଡ଼ିକ କିମ୍ବା କବିଙ୍କ ପରିଚୟସୂଚକ କୌଣସି ପ୍ରାମାଣିକ ତଥ୍ୟ ମିଳିବା ପର୍ଯ୍ୟନ୍ତ ଏହା 'ନଲାଙ୍ଗ' ଅଧିବାସୀ ଜଗନ୍ନାଥ ପାଣିଙ୍କ ରଚନା ବୋଲି ଅନୁମାନ କରାଯିବା ଅସମୀଚୀନ ନୁହେଁ ।

---

# ଯଶୋଦା କୋଇଲି

ସଂସ୍କୃତ ସାହିତ୍ୟରେ 'ଦୂତ କାବ୍ୟ' ଗୋଟିଏ ସ୍ୱତନ୍ତ୍ର ବିଭବ । ଦୂତ ମାଧ୍ୟମରେ ସନ୍ଦେଶ ପ୍ରେରଣ କରିବା ଏହାର ପ୍ରତିପାଦ୍ୟ ବିଷୟ । ତେଣୁ ପ୍ରଥମ ଦୂତ କାବ୍ୟର ରଚୟିତା ମହାକବି କାଳିଦାସ 'ମେଘଦୂତ'କୁ ଖଣ୍ଡକାବ୍ୟରେ ଅନ୍ତର୍ଭୁକ୍ତ କରିଛନ୍ତି । କାରଣ ଏହା କୌଣସି ଏକ ନିର୍ଦ୍ଦିଷ୍ଟ ଘଟଣାବଳୀ ନୁହେଁ; କେବଳ ଗୋଟିଏ ବିଷୟର ଅଂଶ ମାତ୍ର । ସଂସ୍କୃତ ସାହିତ୍ୟରେ ଦୂତକାବ୍ୟର ଭୂମିକା କାଳିଦାସଙ୍କଠାରୁ ଆରମ୍ଭ ହୋଇଛି । କବିକୁଳ ଗୁରୁଙ୍କର ପଦଚିହ୍ନ ଅନୁସରଣ କରି ପରବର୍ତ୍ତୀ ଯୁଗର ବହୁ କବି ପବନଦୂତ, ପଦାଙ୍କଦୂତ, ମନୋଦୂତ, ହୃଦୟଦୂତ, ଶୁକଦୂତ, ନେମୀଦୂତ, ପାନ୍ଥଦୂତ, ଭୃଙ୍ଗଦୂତ ଆଦି ଲେଖିଥିବାର ଖଣ୍ଡକାବ୍ୟ ସଂସ୍କୃତ ସାହିତ୍ୟରେ ଦେଖିବାକୁ ମିଳେ । ଓଡ଼ିଆ କବି କୃଷ୍ଣ ଶ୍ରୀଚନ୍ଦନଙ୍କ ଦ୍ୱାରା 'ଅବ୍ଦଦୂତ' ନାମରେ ଖଣ୍ଡିଏ ଦୂତକାବ୍ୟ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀରେ ରଚିତ ହୋଇଥିଲା । କବି ଶ୍ରୀ ଚନ୍ଦନ ସ୍ୱରଚିତ ଖଣ୍ଡକାବ୍ୟଟିକୁ ମହାକବି କାଳିଦାସଙ୍କ ମେଘଦୂତର ଅବଲମ୍ବନରେ ରଚନା କରିଛନ୍ତି । ଖଣ୍ଡକାବ୍ୟଟି 'ମନ୍ଦାକ୍ରାନ୍ତା' ନାମକ ବୃତ୍ତରେ ରଚିତ । ପ୍ରସ୍ତୁତ ଦୂତ କାବ୍ୟରେ ଯକ୍ଷରାଜ ଓ କୁବେରଙ୍କ ଅଭିଶାପଗ୍ରସ୍ତ ଯକ୍ଷ ଅଳକାପୁରୀରେ ଥିବା ନିଜର ପ୍ରାଣପ୍ରିୟା ନିକଟକୁ ରାମଗିରିରୁ ମେଘଦ୍ୱାରା ସନ୍ଦେଶ ପଠାଇଥିବା ପରି, ପ୍ରିୟା ବିରହରେ ସନ୍ତପ୍ତ ଶ୍ରୀ ରାମଚନ୍ଦ୍ର ମାଲ୍ୟବନ୍ତ ଗିରିରୁ ସୀତାଙ୍କ ନିକଟକୁ ଅବ୍ଦ ଅର୍ଥାତ୍ ମେଘକୁ ଦୂତରୂପେ ପଠାଇଥିବା ବିଷୟ ବର୍ଣ୍ଣିତ ହୋଇଛି । କବି କୃଷ୍ଣ ଶ୍ରୀ ଚନ୍ଦନ ଖେମୁଣ୍ଡୀ ରାଜ୍ୟର ମନ୍ତ୍ରୀ ରାମଚନ୍ଦ୍ର ମଙ୍ଗରାଜଙ୍କ ପୌତ୍ର ଓ ନାରାୟଣ ମଙ୍ଗରାଜଙ୍କ ପୁତ୍ର ଥିଲେ । ତାଙ୍କର ମାତାଙ୍କ ନାମ ପଦ୍ମାବତୀ ଦେବୀ । ସେ ଗୋଟିଏ ଶ୍ଳୋକରେ ନିଜର ପରିଚୟ ଦେଇ ଲେଖିଛନ୍ତି—

"ମନ୍ତ୍ରୀ ଶ୍ରୀ ରାମଚନ୍ଦ୍ରଃ ଖିମୁଣ୍ଡୀ ନୃପମଣେର୍ମଙ୍ଗରାଜୋ ଯଶୋଦା—
ଦେବୀ ଯଂ ମଙ୍ଗରାଜଂ ତନୟ ମଜନୟ ଦ୍ରାସ୍ୟ ନାରାୟଣଞ୍ଚ ॥
ପଦ୍ମାବତ୍ୟାଖ୍ୟା ଦେବ୍ୟାଃ ପ୍ରଥିତ ତନୁଭୂବା ତସ୍ୟ ନାମାବ୍ଦ ଦୂତମ୍ ।
କୃଷ୍ଣ ଶ୍ରୀ ଚନ୍ଦନେନ ପ୍ରିୟମିଦ ରଚିତଂ ଖଣ୍ଡକାବ୍ୟଂ ସମାପ୍ତମ୍ ॥"

ଅବିଭ ଦୂତ-ଖଣ୍ଡ-କାବ୍ୟର ଛନ୍ଦ, ଶୈଳୀ ଓ ଭାବ ସବୁପ୍ରକାରରେ ସବୁପାଖି ପ୍ରତି ଦୃଷ୍ଟି ଦେଲେ ନିଃସନ୍ଦେହରେ କହିହେବ ଯେ, କବି ଶ୍ରୀ ଚନ୍ଦନଙ୍କ ଉପରେ ମହାକବି କାଳିଦାସଙ୍କର ଯଥେଷ୍ଟ ପ୍ରଭାବ ପଡ଼ିଛି ।

"ରାମଃ କାମ ପ୍ରହରଣ ଶତୈଃ ପାରବଶ୍ୟଂ ପ୍ରପନ୍ନଃ ।
ସ୍ମାରଂ ସ୍ମାରଂ ହୃଦ ବନିତାଂ ପ୍ରେୟସୀଂ ବିପ୍ରଯୋଗାତ୍ ॥
ଏକତ୍ରିଷ୍ଟନ୍ଧବନିଶଯ୍ୟେନେ ମାଲ୍ୟବଚ୍ଛୈଳସାନୌ ।
ବଙ୍କେ ଖେଳତ୍ ସ୍ଫୁରିତ ଚପଳାଂ କାନ୍ତମବ୍ଦଂ ଦଦର୍ଶ ॥"

ଓଡ଼ିଆ ସାହିତ୍ୟରେ 'କୋଇଲି' ଗୋଟିଏ ସ୍ୱତନ୍ତ୍ର ବିଭାବ । ଏହା ସାରଳା ଯୁଗର ପରବର୍ତ୍ତୀ ସମୟରେ ଓଡ଼ିଆ ସାହିତ୍ୟରେ ଆରମ୍ଭ ହୋଇଛି । ଓଡ଼ିଆ ସାହିତ୍ୟରେ କେଶବ କୋଇଲି, କାନ୍ତ କୋଇଲି, ଶ୍ରୀରାମ କୋଇଲି, ଅର୍ଥ କୋଇଲି, ବାରମାସୀ କୋଇଲି, କୋଇଲି ଦୂତ, ଦୟାସାଗର କୋଇଲି, ଶିଶୁବେଦ କୋଇଲି, ଜ୍ଞାନୋଦୟ କୋଇଲି, ବନବାସ କୋଇଲି, ମନ୍ଦୋଦରୀ କୋଇଲି ପ୍ରଭୃତି ଅନେକ ପୁସ୍ତକ ଦେଖାଯାଏ । କୋଇଲି ସାହିତ୍ୟର ପ୍ରବର୍ତ୍ତକ ମାର୍କଣ୍ଡଦାସ ବା ଦ୍ୱିଜ ମାର୍କଣ୍ଡେୟ ମିଶ୍ର କେଶବ କୋଇଲି ରଚନା କରି ସେଥିରେ ମଥୁରାରେ ଥିବା ଶ୍ରୀକୃଷ୍ଣଙ୍କ ନିକଟକୁ ଯଶୋଦା କୋଇଲି ଦ୍ୱାରା ସନ୍ଦେଶ ପଠାଇ ଥିବାର ବର୍ଣ୍ଣନା କରିଛନ୍ତି । ମେଘଦୂତର ଯକ୍ଷ ବା ଅଦ୍‌ଭୁତର ରାମଚନ୍ଦ୍ର ଯେପରି ପ୍ରିୟା ବିରହରେ ସନ୍ତପ୍ତ ହୋଇ ହିତାହିତ ଜ୍ଞାନ ହରାଇବା ସଙ୍ଗେ ସଙ୍ଗେ ଧୂମଃଜ୍ୟୋତି ସଲିଳ ମରୁତର ସମ୍ମିଶ୍ରଣରେ ନିର୍ମିତ ମେଘଦ୍ୱାରା ସନ୍ଦେଶ ପଠାଇବାର ଆଶା ପୋଷଣ କରିଛନ୍ତି, ଠିକ୍ ସେହିପରି କବି ମାର୍କଣ୍ଡ ଦାସ କେଶବ କୋଇଲିରେ ବର୍ଣ୍ଣିତ ମାତା ଯଶୋଦା ପୁତ୍ରର ଅନୁପସ୍ଥିତିରେ ପାଗଳିନୀ ହୋଇ ଶ୍ରୀକୃଷ୍ଣଙ୍କ ଶରୀରର ବର୍ଣ୍ଣ ସହିତ ଓ ବଂଶୀଧରଙ୍କ ମୁରଲୀର ସ୍ୱର ସହିତ ସାମ୍ୟଥିବା କୋଇଲିକୁ ଦେଖି ତାହାର ଦ୍ୱାରା ମଥୁରାପୁରକୁ ବାର୍ତ୍ତା ପଠାଇବା ଲାଗି ମନସ୍ଥ କରିଛନ୍ତି । ଅନ୍ୟାନ୍ୟ କୋଇଲି ଗୁଡ଼ିକରେ ମଧ୍ୟ କୌଶଲ୍ୟା ରାମଙ୍କ ନିକଟକୁ, ମନ୍ଦୋଦରୀ ରାବଣଙ୍କୁ, ରାକ୍ଷସ ପୁରରେ ବନ୍ଦିନୀ ସୀତା ପ୍ରାଣପ୍ରିୟ ଶ୍ରୀରାମଙ୍କ ନିକଟକୁ, ଅଯୋଧ୍ୟାବାସୀ ଶ୍ରୀରାମଙ୍କ ନିକଟକୁ ତଥା କୌଣସି ଏକ ବିରହିଣୀ ନାୟିକା ପ୍ରାଣପ୍ରିୟ ନିକଟକୁ ସନ୍ଦେଶ ପଠାଇବାର ବିଷୟ ବର୍ଣ୍ଣିତ ହୋଇଛି ।

ପ୍ରସ୍ତୁତ ଯଶୋଦା କୋଇଲିର ପ୍ରଣେତା ହେଉଛନ୍ତି ବିପ୍ର ଜଗନ୍ନାଥ । ପ୍ରସ୍ତୁତ କୋଇଲିଟିକୁ ଭାଗବତର ପ୍ରଣେତା ଜଗନ୍ନାଥ ଦାସଙ୍କ ରଚନା ବୋଲି ଚିହ୍ନିତ କରାଇବାର କୌଣସି ପ୍ରମାଣ ମିଳେ ନାହିଁ । ବିଶେଷତଃ ପଦସଂଯୋଜନା, ପ୍ରକାଶ

ଭଙ୍ଗୀ ପ୍ରଭୃତିରୁ ଏହା ପରବର୍ତ୍ତୀ କାଳର କୌଣସି କବି ଜଗନ୍ନାଥଙ୍କଦ୍ୱାରା ରଚିତ ବୋଲି ମନେହୁଏ । କବି ଜଗନ୍ନାଥ ପାଣି ବହୁ ଗୀତାଭିନୟ, ସୁଆଙ୍ଗ, ଭଜନ ଆଦି ରଚନା କରିଥିବାରୁ, ଏହା ତାଙ୍କର ରଚନା ବୋଲି ଅନୁମାନ କରାଯାଏ । କବିଙ୍କ ପରିଚୟସୂଚକ କୌଣସି ପଦ ପ୍ରସ୍ତୁତ କୋଇଲିରେ ମିଳେ ନାହିଁ । ଯଶୋଦା କୋଇଲିର ବିଷୟବସ୍ତୁ ମାର୍କଣ୍ଡ ଦାସଙ୍କ କେଶବ କୋଇଲିରୁ ଗୃହୀତ ହୋଇଛି । କେବଳ କବି ନିଜ କାବ୍ୟିକ ପ୍ରତିଭା ବଳରେ ଶବ୍ଦଯୋଜନା କ୍ଷେତ୍ରରେ ଭିନ୍ନତା ଦେଖାଇଛନ୍ତି । ମାତା ଯଶୋଦା ଗୋପପୁରରେ ଶ୍ରୀକୃଷ୍ଣଙ୍କ ଅନୁପସ୍ଥିତି ଅନୁଭବ କରି ଶୋକବିହ୍ୱଳା ହୋଇଉଠିଛନ୍ତି । ଶ୍ରୀକୃଷ୍ଣଙ୍କର ପିଲାଦିନର ସମସ୍ତ କୃତ୍ୟ ଗୋଟି ଗୋଟି ହୋଇ ତାଙ୍କର ମନକୁ ଆଲୋଡ଼ନ କରିଛି । ସେ ହତାହତଜ୍ଞାନ ହରାଇ କୋଇଲି ଆଗରେ ଶ୍ରୀକୃଷ୍ଣଙ୍କ ଗୁଣ ବାଖ୍ୟାନ କରିଛନ୍ତି ଏବଂ ଶୀଘ୍ର ମଧୁବନକୁ ଯାଇ ଶ୍ରୀକୃଷ୍ଣ ବଳରାମ ଆଉ ଗୋପପୁରକୁ ଆସିବେ କି ନାହିଁ ବୁଝି ଆସିବା ଲାଗି କୋଇଲିକୁ ଅନୁରୋଧ କରିଛନ୍ତି ।

"କୋଇଲି, ହରି ରାମ ବେନି ଜନ ।
ହେବେ ଗୋପକୁ ଆଉ ପ୍ରସନ୍ନ ॥
ହରି ଆଦର କରିଣ ଗଲେ ।
କୋଇଲି,
ହତ୍ୟା ହେବ ବୋଲି ଭଣ୍ଟେ ନଇଲେ ଲୋ ।
ହରଷେ ମଧୁବନକୁ ଯାଅ ॥
ହରିଙ୍କ ଆଣିଣ ମୋ ପ୍ରାଣ ଦିଅ ଲୋ ।
କୋଇଲି, କ୍ଷିତିରେ କାରତି ରଖ ।
କ୍ଷିତିମଣ୍ଡଳକୁ ଯାଇ ଦେଖ ॥
କ୍ଷମା କର ମଣ୍ଡଳ ଆନନ ।
କୋଇଲି ॥
କ୍ଷଣେ ଯାଇ ଲଭ ସେ ସୁଖମାନ ଲୋ ।
କ୍ଷଣେ ସେ ଯେଉଁ ସୁଖ ଦିଅଇ ॥
କୋଇଲି ।
କ୍ଷୁଦ୍ର ବୁଦ୍ଧି ଜଗନ୍ନାଥ କହଇ ॥"

ଅନ୍ୟାନ୍ୟ ପଦ ଗୁଡ଼ିକରେ କବି ଜଗନ୍ନାଥ କେଶବ କୋଇଲିରେ ବର୍ଣ୍ଣିତ କୃଷ୍ଣଙ୍କ ବାଲ୍ୟଲୀଳାର ଘଟଣାବଳୀ ବର୍ଣ୍ଣନା କରିଛନ୍ତି । କବି ମାର୍କଣ୍ଡ ଦାସଙ୍କ ରଚନାରେ ରଚନାଗତ ବୈଶିଷ୍ଟ୍ୟ ଯେପରି ଦେଖାଯାଏ, କବି ଜଗନ୍ନାଥଙ୍କ ରଚନାରେ

ଯେପରି ପଣ୍ଡିତାର ଆଭାସ ମିଳେନାହିଁ; ତଥାପି କବିଙ୍କ ଲେଖନୀରୁ କେତୋଟି ଭାବଗର୍ଭିତ ଓ ହୃଦୟସ୍ପର୍ଶୀ କବିତା ନିଃସୃତ ହୋଇଛି ।

"ଝରି ପ୍ରାୟେ ଝର ଝର ।
ଝରୁଅଛି ନୟନରୁ ନୀର ॥
ଝଳି ଶରଦଚନ୍ଦ୍ର ଆନନ ।
କୋଇଲି,
ଝିମିଟେ ଆଉ ନ କଲି ଦର୍ଶନ ଲୋ ।
ଝାସିବି ଗଙ୍ଗାସାଗରେ ଯାଇ ।
କୋଇଲି !
ଝୀନବସନିଆ ପାଇବି କାହିଁ ଲୋ ॥
× × ×
ଅଳି ତାର ନ ସମ୍ଭାଳି ।
ଅଣଆଦର ବହୁତ କଲି ॥
ଅବା ଏ ଦୋଷ ଯେଉଁଣ ମୋର ।
କୋଇଲି,
ଆଉ ନଇଲେ ସେ ମୁରଲୀଧର ଲୋ ।
ଅନ୍ଧ ଯେ ହେଲା ନୟନ ମୋର ।
କୋଇଲି,
ଅନ୍ଧାର ଦିଶୁଛି ଏ ଗୋପପୁର ଲୋ ।
× × ×
ଶୀଘ୍ରେ ଯାଅ ମଧୁପୁର,
ଶ୍ରୀରଙ୍ଗ ଆଗେ କହ ଦୁଃଖ ମୋର,
ଶୋକ ସମୁଦ୍ରେ ଭସାଇ ଗଲା,
କୋଇଲି,
ସଜଳନେତ୍ର ତ ବାରେ ନଇଲା ଲୋ ।
ସତେ ହେଁ ପୁତ୍ର ଆସିବ ମୋର ।
କୋଇଲି,
ସୁବର୍ଣ୍ଣ ପାତ୍ରେ ଦେବି ଦୁଧସର ଲୋ ।

ଏହିପରି ଭାବରେ ବର୍ଣ୍ଣନା କରି କବି ଜଗନ୍ନାଥ ଓଡ଼ିଆ ସାହିତ୍ୟରେ 'କୋଇଲି' ପରମ୍ପରାକୁ ଉଜ୍ଜୀବିତ କରିଅଛନ୍ତି ।

---

# ଗୁଣ୍ଡିଚା ବିଜେ

କବି ଜଗନ୍ନାଥଙ୍କ ରଚନା ମଧ୍ୟରେ ଗୁଣ୍ଡିଚା ବିଜେ ବା ଗୁଣ୍ଡିଚା ଯାତ୍ରା ଅନ୍ୟତମ । କବି ପ୍ରସ୍ତୁତ କାବ୍ୟରେ ଗୁଣ୍ଡିଚା ଯାତ୍ରାକୁ ସଂକ୍ଷେପରେ ବର୍ଣ୍ଣନା କରିଛନ୍ତି । ଏହି ପ୍ରସଙ୍ଗରେ କବି ଗୁଣ୍ଡିଚା ଯାତ୍ରାରେ ଚତୁର୍ଦ୍ଧା ମୂର୍ତ୍ତିଙ୍କ ଗମନ, ମହାଲକ୍ଷ୍ମୀଙ୍କ କୋପ ଓ ଅଭିମାନ, ଶ୍ରୀଜଗନ୍ନାଥଙ୍କଦ୍ୱାରା ମାନଭଞ୍ଜନ, ଲକ୍ଷ୍ମୀ ନାରାୟଣ ଭେଟ ପ୍ରଭୃତି ବିଷୟ ବର୍ଣ୍ଣିତ ହୋଇଛି । କବି ନିଜର ସ୍ୱଭାବସୁଲଭ ସରଳ ଭାଷାରେ ବିଷୟବସ୍ତୁର ବର୍ଣ୍ଣନା କରି ମାତ୍ର ଷୋଳଟି ତାଳପତ୍ରରେ ଶେଷ କରିଛନ୍ତି । ଗୁଣ୍ଡିଚା ଯାତ୍ରା ସମ୍ବନ୍ଧରେ ଓଡ଼ିଶାର କବିମାନେ ସର୍ବପ୍ରଥମେ କାବ୍ୟିକ ଧାରାରେ ଲେଖନୀ ଚାଳନା କରିଥିଲେ । ସେମାନଙ୍କ ମଧ୍ୟରେ ହଳଧର ମିଶ୍ରଙ୍କ 'ବସନ୍ତୋତ୍ସବ ମହାକାବ୍ୟ', ବକ୍ରବାକ୍ ଚକ୍ରପାଣି ପଟ୍ଟନାୟକଙ୍କର 'ଗୁଣ୍ଡିଚା ଚମ୍ପୂ', ବାସୁଦେବ ରଥ ସୋମଯାଜୀଙ୍କ 'ଗଙ୍ଗବଂଶାନୁଚରିତ ଚମ୍ପୂ', କବି ଭଗବାନ ବ୍ରହ୍ମାଙ୍କର 'ଗୁଣ୍ଡିଚା ବିଜୟ ଚମ୍ପୂ' ଆଦି ସଂସ୍କୃତ ପୁସ୍ତକ ଦେଖିବାକୁ ମିଳେ । ଏତଦ୍‌ବ୍ୟତୀତ ଓଡ଼ିଆରେ ମଧ୍ୟ କବି ଲୋକନାଥ ବିଦ୍ୟାଧରଙ୍କ 'ନୀଳାଦ୍ରି ମହୋତ୍ସବ', ରାଜକବି ଗୋପୀନାଥ ସିଂହଙ୍କ 'ନୀଳଗିରି ବିହାର', କବି ଯୁଧିଷ୍ଠିରଙ୍କ 'ଗୁଣ୍ଡିଚା ଯାତ୍ରା', ବିପ୍ର ରାମଦାସଙ୍କ 'ଗୁଣ୍ଡିଚା ବସନ୍ତ', ବିପ୍ର କାଶୀ ଦାସ ଶିଶୁ ଗୋବିନ୍ଦଙ୍କ 'ଗୁଣ୍ଡିଚା ବିଜେ' ପ୍ରଭୃତି କାବ୍ୟ ଲେଖାଯାଇଛି । ଏତଦ୍‌ବ୍ୟତୀତ କବି ବ୍ରଜନାଥ ବଡ଼ଜେନାଙ୍କ ଦ୍ୱାରା ହିନ୍ଦୀ ଭାଷାରେ ଲିଖିତ 'ଗୁଣ୍ଡିଚା ବିଜେ' ଓଡ଼ିଶାର ଜନସାଧାରଣଙ୍କ ଦ୍ୱାରା ବେଶ୍ ଆଦୃତ ହୁଏ । କବି ଜଗନ୍ନାଥ ଏପରି ଏକ ଲୋକପ୍ରିୟ ବିଷୟକୁ ଆଶ୍ରୟ କରି 'ଗୁଣ୍ଡିଚା ବିଜେ ରଚନା କରିଛନ୍ତି । ଏଥିରେ କବି ଲୋକନାଥ ବିଦ୍ୟାଧର ଓ ରାଜକବି ଗୋପୀନାଥ ସିଂହଙ୍କ ତୁଳନାରେ ବର୍ଣ୍ଣନୀୟ ବିଷୟ ବିଶେଷ କିଛି ନ ଥିଲେ ହେଁ, କବି ଜଗନ୍ନାଥଙ୍କର ପ୍ରୟାସ ଆଦୌ ଅହେତୁକ ବୋଲି କୁହାଯାଇ ପାରିବ ନାହିଁ । ଏଠାରେ କବି ଜଗନ୍ନାଥଙ୍କ ରଚିତ ପଦାବଳୀରୁ କେତୋଟି କୌତୁହଳୋଦ୍ଦୀପକ ପଦ ଉଦ୍ଧୃତ ହେଲା ।

"ବଳରାମ ହରି ସୁଭଦ୍ରା ସଙ୍ଗରେ ବସିଣ କରନ୍ତି ପଞ୍ଚା,
ପୂର୍ବର କଥାଏ ମନରେ ପଡ଼ିଲା କାଲି ହୋଇବ ଗୁଣ୍ଡିଚା ।
ହେ ଭାଇ,
ଆଜ୍ଞା ଦେବା ସେବକଙ୍କୁ ଭାଇ, ହେ ଭାଇ ।
X X X
ଶୁଣି ବଳରାମ ବଚନ ବୋଲନ୍ତି କପ ବସ୍ତ୍ରରୁ ଅମ୍ଭେ
ଘରଣୀ ତୁମ୍ଭର ବଡ଼ ଦନ୍ଦୁଆଳୀ ତାହାଙ୍କୁ ପ୍ରବୋଧ ଦେଇ,
ହେ ହରି !
ବଡ଼ ପ୍ରତାପୀ ସିନ୍ଧୁ କୁମାରୀ, ହେ ହରି !
ତାଙ୍କ କୋପକୁ ଭୟ ଆମ୍ଭର ହେ ହରି ।
ତାଙ୍କ ବୋଇଲେ ସେ ଯାଇ ପାରି ।
ତୁମ୍ଭେ ଚାଲିଯାଅ ବେଗ କରି ।
X X X
ଶୁଣି କମଳିନୀ ମନରେ ବିରସ ବୋଲନ୍ତି ଶୁଣ ମୁରାରି
ତୁମ୍ଭ ମନ ମୋତେ ପରତେ ନୋହିଲା ଏକା ଯିବ ଯାତ୍ରା କରି
ହେ ମାଧବ !
କେ କେ ଯାତ୍ରା କରି ତୁମ୍ଭେ ଯିବ, ହେ ମାଧବ ।
ତୁମ୍ଭ ବୋଲକୁ କେ ପ୍ରତେ ଯିବ,
ତୁମ୍ଭେ କୋମଳକୁହା ସ୍ୱଭାବ, ହେ ମାଧବ ।
X X X
ଶ୍ରୀହରି ବୋଇଲେ ଶୁଣ କମଳିନୀ, ଆମ୍ଭେ କେଉଁ ଦୋଷ କଲୁ,
ଭାଇ ଭଉଣୀ ବଳରାମ ଭିତରକୁ ଗଲେ ଅମ୍ଭେ ତ ଏକା ରହିଲୁ ।
ଗୋ କହ !
ଦାସୀମାନଙ୍କୁ ହୁ ଲକ୍ଷ ଦଅ, ଗୋ କହ ।
ଉତ୍ତର ନ ଦେଇ ଦେବୀ କମଳିନୀ ପଲଙ୍କେ ଶୋଇଲେ ଯାଇ ।
ବସ୍ତ୍ର ଅଳଙ୍କାର ଘେନ ଜଗନ୍ନାଥେ ଦାସୀଙ୍କି ଦେଲେ ବଧାଇ ।
ଲୋ ଦାସୀ,
ତାଙ୍କୁ ବନୋସ୍ତି କହ ବହେଷି, ଲୋ ଦାସୀ ।
ତାଙ୍କ ଚନ୍ଦ୍ର କେମନ୍ତେଣ ରୋଷି,
ତାଙ୍କୁ କହ ବହୁତ ବଶ୍ୱାସି, ଲୋ ଦାସୀ,
କଥା ଆମ୍ଭଠାରେ ଅପ୍ରକାଶି ।
X X X

କମଳା ଦେବୀ କରୁଣ ବାଣୀ ଶୁଣି ଉଠିଲେ ମଧୁସୂଦନ
ସର୍ବଅଲଙ୍କାର ଲକ୍ଷ୍ମୀଙ୍କ ଶ୍ରୀଅଙ୍ଗେ ମଣ୍ଡିଲେ ଶ୍ରୀ ଭଗବାନ ।
ସେ କାହ୍ନ !
ଦେଖ ଦରଶନ ଦେଲେ ଧନ, ସେ କାହ୍ନ !
ଲକ୍ଷ୍ମୀ ମନ ତୋଷ କଲେ ପୁଣ,
ଦେଖି ଉଚ୍ଛନ୍ନ ହୋଇଲା ମନ, ସେ କାହ୍ନ ।

× × ×

ଲକ୍ଷ୍ମୀ ନାରାୟଣ ଭେଟ ସେ ହୋଇଲା ବିବିଧ ବିଳାସ ଭୋଗ
ତନପୁର ଲୋକ ଆନନ୍ଦ ହୋଇଲେ ଗୁଣ୍ଡିଚ୍ଚା ଯାତ୍ରା ସଂଯୋଗ,
ହେ ନରେ,
ନୀଳଗିରି କନ୍ଦର ଶିଖରେ, ହେ ନରେ ।
ଦାରୁ ବ୍ରହ୍ମ ରୂପ ହରି ହରେ, ହେ ନରେ ।
ବ୍ରହ୍ମା ଶିବ ଭେଟ ଯେଉଁଠାରେ,
କବି ଜଗନ୍ନାଥ ଦେଖି ଡରେ, ହେ ନରେ ॥"

# ଗୋପଲୀଳା

କବି ଜଗନ୍ନାଥ ପାଣିଙ୍କ ରଚନା ମଧ୍ୟରେ 'ବ୍ରଜମନୋହର' ଶୀର୍ଷକ ଖଣ୍ଡିଏ କାବ୍ୟ ଥିବାର ଶୁଣାଯାଏ । କିନ୍ତୁ ବ୍ରଜମନୋହର ଶୀର୍ଷକ କୌଣସି କାବ୍ୟ ଅଦ୍ୟାପି ଆମର ହସ୍ତଗତ ହୋଇନାହିଁ । 'ବ୍ରଜମନୋହର' ନାମରୁ ଜଣାପଡ଼େ ଯେ, ଏଥି ଶ୍ରୀକୃଷ୍ଣଙ୍କ ଗୋପଲୀଳା ଚରିତ ହୋଇପାରେ । ନିକଟରେ ରାଜ୍ୟ ଅଭିଲେଖାଗାରକୁ ଚଉରାଳିଶ ଖଣ୍ଡ ତାଳପତ୍ର ପୋଥି ସଂଗୃହୀତ ହୋଇ ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ ହୋଇଛି । ଉକ୍ତ ପୋଥିଗୁଡ଼ିକ ମଧ୍ୟରେ 'ଗୋପଲୀଳା' ଶୀର୍ଷକ ଖଣ୍ଡିଏ ପୋଥି ମିଳେ । ସେଥିରେ କବି ଜଗନ୍ନାଥଙ୍କ ନାମ ଭଣିତା ହୋଇଛି । ଗୋଟିଏ ସ୍ଥାନରେ କବିଙ୍କ ବଂଶଗତ ପଦବୀ 'ପାଣି' ଶବ୍ଦର ଉଲ୍ଲେଖ ରହିଛି । ସେଥିରୁ ଅନୁମାନ କରାଯାଏ ଯେ 'ଗୋପଲୀଳା' କାବ୍ୟଟି ଜଗନ୍ନାଥ ପାଣିଙ୍କ ରଚନା ଏବଂ ଖୁବ୍ ସମ୍ଭବତଃ 'ବ୍ରଜମନୋହର' କାବ୍ୟର ଅପରନାମ ।

ଏଠାରେ ପ୍ରୋକ୍ତ କାବ୍ୟର କବି ରୂପେ ଅତିବଡ଼ି ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ପ୍ରଶ୍ନ ଉଠେ । କିନ୍ତୁ ଆଲୋଚନା କଲେ ଜଣାଯାଏ ଯେ, ଅତିବଡ଼ି ଜଗନ୍ନାଥ ଦାସ ଦୀର୍ଘ ଅଠଚାଳିଶ ଅଧ୍ୟାୟ ବିଶିଷ୍ଟ ଗୋପଲୀଳା ଚରିତ ଶ୍ରୀମଦ୍‌ଭାଗବତର ଦଶମ ସ୍କନ୍ଧରେ ଉଲ୍ଲେଖ କରିଥିବାବେଳେ ପୁଣି ସଂକ୍ଷିପ୍ତ ଭାବରେ ଗୋପଲୀଳା ବର୍ଣ୍ଣନ କରନ୍ତେ କାହିଁକି ? ଗୋଟିଏ ପ୍ରସଙ୍ଗରେ କବି ଅତିବଡ଼ି ଜଗନ୍ନାଥ ଦାସ ଅତି ବିସ୍ତୃତ ବର୍ଣ୍ଣନା କରି ସାରିବା ପରେ ସେହି ପ୍ରସଙ୍ଗକୁ ଅବଲମ୍ବନ କରି ପୁଣି ଗୋଟିଏ କ୍ଷୁଦ୍ରତର କାବ୍ୟ ଲେଖିବା ସମ୍ଭବ ନୁହେଁ । ସେହି ଦୃଷ୍ଟିରୁ ଏହା କବି ଜଗନ୍ନାଥ ପାଣିଙ୍କ ରଚିତ 'ବ୍ରଜମନୋହର' କାବ୍ୟର ନାମାନ୍ତର ହୋଇପାରେ ।

କବି ଜଗନ୍ନାଥ ପାଣି ପ୍ରସ୍ତୁତ 'ଗୋପଲୀଳା' କାବ୍ୟଟିକୁ କେତେ ଛାନ୍ଦରେ ଶେଷ କରିଛନ୍ତି ତାହା ଜଣାଯାଏ ନାହିଁ, କାରଣ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ପୋଥିଟିରେ ବ୍ୟୋମାସୁର ବଧ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଛି । ପ୍ରସ୍ତୁତ ପୋଥିରେ ଥିବା ଛାନ୍ଦଗୁଡ଼ିକର ବିଷୟବସ୍ତୁ ଏଠାରେ ପ୍ରଦତ୍ତ ହେଲା ।

ପ୍ରଥମ ଛାନ୍ଦ—ରାଗ-ପଟହମଞ୍ଜରୀ, ଶ୍ରୀକୃଷ୍ଣଙ୍କ ଜନ୍ମ ।
ଦ୍ୱିତୀୟ—ରାଗ-ମଙ୍ଗଳ, ନନ୍ଦୋତ୍ସବ ଓ ପୁତନା ବଧ ।
ତୃତୀୟ—ରାଗ-ଚନ୍ଦ୍ରାଦେଶାଖ୍ୟ, ଶକଟାସୁର ବଧ ।
ଚତୁର୍ଥ—ରାଗ-ବଙ୍ଗଳାଶ୍ରୀ, ଗୋବତ୍ସାହରଣ ।
ପଞ୍ଚମ—ରାଗ-ଆଷାଢ଼ ଶୁକ୍ଳ ବାଣୀ, ବନବିହାର ।
ଷଷ୍ଠ—ରାଗ-କେଦାର, ଶ୍ରୀକୃଷ୍ଣଙ୍କ ମୃତ୍ତିକାଭକ୍ଷଣ ଓ ଯାମଳାଭଞ୍ଜନ ।
ସପ୍ତମ—ରାଗ-ଦକ୍ଷିଣ କାମୋଦ, ବୃନ୍ଦାବନ ବିହାର ।
ଅଷ୍ଟମ—ରାଗ-ରସଶ୍ରେଣୀ (?) ବତ୍ସାସୁର ବଧ ।
ନବମ—ରାଗ-ତୋଡ଼ି, ବକାସୁର ବଧ ।
ଦଶମ—ରାଗ-ଶଙ୍କରାଭରଣ, ଅଘାସୁର ବଧ ।
ଏକାଦଶ—ରାଗ-ବୈଖୀ, ବତ୍ସାହରଣ ।
ଦ୍ୱାଦଶ—ରାଗ-ଭୈରବ, ତାଳବନ ବିହାର ଓ ଧେନୁକାସୁର ବଧ ।
ତ୍ରୟୋଦଶ—ରାଗ-ଘଣ୍ଟାରବ, କାଳୀୟଦଳନ ।
ଚତୁର୍ଦ୍ଦଶ—ରାଗ-ପଞ୍ଚମ ବରାଡ଼ି, ପ୍ରଲମ୍ବାସୁର ବଧ ।
ପଞ୍ଚଦଶ—ରାଗ-କୌଶିକ, ବଂଶୀବାଦନ ।
ଷୋଡ଼ଶ—ରାଗ-ଦେଶାଖ୍ୟ (କେଳିସଦନବାଣୀ) ଦାବାଗ୍ନି ମୋକ୍ଷଣ, ଗୋପୀ ଉଚ୍ଚାଟନ
ସପ୍ତଦଶ—ରାଗ-ବସନ୍ତ , ବସ୍ତ୍ର ହରଣ ।
ଅଷ୍ଟାଦଶ—ରାଗ-କୁମ୍ଭ କାମୋଦୀ , ଶ୍ରୀକୃଷ୍ଣଙ୍କ ଦର୍ଶନରେ ବିପ୍ରନାରୀଙ୍କ ମୋହ ଓ ବନଭୋଜ ।
ଊନବିଂଶ—ରାଗ-ଧନାଶ୍ରୀ, ଗୋବର୍ଦ୍ଧନ ଉତ୍ସବ ଓ ଇନ୍ଦ୍ରଙ୍କ ଗର୍ବଦଳନ ।
ବିଂଶ—ରାଗ-କାଳୀ, ସୁରଭିଙ୍କ ଅଭିଷେକ ।
ଏକବିଂଶ—ରାଗ କଳହଂସକେଦାର, ଶ୍ରୀକୃଷ୍ଣଙ୍କ ବରୁଣପୁର ଗମନ ।
ଦ୍ୱାବିଂଶ—ରାଗ ଚକ୍ରଦେଶାଖ୍ୟ, କୁଞ୍ଜବିହାର ।
ତ୍ରୟୋବିଂଶ—ରାଗ କୌଶିକ, ଶଙ୍ଖଚୂଡ଼ ମୋକ୍ଷଣ ।
ଚତୁର୍ବିଂଶ—ରାଗ ପାହାଡ଼ିଆ କେଦାର, ନାରଦଙ୍କ ପରାମର୍ଶରେ କଂସର ରଙ୍ଗସଭା ଆୟୋଜନ, କେଶୀ ବ୍ୟୋମା ଓ ଷଣ୍ଢାସୁର ବଧ ।

କବି ନିଜର ଅନ୍ୟାନ୍ୟ ରଚନା ପରି ପ୍ରସ୍ତୁତ କାବ୍ୟଟିକୁ ମଧ୍ୟ ସରଳ ସର୍ବଜନ ବୋଧ୍ୟ ଭାଷାରେ ବର୍ଣ୍ଣନା କରିଛନ୍ତି । କବିଙ୍କର ବର୍ଣ୍ଣନା ଶୈଳୀ, ପଦ ସଂଯୋଜନା ପ୍ରଭୃତି ବିଷୟରେ ଜାଣିବା ଲାଗି ଏଠାରେ ଗୋପଲୀଳାର କେତୋଟି ପଦ ଉଲ୍ଲେଖକରାଗଲା ।

"ଜୟ ଜୟ ବିଘ୍ନେଶ୍ୱର ଗଉରୀ ନନ୍ଦନ,
କରିବି ଶ୍ରୀ ଗୋପଲୀଳା କର ଅବଧାନ ହେ।
ଅମୃତ ଲଡ଼ୁ ଶ୍ରୀହସ୍ତେ ସର୍ବଦା ଧାରଣ,
ଭୃତ୍ୟ ସବଳେ ବିଘ୍ନକୁ କର ନିବାରଣ ହେ।
ଜୟଶ୍ରୀ ଲକ୍ଷ୍ମୀ ନୃସିଂହ ଶ୍ରୀପଦ୍ମର ତଳେ,
ଶରଣପଶୁଛୁ ରକ୍ଷାକର ଅନୁକୂଳେ ହେ।

×   ×   ×

ନାମ ଦେଇ ମହାଦେବୀ ହୋଇଲେ ମେଲଣି,
ଭଜେ ବିପ୍ର ଜଗନ୍ନାଥ ଦେବ ସ୍ୱାନ ପାଣି ଯେ।
ଭାଷା ପ୍ରବନ୍ଧେ ଏ ଗୀତ ଚନ୍ଦ୍ରା ଦଶାଖ୍ୟରେ,
କଲି ଏ ବୃତ୍ତୀୟ ଛନ୍ଦ ବୋଲିବ ଧୀରେ ଯେ।
ବୋଲେ ଦ୍ୱିଜ ଜଗନ୍ନାଥ ଭାଷା ଏ ରସେ,
ରଖିବ ଶ୍ରୀମନ୍ତ ପଦ ଚୁମ୍ବର ପାଶେ ଯେ।"

କବି ଜଗନ୍ନାଥ ପାଣି ଭାଗବତର ଅଷ୍ଟବିଂଶ ଅଧ୍ୟାୟ ଗୀତକୁ ଅତି ସଂକ୍ଷେପରେ ବର୍ଣ୍ଣନା କରୁଥିବାରୁ କାବ୍ୟର ସୌନ୍ଦର୍ଯ୍ୟ ଫୁଟାଇବାରେ ଆଦୌ ସୁଯୋଗ ପାଇ-ନାହାନ୍ତି। ତେଣୁ ତାଙ୍କ ରଚନା ଗୁଡ଼ିକରେ ଯେପରି ଅନୁପ୍ରାସ, ଯମକ ଆଦି ଅଳଙ୍କାରର ସମାବେଶ ଓ ବର୍ଣ୍ଣନାଗତ ସୌନ୍ଦର୍ଯ୍ୟ ତଥା ବିଭିନ୍ନ ରସ ପରିବେଷଣର ଆଲେଖ୍ୟ ଅଙ୍କିତ ହୋଇଥିବାର ଦେଖାଯାଏ, ତାହା ପ୍ରସ୍ତୁତ କାବ୍ୟରେ ଦେଖିବାକୁ ମିଳେନାହିଁ। ତଥାପି କବିଙ୍କ ସୃଷ୍ଟିରେ ଏହା ଏକ ଅଭିନବ କାବ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ।

---

# ପ୍ରମୋଦ ଚନ୍ଦ୍ରମଣି

ଚଉତିଶା ବନ୍ଧରେ ଲିଖିତ କବି ଜଗନ୍ନାଥ ପାଣିଙ୍କର ଅନ୍ୟତମ ବିଶିଷ୍ଟ କାବ୍ୟ ହେଉଛି 'ପ୍ରମୋଦ ଚନ୍ଦ୍ରମଣି' । ଏ ଧରଣର କାବ୍ୟ ଖୁବ୍ ସମ୍ଭବତଃ ଓଡ଼ିଆ ସାହିତ୍ୟର ପ୍ରଥମ ଗ୍ରନ୍ଥ । ଆଜିଯାଏ ଯେତେଗୋଟି ଚଉତିଶା ମିଳିଛି, ପ୍ରତ୍ୟେକ ଚଉତିଶାରେ କ ଖ ଆଦି କ୍ରମରେ ଚଉତିରିଶଟି ପଦ ମାତ୍ର ରହିଛି । ସେହି ଚଉତିଶା ଗୁଡ଼ିକରେ ଶ୍ରୀକୃଷ୍ଣଲୀଳା, ରାମଲୀଳା ବା କାଳ୍ପନିକ ନାୟକ ନାୟିକାଙ୍କ ବୃତ୍ତାନ୍ତ ଆଦି ବର୍ଣ୍ଣିତ ହୋଇଥାଏ । କେତେକ ଚଉତିଶା ସୁଦୀର୍ଘ ପଦବନ୍ଧରେ ଗୁମ୍ଫିତ ହୋଇଥାଏ, ଅନ୍ୟ କେତେକ ଚଉତିଶା 'କ'ରେ ଗୋଟିଏ ପଦ 'ଖ'ରେ ଗୋଟିଏ ପଦ ଏପରି ଭାବରେ ମୋଟ ଅଠରଟି ପଦରେ ଚଉତିଶାଟି ଶେଷ ହୋଇଥାଏ । ଆହୁରି ସଂକ୍ଷେପରେ ଅର୍ଥାତ୍ ନ'ଟି ପଦରେ ମଧ୍ୟ ଚଉତିଶା ଶେଷ ହୋଇଥିବାର ଦେଖାଯାଏ । ଭଙ୍ଗୀ ପ୍ରଭୃତି ଦୀର୍ଘ ଛନ୍ଦରେ ଗୋଟିଏ ଗୋଟିଏ ପଦରେ ଅନେକ ଚୂଡ଼ିଏ ପାଦ ଥାଏ । ଯେ ଯା'ହେଉ, ଚଉତିଶା ଗୁଡ଼ିକ ଛତିଶଟି ପଦରେ ଗୋଟିଏ କ୍ଷୁଦ୍ର ବିଷୟବସ୍ତୁର ପରିପ୍ରକାଶ କରିଥାଏ । ତେଣୁ ଚଉତିଶା ଗୁଡ଼ିକ ଖଣ୍ଡକାବ୍ୟର ଅନ୍ତର୍ଭୁକ୍ତ ହୋଇଛି । କିନ୍ତୁ କବି ଜଗନ୍ନାଥ ପାଣି ଗୋଟିଏ ଅସମ୍ଭବ କାର୍ଯ୍ୟକୁ ସମ୍ଭବରେ ପରିଣତ କରି କବି ସମାଜରେ ପ୍ରତିଷ୍ଠା ଲାଭକରିଛନ୍ତି । ସେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଚଉତିରିଶଟି ଛାନ୍ଦ ରଚନା କରିଛନ୍ତି, ଅର୍ଥାତ୍ 'କ' ରେ ଗୋଟିଏ ଛାନ୍ଦ, 'ଖ' ରେ ଗୋଟିଏ ଛାନ୍ଦ ଇତ୍ୟାଦି । ପ୍ରତ୍ୟେକ ଛାନ୍ଦରେ ସେହି ଅକ୍ଷରର ଆଦ୍ୟାନୁପ୍ରାସରେ ଛତିଶଟି ପଦ ରଚନା କରିଛନ୍ତି । ଆହୁରି ଆଶ୍ଚର୍ଯ୍ୟର କଥା ଯେ, ସେ ଉପେନ୍ଦ୍ର ଭଞ୍ଜଙ୍କ କଳାକୌତୁକ ପରି ଆଦ୍ୟ ଓ ଅନ୍ତ୍ୟାନୁପ୍ରାସ ରୂପେ କ, କ୍ଷ, ହ ଓ ଶ ପ୍ରଭୃତି କେତୋଟି ଅକ୍ଷର ବ୍ୟବହାର କରି ଚଉତିରିଶ ପଦ ବିଶିଷ୍ଟ ଗୋଟିଏ ଗୋଟିଏ ଛାନ୍ଦ ରଚନାକରିଛନ୍ତି ।

କବିଙ୍କ ପ୍ରମୋଦ ଚନ୍ଦ୍ରମଣିର ବିଷୟବସ୍ତୁ ହେଉଛି ମହାଭାରତ । ସେ କାବ୍ୟର ଆରମ୍ଭରେ ଦଶାବତାରଙ୍କୁ ସ୍ତୁତି କରି ଗ୍ରନ୍ଥର ଉଦ୍ଦେଶ୍ୟ ଓ ବିଷୟବସ୍ତୁର

ସଂକ୍ଷିପ୍ତ ସୂଚନା ଦେଇଛନ୍ତି । ଉଦାହରଣସ୍ୱରୂପ କେତୋଟି ପଦ ଏଠାରେ ପ୍ରଦତ୍ତ ହେଲା ।

"କମଳଦଳନୟନ-କେଶବ ଶଶାଙ୍କ ।
କୋକନଦ-ହୃଦ-କୁମୁଦ-ପ୍ରମୋଦକାରକ ଯେ ॥
କମଳ-ଭବ ସ୍ତବରେ କମଳା ନାୟକ ।
କୃପାରେ କୂପାରେ ହେଲେ ମୀନ ବେଦ୍ଧୃତକ ଯେ ॥
କୁତୂହଳେ ହେଲେ ନାଶି ଶଙ୍ଖ ଦାନବକୁ ।
କରି ନିଗମ ଉଦ୍ଧାର ଉଲ୍ଲାସି ଧାତାଙ୍କୁ ଯେ ॥

× × ×

କଳିଯୁଗେ ବୁଦ୍ଧକାୟ ବିବୁଧ ପ୍ରିୟକ ।
କୁମ୍ଭ କଟକେ ଭଜନ୍ତେ ତ୍ରିପୁର ତାରକ ଯେ ॥
କଳଙ୍କି କଳଙ୍କ ରୂପ ଧରିଣ ନନ୍ଦକ ।
କୃତ ମ୍ଲେଚ୍ଛ ସଂହାରବେ ଆନନ୍ଦଦାୟକ ଯେ ॥
କବି ଜଗନ୍ନାଥ ଦଶବିଧ ସ୍ୱରୂପକୁ ।
କହେ ନମସ୍କାର କରି ସରୋଜ ପାଦକୁ ଯେ ॥
କୃତାର୍ଥେ ମୋ ଶାରଦାଙ୍କ ପ୍ରସନ୍ନ ମାନକ ।
କଣ୍ଠେ ବଳାଶ୍ରିତ ରହି ଆନ ବର ସ୍ୱେକ ଯେ ॥
କଲଇ ଉଦୟ ପ୍ରମୋଦ ଚନ୍ଦ୍ରମଣିକ ।
କାବ୍ୟକାର ଭକ୍ତଙ୍କର ହୋଇବେ ସହିଙ୍କ ଯେ ॥

× × ×

କବିଙ୍କୁ ଯେଉଁ ସ୍ୱରତେ ବ୍ୟାସ ବନାୟକ ।
କରିଛନ୍ତି ବେଦ ବିଂଶ ସହସ୍ର ଯେ ଶ୍ଳୋକ ଯେ ॥
କଲି ତହିଁ ସ୍ତୁତି ଚତୁର୍ବିଂଶ ମୁଁ ରଚକ ।
କ କ୍ଷ ଯାଏ ଜନ୍ମିଁ ଅକ୍ଷର ଏକ ଏକ ଯେ ॥
କର ପ୍ରକାଶ କୃତିଣ ସୁଜ୍ଞାନ ମାନକେ ।
କୁରୁପାଣ୍ଡବ ଚରିତ ଯେ ପଦ ପଦକେ ଯେ ॥
କୋବିଦେ ଶୁଣିମା ହେଉ ଏ ପ୍ରେମ ମାଦକ ।
କଳାକର ବଂଶର ଅଶେଷ କଉତୁକ ଯେ ॥"

ସାଧାରଣତଃ 'ଙ' 'ଘ' 'ଢ' 'ଥ' 'ଝ' ଓ 'ଢ଼' ପ୍ରଭୃତି ଅକ୍ଷରରେ ଚଉତିଶଟି ପଦ ରଚନା କରିବା ସହଜସାଧ୍ୟ ବ୍ୟାପାର ନୁହେଁ । କବି ଜଗନ୍ନାଥ ପାଣି

ସେହି ସ୍ଥାନରେ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି ଏବଂ ଖୁବ୍ ଅଳ୍ପ ସ୍ଥାନରେ ସେ ନିୟମର ବ୍ୟତିକ୍ରମ କରିଛନ୍ତି । ଅର୍ଥାତ୍ 'ଖ' ସ୍ଥାନରେ 'କ୍ଷ', 'କ୍ଷ' ସ୍ଥାନରେ ଖ, ଶ, ଷ, ସ କୁ ନିର୍ବିଘ୍ନରେ କବି ବ୍ୟବହାର କରି ପଦ ରଚନା କରିଛନ୍ତି ।

ଖ—ଖଣ୍ଡି ଦୁରିତ ସୁଜନ ସ୍ନେହ ଖଣ୍ଡକର ଆପ୍ୟାନ ।
ଅଖଣ୍ଡ ଗୁଣ ବର୍ଣ୍ଣନ ସ୍ତୁତି ସମ୍ମୁଖେ ।
ଖଞ୍ଜନ ପାରସଦୃଶା ଲୋକ ନେମା ଶୁକ୍ଲକେଶୀ ।
ଦିନେ ଯାଇ କହେ ଯୋଷା ବଲ୍ଲଭ ପାଶେ ।
କ୍ଷୁଦ୍ର କମ୍ପା ସୁନ୍ଦର ମୁଖ
ଖଣ୍ଡନା ଆବର ଆତ୍ମ ମଦନ ଦୁଃଖ ॥

× × ×

କ୍ଷୀରିଦାନେ ପ୍ରତିପାଳି ପୁତ୍ରକୁ ଭୋଜ ଦୁଲାଳୀ
ଦିନୁ ଦିନୁ ବଢ଼େ ସୁତ ଚନ୍ଦ୍ରମା ଯେହ୍ନେ ।
କ୍ଷୁଦ୍ର ସେକାଳେ ହାସ୍ୟନ ଋତୁରାଜ ଉତ୍ପନ୍ନ ।
ମଳୟ ପବନ ବହେ କୁସୁମ ବନେ ।
ଖେସେ ହଂସ ଅସ୍ତ ଗିରିକି,
କ୍ଷିତି ମଣ୍ଡନା ବିରହ ହେଲ ବିଲୋକି ॥

× × ×

କ୍ଷ—ଖେଦେ ରାଜ୍ୟଭାର ତେଜି ପାଣ୍ଡବେ ଅରକ୍ଷ ।
କ୍ଷେପିଲେ ଉତ୍ତର ଦିଗ ହୋଇଣ ବିଚକ୍ଷ ଯେ ॥

ଶ, ଷ, ସ—ସତ୍ୟ ରକ୍ଷି ପାର୍ଥ ବିପ୍ରନନ୍ଦନ ।
ସମର୍ପି ମିଳିଲେ ହରି ସଦନ ॥
ଷୋଳବାସରେ ଯାଗ କରି ଶେଷ ।
ସର୍ବଜନ ବିହି ଭୋଜନେ ତୋଷ ॥
ଶର୍ବସ୍ୱ ଶେଷେ ଶର୍ବରୀ ଗମନ ।
ସୁରରାଜ ମୁନି ନିଜ ସଦନ ॥

× ×

ଶ୍ରୀଧର ପାଦେ ବସି ଦୀକ୍ଷା ଦେନି ।
ଶୁଦ୍ଧ ମନ୍ତ୍ରେ ଦୃଢେ ପୂଜିଲେ ବହ୍ନି ॥

× ×

ଶ୍ରୀଧର ଆନନ୍ଦ ଦେଖି ବନ୍ଧୁକୁ ।
ସର୍ବଜନଯୋଗାଇ ଯାଗ ସଜ୍ଜାକୁ ॥
ଶୁଣି ଆଦେଶ ଯାଅ ତୁ ନରେଶ ।
ଯାଜ୍ଞ ରଥେ ବିଜେ ବାସବ ଶିଷ ॥

× ×

ଯାଶ ତୀର୍ଥ ସ୍ନାନ ଆସି ବିଦୁର ।
କ୍ରମେ ବସିଥିଲ ବଟ ମୂଳର ॥

× ×

ସଚୀବର କହିବା ଅନୁସାରେ ।
ଶଚୀ-ବର ପାଳନା କି ସମ୍ପରେ ॥

× ×

ଶୋକାର୍ତ୍ତେ ବ୍ୟାସଙ୍କ ପାଶେ ବୋଲେ ନୃପଯୋଷା ।
ସ୍ୱସ୍ୱାମୀ ବିଚ୍ଛେଦ କଲା ଯୁବାକାଳ ଆଶା ॥" ଇତ୍ୟାଦି ।

ମହାଶାବ୍ଦିକ ଭଞ୍ଜ ଶବ୍ଦଗୁଡ଼ିକୁ ଅତି ଯତ୍ନ ସହକାରେ ସଜାଡ଼ି ଶବ୍ଦାଲଂକାର ଯୋଜନାରେ ବିଚକ୍ଷଣତା ଦେଖାଇଛନ୍ତି । ବିଶେଷତଃ ବୈଦେହୀଶବିଳାସ, ସୁଭଦ୍ରା ପରିଣୟ, ତ୍ରୈଲୋକ୍ୟ-ମୋହିନୀ ଆଦି କାବ୍ୟରେ ଆଦ୍ୟାନୁପ୍ରାସ ରକ୍ଷା କରିବାକୁ ଯାଇ ଭଞ୍ଜକବି ଅଭିଧାନ ଗ୍ରନ୍ଥର ଭଣ୍ଡାରକୁ ମନ୍ଥନ କରିଛନ୍ତି । ଭଞ୍ଜଙ୍କ ଶବ୍ଦ ପ୍ରୟୋଗର ବିଚକ୍ଷଣତା ଅବିନା ରସ ତରଙ୍ଗରେ ଚରମ ପରିଣତି ଲାଭ କରିଛି । ଏହି କାବ୍ୟରେ କବି ସ୍ୱରମାତ୍ରାର ପ୍ରୟୋଗ ନକରି କେବଳ ଅବିନା ଶବ୍ଦ ଯୋଜନାରେ ବାର ଛାନ୍ଦ ବିଶିଷ୍ଟ ଖଣ୍ଡିଏ ପୁସ୍ତକ ରଚନା କରିଛନ୍ତି । ଭଞ୍ଜକବିଙ୍କର ଏ ପ୍ରକାର ଆୟାସ ଅଦ୍ୟାପି କବିମଣ୍ଡଳୀରେ ପ୍ରଶଂସିତ ହୋଇ ଆସିଛି; କିନ୍ତୁ କବି ଜଗନ୍ନାଥ ପାଣି 'ପ୍ରମୋଦ ଚନ୍ଦ୍ରମଣି'ରେ ଖ, ଘ, ଛ, ଝ, ଠ, ଢ଼, ଥ, ଧ, ଫ, ହ ପ୍ରଭୃତି ଅକ୍ଷରରେ ଚଉତ୍ରିଶ ପଦବିଶିଷ୍ଟ ଗୋଟିଏ ଗୋଟିଏ ଛାନ୍ଦ ରଚନା କରି ସମ୍ପୂର୍ଣ୍ଣ ଶବ୍ଦ ଭଣ୍ଡାରର ଆଲୋଡ଼ନ ପୂର୍ବକ କବି ଉପେନ୍ଦ୍ର ଭଞ୍ଜଙ୍କର ସମକକ୍ଷ ହୋଇ ପାରିଛନ୍ତି । ପ୍ରମୋଦ ଚନ୍ଦ୍ରମଣିରେ ପ୍ରଦତ୍ତ ସେହି ସେହି ଛାନ୍ଦଗୁଡ଼ିକରୁ ଗୋଟିଏ ଗୋଟିଏ ପଦ କବିଙ୍କ ପ୍ରତିଭାର ପର୍ଯ୍ୟାଲୋଚନା ନିମିତ୍ତ ଏଠାରେ ପ୍ରଦତ୍ତ ହେଲା ।

ଖ—ଖଟି ଚରଣେ ମଦନା ପୁଚ୍ଛଇ ବନ୍ଧୁଅଙ୍ଗନା,
କାନ୍ତ ସଙ୍ଗ ବିନା ସୁତ କେମନ୍ତ ଜାତ ।
ଖେଦ ନ ପାଅ ସୁନ୍ଦରୀ ହୃଦରେ ଖେଳକୁମାରୀ,
ମାଳାପ୍ରସାଦରୁ ଜାଣ ସମ୍ଭୂତ ସୁତ ।

ଖୁସି ତୋର ଯାହାକୁ ବର,
ଖୋଜ ସ୍ମରଭସ୍ମ ହୋଇବ ଦୂର ।

× × ×

ଘ—ଘୋଟିଲା ଯାମିନୀ ସେକାଳେ ହେଉ ଦିବସ ଶେଷ ।
ଘୋର ବିପତ୍ତିରେ ନୃପଗଣମାନେ ଗତ ସ୍ୱଦେଶ ॥
ଘନଶ୍ୟାମ ନାଶ କରଇ ଜଗନ୍ନାଥ ପ୍ରକାଶ ।
ଘଟଣ ଏ ଛନ୍ଦ ପ୍ରବନ୍ଧ ଚତୁର୍ତ୍ରିଂଶରେ ଶେଷ ॥

× × ×

ଛ—ଛେଦ ହୋ ଯଶସ୍ୱ ଯଜ୍ଞପ ଭୂପସ୍ୱ,
ଯାଜ୍ଞିକ ହେଲୁ ତୋ ଯାଗେ ।
ଛାୟାକାନ୍ତ ସେହୁ ସମୟରେ ଅନ୍ତ,
ସର୍ତ୍ତ୍ର ବାଲୀ ପଛ ଲଗେ ।
ଛଡ଼ ଅର୍ଦ୍ଧ-ମୂର୍ତ୍ତି ସିଂହାସନେ ସ୍ଥିତ,
ବିଜୟା ଯା ମଧ୍ୟଗତେ ।
ଛନ୍ତି ତାଙ୍କ ବାମ ଦକ୍ଷିଣେ ଯେ ଦେବ,
ତାଙ୍କୁ ଜଗନ୍ନାଥ ନତେ ।

× × ×

ଝ—ଝରପାଣି ଏଣିମାଂସ କନ୍ଦମୂଳ ଫଳ ଖାଇ ବନା,
ଶୀତ ତପ୍ତ ବରଷା ବର୍ଷିଲେ ।
ଝରେ ଯା'ପାଦୁ ଜାହ୍ନବୀ ପବିତ୍ର କରନ୍ତି ଭବ,
ସେ ପାଦକୁ ଜଗନ୍ନାଥ ସ୍ତବ ଭଣିଲେ ।

× × ×

ଠ—ଠିକ ଏ ବିଚିତ୍ର ଭାରତ ସୁଚିତ୍ର ଶୁଣ ବୁଧେ,
ଠଣ ଗୁପ୍ତ ଛଦ୍ମ ପାଣ୍ଡବ ପଞ୍ଚାଣ ରହୁ ମତ୍ସ୍ୟଦେଶ ମଧ୍ୟେ ।
ଠେକ ମାରଲେକ ସେ ଦେଶେ କୀଚକ,
ତାକୁ ନାଶି ବୃକୋଦର ।
ଠେଲେ ବଳବନ୍ତ ତା'ର ଅନୁଜନ୍ତ,
ନାଶି ନାଶି ମଲ୍ଲାସୁର ।

× × ×

ଡ—ଡାଲି ଯା' ପଦେ ବଳି ଆପଦେ ବିଧାତା ତନୟାକୁ,
ଡାକ ସେ ନୀରବଣୀ ଦ୍ୱିଜ ଭଣି ଛନ୍ଦକୁ ।

× × ×

ଥ—ଥରେ ମାତ୍ର ସ୍ମରି ତବାନୁଜେ କ୍ଷିପ୍ରଯାନ୍ତ,
ତାଙ୍କୁ ଲଗା ଶରେ ଗ୍ରସେ ।
ଥାଉଁ ମୁହିଁ ଜ୍ୟେଷ୍ଠ ଅନୁଜେ ଯୁଧିଷ୍ଠ,
ନାମ ବରଚଲୁ ମାତ୍ର ସ୍ନେହେ ।
ଥାଉ ମୁଁ ସୁକୃତ କଲେ ବିକୃତ ନ କରିବି,
ନୃପେ ମିତ୍ରଦ୍ରୋହୀ ।

× × ×

ଧ—ଧରଣୀ ବିରସ ମନେ କୁରୁ ବଂଶ,
ପଳାଇଲେ ଯେଣେ ବାହୁନା ।
ଧରିବାକୁ ତାହିଁ ଆନନ୍ଦିତ ହୋଇ,
ବନାନ୍ତରେ ଗତ ସଦନ ।
ଧର୍ମନନ୍ଦନ, ହରଷ ବିରସ ହୃଦୟ ।
ଧ୍ୟାୟି ଜଗନ୍ନାଥ ପ୍ରଭୁ ଜଗନ୍ନାଥ,
ସ୍ଥାନ ଶେଷେ ସ୍ମରେ ବିନୟ ।

× × ×

ଫ—ଫୁଲ୍ଲାରବିନ୍ଦ ବଦନ ବାହୁ ନେଲେ ଯାନ,
ଫରଦ୍ୱର ଉଡ଼େ ଧ୍ୱଜ ବିନେ ରଣସ୍ଥାନ ।
ଫେଡ଼ିବେ ମାନ ସ୍ୱଜମାନ ତୋ ଅରି ରଙ୍ଗି ।
ଫୁଲଇ ବୀର କେଶକୁ ବୀର ଦେଖି ଦେଖି ।

× × ×

ଫୁଟିଲେ ଚନ୍ଦ୍ର ବାନ୍ଧବ ଯାମିନୀ ପ୍ରବେଶ ।
ଫାଲ୍‌ଗୁନୀ ସତ୍ୟ ତୋ ପାବକେ କର ଖାସ ।

× × ×

ହ—ହିମାଂଶୁ ବଂଶୀ ସମସ୍ତ ଅଭିଗମ ବାହୁ ।
ହେମ ବସନ ଭୂଷଣ ଦେଇ ତପ ଦାହୁ ॥
ହୃଦ ସାନନ୍ଦେ ଦ୍ୱାରକା ଗଲେ ହବସ୍ଥାସ୍ଥ ।
ହରଷେ ପାଣ୍ଡବେ ରହି ଭୋଗ କଲେ ମହୀ ।
ହରି ହରିଲେ ଭୂପାଙ୍କ ତାଙ୍କ ଗୋତ୍ରଦ୍ରୋହ ।
ହେରୁ ମଠ ଦ୍ୱିଜ ଚଳଇ ସେ ପାଦ ରୁହ.॥"

କବି ଜଗନ୍ନାଥ ପାଣି ଶେଷ ଛାନ୍ଦରେ ଅର୍ଥାତ୍ 'ଷ' ଛାନ୍ଦରେ ନିଜ ନାମ, ପିତାଙ୍କ ନାମ, ବାସସ୍ଥାନ, ପୁସ୍ତକର ନାମ ଓ ନିଜ ଦକ୍ଷତା ସମ୍ବନ୍ଧରେ କେତୋଟି ପଦ ଉଲ୍ଲେଖ କରି ପାଠକ ଓ ଆଲୋଚକମାନଙ୍କ କୌତୂହଳ ଉପଶମ କରିଛନ୍ତି ।

"କ୍ଷୀରବଂଶେ ଜାତ ନାମ ସମ୍ବାଦ ପରୀକ୍ଷ ।
କ୍ଷମାଧୀନ ମୁଁ ତାହାଙ୍କ ନନ୍ଦନ ସ୍ୱଚକ୍ଷ ହେ ॥
କ୍ଷେତଜ୍ଞ ମୋ ନାମ ଜଗନ୍ନାଥ ପାଣି ସୌଖ୍ୟ ।
କ୍ଷମ ନୋହେ କବିପଣେ ବେଦ ଅର୍ଥେ ଦକ୍ଷ ହେ ॥
କ୍ଷିତି ଜଳାଙ୍ଗ ନଳସ୍ୱ ମଳସ୍ୱ ବଳାକ୍ଷ ।
କ୍ଷୁଦ୍ର ବୁଦ୍ଧି ନଶେଧି ରହିଛୁ ସାଧ୍ୟ ପକ୍ଷ ହେ ॥

× × ×

କ୍ଷଣଲ୍ପ ବୁଦ୍ଧି କବିତ୍ୱ ମାର୍ଗେ ଅନ୍ୟୋକ୍ଷ ।
କ୍ଷିପ୍ରେ ପ୍ରତୁଳ ଭାରତ ହେଲ ଉପଲକ୍ଷ୍ୟ ହେ ॥
କ୍ଷେଲାଇ ଛାନ୍ଦ ବଳାଇ ତ୍ରିଂଶ ଚତୁରକ୍ଷେ ।
କ୍ଷ ରେ କ ଠାରୁ ନସ୍ତମି ଏକ ଏକ ପକ୍ଷେ ହେ ॥"

ଏହି ଉଦ୍ଧୃତାଂଶରୁ ସ୍ପଷ୍ଟ ଜଣାଯାଏ ଯେ, କବି ଜଗନ୍ନାଥ ଦ୍ୱିଜ କ୍ଷୀରବଂଶ ଅର୍ଥାତ୍ 'ପାଣି' ବଂଶରେ ଜାତ ହୋଇଥିଲେ । ତାଙ୍କ ପିତାଙ୍କ ନାମ ସ୍ପଷ୍ଟ ଭାବରେ 'ଭାଗବତ' ବୋଲି ନ ଲେଖି ପରୋକ୍ଷ ଭାବରେ 'ସମ୍ବାଦ ପରୀକ୍ଷ' ବୋଲି ଉଲ୍ଲେଖ କରିଛନ୍ତି; ଅର୍ଥାତ୍ ଶ୍ରୀମଦ୍ ଭାଗବତରେ ଶୁକ ପରୀକ୍ଷ ସମ୍ବାଦ ଥିବାରୁ କବି ତାହାକୁ ପରୋକ୍ଷ ଭାବରେ ଉଲ୍ଲେଖ କରିଛନ୍ତି । ସେ ପକ୍ଷ ସାଧନରେ ବ୍ରତୀ ହୋଇ ଅସାଧ୍ୟ ସାଧନ କରି ପାରିଥିଲେ ବୋଲି ଏଠାରେ ସୂଚନା ମିଳୁଛି । କବି ପ୍ରାରମ୍ଭିକ ଜୀବନରେ ଶିକ୍ଷାଲାଭ ପ୍ରତି ବିତୃଷ୍ଣ ଥିବାର ମଧ୍ୟ ସେଇଥିରୁ ଆଭାସ ମିଳୁଛି । ତେଣୁ ଆକସ୍ମିକ ଭାବରେ ତାଙ୍କର କବିତ୍ୱ ପ୍ରକାଶ ପାଇଥିବା ବିଷୟ ଏଠାରେ କବି ପରୋକ୍ଷ ଭାବରେ ଲେଖିଛନ୍ତି ।

'କ୍ଷଣଲ୍ପ ବୁଦ୍ଧି କବିତ୍ୱ ମାର୍ଗେ ଅନ୍ୟୋକ୍ଷ' ।

କବି ଜଗନ୍ନାଥ ପାଣି 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଆଦ୍ୟାନୁପ୍ରାସରେ ସମୁଦାୟ କାବ୍ୟଟି ରଚନା କରିଛନ୍ତି ବୋଲି ଉଲ୍ଲେଖ କରିଛନ୍ତି । ମୋଟ ଉପରେ ଆଲୋଚନା କଲେ ଜଣାଯାଏ ଯେ, ଜଗନ୍ନାଥ ପାଣି ଜଣେ ଅସାଧାରଣ ପ୍ରତିଭାସମ୍ପନ୍ନ କବି ଥିଲେ । ତାଙ୍କ ଲେଖନୀରୁ 'ପ୍ରମୋଦ ଚନ୍ଦ୍ରମଣି' ଶୀର୍ଷକ ଖଣ୍ଡିଏ ଅତ୍ୟନ୍ତ ଉପାଦେୟ ପୁସ୍ତକ ନିଃସୃତ ହୋଇଥିଲା । ଏଭଳି ଏକ ଉନ୍ନତ କାବ୍ୟ ଅଦ୍ୟାପି ବିଦ୍ୱତ୍ ସମାଜର ଗୋଚରକୁ ଆସିପାରିନାହିଁ, ଏହାହିଁ କ୍ଷୋଭର ବିଷୟ ।

---

# ଚୌପଦୀ ରତ୍ନାବଳୀ

ଓଡ଼ିଆ ସାହିତ୍ୟରେ ଚୌପଦୀ ରଚନା ଆଦୌ ଅର୍ବାଚୀନ ନୁହେଁ । ଏହା ସଂସ୍କୃତର 'ଚତୁଷ୍ପଦୀ' କିମ୍ବା ହିନ୍ଦୀର 'ଚୌପାଇ' ଅନୁକରଣରେ କିମ୍ବା ଅବଲମ୍ବନରେ ଲେଖା ଯାଇନାହିଁ । ଏହାର ସ୍ୱାତନ୍ତ୍ର୍ୟ ସୁସ୍ପଷ୍ଟ ଭାବରେ ଜଣାଯାଏ । ସଂସ୍କୃତ ଚତୁଷ୍ପଦୀ, ଷଟ୍‌ପଦୀ ଓ ଅଷ୍ଟପଦୀ ଆଦି କବିତାରେ ସେତିକି ସଂଖ୍ୟକ ପଦ ରହିଥାଏ । ହିନ୍ଦୀ ଚୌପାଇ ମଧ୍ୟ ସେହି ନିୟମର ଅବଲମ୍ବନରେ ଲେଖାଯାଇଛି । କିନ୍ତୁ ଓଡ଼ିଆ ଚୌପଦୀ ଗୁଡ଼ିକର ଅନୁଧ୍ୟାନ କଲେ ଜଣାଯାଏ ଯେ, ଓଡ଼ିଆ ଭାଷାରେ ଲିଖିତ, ବିଭିନ୍ନ ରାଗ-ରାଗିଣୀ ସମନ୍ୱିତ କବିତାବଳୀକୁ 'ଚୌପଦୀ' କୁହାଯାଏ । ସେଥିରେ ପଦ ଓ ପାଦସଂଖ୍ୟା କୌଣସି ସୀମିତ ପରିସରରେ ଆବଦ୍ଧ ନୁହେଁ । ବରଂ ତାହା ସଂସ୍କୃତ ଓ ହିନ୍ଦୀ କବିତା ତୁଳନାରେ ଅଧିକ ବନ୍ଧନମୁକ୍ତ ତଥା ବିଭିନ୍ନ ରାଗ-ରାଗିଣୀରେ ଛନ୍ଦାୟିତ ।

ଓଡ଼ିଆ ଚୌପଦୀ ସାହିତ୍ୟର ଆରମ୍ଭ କାଳ ଖୁବ୍ ସମ୍ଭବତଃ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ତୃତୀୟ ଚତୁର୍ଥ ଦଶକ ହୋଇପାରେ । କାରଣ କବି ସାରଳାଦାସଙ୍କ ମହାଭାରତ ରଚନା ପରେ ଓଡ଼ିଆ ସାହିତ୍ୟରେ ବିଭିନ୍ନ ବିଭବର ଆରମ୍ଭ ହୋଇଥିଲା । ବିଶେଷତଃ ବ୍ୟାସକବି ସାରଳାଙ୍କ ନାମରେ ଦୁଇ ତିନୋଟି ଚୌପଦୀ ମିଳୁଛି । ତତ୍ପରେ ପଞ୍ଚସଖା (ଅଚ୍ୟୁତ, ବଳରାମ, ଜଗନ୍ନାଥ, ଯଶୋବନ୍ତ ଓ ଅନନ୍ତ)ଗଣ ଚୌପଦୀ ରଚନାରେ ବିଶେଷ ଦକ୍ଷତା ଦେଖାଇଥିଲେ । ସେମାନେ ଶ୍ରୀଜଗନ୍ନାଥ, ନିର୍ଗୁଣଭକ୍ତି, ଶ୍ରୀକୃଷ୍ଣ ଓ ଦୁର୍ଗାଆଦି ଦେବଦେବୀଙ୍କ ତଥା ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଉପରେ ଶତ ଶତ ଚୌପଦୀ ରଚନା କରିଛନ୍ତି । ଅବଶ୍ୟ ତାଙ୍କ କବିତା ଗୁଡ଼ିକୁ 'ଭଜନ' ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରାଯାଇଛି । କିନ୍ତୁ ଓଡ଼ିଆ ସାହିତ୍ୟର ଚୌପଦୀ ପରିସର ଏତେ ବ୍ୟାପକ ଯେ, ବିଭିନ୍ନ ରାଗରାଗିଣୀ ସମନ୍ୱିତ ବିଭିନ୍ନ ଧରଣର ଗୀତିଗୁଡ଼ିକ ଚୌପଦୀ ନାମରେ ନାମିତ ହେଲେ । ଚୌପଦୀ ଲାଗି କୌଣସି ସ୍ୱତନ୍ତ୍ର ନିୟମ ରହିଲା ନାହିଁ । କେବଳ ଛନ୍ଦୋବଦ୍ଧ ଅପେକ୍ଷାକୃତ କ୍ଷୁଦ୍ର କବିତାର ନାମ ହେଲା ଚୌପଦୀ ।

ଏହି ଚୌପଦୀ ରଚନା ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀଠାରୁ ଆରମ୍ଭ କରି ଅଦ୍ୟାପି ଓଡ଼ିଆ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରି ରହିଛି । ଏହି ଚୌପଦୀ ରଚନା କ୍ଷେତ୍ରରେ ଯେଉଁ କବିମାନେ ଓଡ଼ିଶାର ଜନସାଧାରଣଙ୍କଠାରେ ସୁପରିଚିତ ସେମାନଙ୍କ ମଧ୍ୟରେ ଅତିବଡ଼ି ଜଗନ୍ନାଥ ଦାସଙ୍କ ସମେତ ପଞ୍ଚସଖାଗଣ, ଦୀନକୃଷ୍ଣ ଦାସ, ବାଣପୁରରାଜ ରଘୁନାଥ ହରିଚନ୍ଦନଙ୍କ ସଭାକବି ବିଷ୍ଣୁ ଦାସ, ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜ, ଘନ ଭଞ୍ଜ, ଦୀନବନ୍ଧୁ ହରିଚନ୍ଦନ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଭକ୍ତ କବି ରଘୁ ଅରକ୍ଷିତ, ଯବନ ଭକ୍ତ ସାଲବେଗ, ବନମାଳୀ ଦାସ, ଭକ୍ତଚରଣ ଦାସ, ରତ୍ନ ପଟ୍ଟନାୟକ, ନରସିଂହ ପଟ୍ଟନାୟକ, ରାଜକବି କୃଷ୍ଣଚନ୍ଦ୍ର ରାଜେନ୍ଦ୍ର, ବିଶ୍ୱମ୍ଭର ରାଜେନ୍ଦ୍ର, ପୁରୁଷୋତ୍ତମ ଅନଙ୍ଗଭୀମ, ପ୍ରେମାନନ୍ଦ ଦାସ, ଭରତ ଦାସ, ନିଧିଦାସ, ରାଜକବି ଲବଙ୍ଗସିଂହ ଦେବ (ପଣ୍ଡିଆ), ମୁକୁନ୍ଦଦେବ, ବୀରକେଶରୀ ଦେବ, ଲୋକନାଥ ବିଦ୍ୟାଧର, ଗୋପାଳକୃଷ୍ଣ ପଟ୍ଟନାୟକ, କବିସୂର୍ଯ୍ୟ ବଳଦେବ (ଏହାଙ୍କର ଅଧିକାଂଶ ଚୌପଦୀ କଳାନ୍ତର ରାଜ ଓ ଅଷ୍ଟଦୁର୍ଗାଧିପଙ୍କ ନାମରେ ଭଣିତ ହୋଇଛି), ରଘୁନାଥ ପରିଛା, ଗୌରହରି ଦାସ, ସାରଥି ଭିକ, ଗଣ୍ଡା ଦାସ, ଆଦିବାସୀ କବି ଲମ୍ବୁ ମାଝି, କନ୍ଧାନ୍ଧ ତଥା ମହିମା ଧର୍ମର ପ୍ରଚାରକ ଏକେଶ୍ୱରବାଦୀ କବି ଭୀମ ଭୋଇ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

କବି ଜଗନ୍ନାଥ ପାଣି ଓ ଅତିବଡ଼ି ଜଗନ୍ନାଥଙ୍କ ରଚିତ ଚୌପଦୀ ଗୁଡ଼ିକ ମଧ୍ୟରେ କେଉଁଟି କାହାର, ତାହା ନିର୍ଦ୍ଧାରଣ କରିବା ଆଦୌ ସମ୍ଭବ ନୁହେଁ । କାରଣ ଉଭୟ କବି ନିଜକୁ ଜଗନ୍ନାଥ ଦାସ, ଜଗନ୍ନାଥ ଦ୍ୱିଜ, ଦାସ ଜଗନ୍ନାଥ, ଦୀନ ଜଗନ୍ନାଥ ଆଦି ନାମରେ ଚିହ୍ନିତ କରାଇଛନ୍ତି । ସ୍ୱଭାବତଃ ବିଶେଷ ତାରତମ୍ୟ ଦୃଷ୍ଟିଗୋଚର ନ ହେଲେ ଉଭୟ କବିଙ୍କ କବିତାକୁ ପୃଥକ୍ କରିବା ସହଜ ନୁହେଁ । ବିଶେଷତଃ ଉଭୟଙ୍କ ରଚନାରେ ତତ୍ସମ ଓ ତଦ୍ଭବ ପଦାବଳୀ ପୂର୍ଣ୍ଣ ହୋଇ ରହିଛି । ଦେଶଜ ଶବ୍ଦର ପ୍ରୟୋଗ ମଧ୍ୟ ଉଭୟ କବି ଅତ୍ୟନ୍ତ ମାର୍ଜିତ ଢଙ୍ଗରେ କରିଛନ୍ତି ।

ପ୍ରସ୍ତୁତ 'ଚୌପଦୀ ରତ୍ନାବଳୀ'ରେ ଜଗନ୍ନାଥ ପାଣି ଅଠରୋଳଣିଟି ବିଭିନ୍ନ ଧରଣର କବିତା ସନ୍ନିବେଶିତ କରି, ଭିନ୍ନ ଭିନ୍ନ ରାଗରାଗିଣୀରେ ସେଗୁଡ଼ିକ ଅଳଙ୍କୃତ କରିଛନ୍ତି । ତନ୍ମଧ୍ୟରେ ଶିବ, ଗଣେଶ ଓ କାଳିକା ବନ୍ଦନା ପ୍ରଭୃତି ଅଳ୍ପ କେତୋଟି ଚୌପଦୀ ରହିଛି । ଅବଶିଷ୍ଟ କବିତା ଗୁଡ଼ିକରେ ଶ୍ରୀ ରାଧାକୃଷ୍ଣ ଲୀଳା, ନାୟିକାର ନଖ ଶିଖ ବର୍ଣ୍ଣନା, ଚନ୍ଦ୍ରାବଳୀ ପ୍ରଭୃତି ବର୍ଣ୍ଣିତ ହୋଇଛି ।

କବି ସ୍ୱଗ୍ରାମର 'ନଳେଶ୍ୱର' ମହାଦେବଙ୍କ ଭକ୍ତ ଥିବାରୁ ଗୋଟିଏ ସୁନ୍ଦର 'ଶିବବନ୍ଦନା' ତାଙ୍କ ଲେଖନୀରୁ ନିଃସୃତ ହୋଇଛି ।

"ଜୟ ହର ଗିରୀଶବରଂ ।
ଜୟ ଜୟ ଜଗତ ତାରଂ ॥
ହର ମମ ଦୁଃଖସ୍ତରମ୍ ॥
x x x
ରଚତ ଜଗନ୍ନାଥ ଶିବପଦାରଂ
ବଦତ ମହେଶମହିମା ଅପାରଂ ।
ସ୍ମରତ ପ୍ରଥମ ମଙ୍ଗଳାଗ୍ରହମ୍ ॥ ଇତ୍ୟାଦି

ଶିବଙ୍କ ବନ୍ଦନା ପରେ କାଳିକାଙ୍କ ବନ୍ଦନା ଅତି ଚମତ୍କାର ପଦଯୋଜନାରେ ସୁଶୋଭିତ ହୋଇଛି । କବି 'କ' ଠାରୁ 'ଠ' ପର୍ଯ୍ୟନ୍ତ ଅକ୍ଷରଗୁଡ଼ିକରୁ ପ୍ରଥମେ ତିନୋଟି ଅକ୍ଷରରେ ଅନୁସ୍ୱାର ଯୁକ୍ତ କରି କାଳିକାଙ୍କ ସ୍ୱରୂପ ଚିନ୍ତା କରିଛନ୍ତି । ଖୁବ୍ ସମ୍ଭବତଃ କବି ଜଗନ୍ନାଥ ସଂସ୍କୃତ ସ୍ତୋତ୍ର ଗୁଡ଼ିକରେ ଥିବା କେତୋଟି ଦେବୀ ସ୍ତୋତ୍ରର ପ୍ରଭାବରେ କାଳିକାଙ୍କର ବନ୍ଦନା କରିଛନ୍ତି :

"ଐଂ ଐଂ ଐଂ ଦୃଷ୍ଟମନ୍ତ୍ରେ କମଳଭବମୁଖା
ମ୍ଭୋଜ ଭୁତେ ସ୍ୱରୂପେ ।
ହ୍ରୀଂ ହ୍ରୀଂ ହ୍ରୀଂ କାପୀଉତ୍ସ୍ଥେ ହିମରୁଚି ମୁକୁଟେ '
ବଲ୍ଲକୀ ବ୍ୟଗ୍ରହସ୍ତେ ॥
ଧୀଂ ଧୀଂ ଧୀଂ ଧାରଣାଖ୍ୟେ ଧୃତିମତିନତିଭିଃ
ନାମଭିଃ କୀର୍ତ୍ତନୀୟେ ॥
ହୂଂ ହୂଂ ହୂଂ ସ୍ୱ ସ୍ୱରୂପେ ଦହ ଦହ ଦୁରିତଂ
ପୁସ୍ତକ ବ୍ୟଗ୍ରହସ୍ତେ ॥

ଏବଂ ଆଉ ଗୋଟିଏ ଦେବୀ ସ୍ତୋତ୍ର ମଧ୍ୟ ଅନୁରୂପ ପଦାବଳୀର ସଂଯୋଗରେ ଥିବାର ଦେଖାଯାଏ—

ଚଂ ଚଂ ଚଂ ଚନ୍ଦ୍ରହାସ । ଚକିତ ସହଚରୀ ଋଚରୀ ଶୁଭ୍ରକେଶା ।
ଜଂ ଜଂ ଜଂ ଜଗତମାତା ଜଗତଜନହିତା ଯୋଗିନୀ ଯୋଗରୂପା ॥
ଡଂ ଡଂ ଡଂ ଡମରୁକସହିତା ଡାକିନୀ ଡାକହାକ୍ଷା ।
ଋଂ ଋଂ ଋଂ ରକ୍ତବର୍ଣ୍ଣା ରୁଧିରମଣିମୟା ପାତୁଂ ମାଂ ଦେବୀଦୁର୍ଗେ ॥

ଖୁବ୍ ସମ୍ଭବତଃ କବି ଜଗନ୍ନାଥ ପାଣି ଏହି ଦୁଇଟି ସ୍ତୋତ୍ରର ଅନୁକରଣରେ ନିମ୍ନଲିଖିତ କାଳିକା ବନ୍ଦନାଟି ରଚନା କରିଛନ୍ତି—

କଂ କଂ କଂ କାଳିକା କପାଳମାଳିକା ।
ଖଂ ଖଂ ଖଂ ଖଡ୍‌ଗ ଖରଖପର ବଗିଖା ॥
ଗଂ ଗଂ ଗଂ ଗଗନ ଗମନା ବନଦୁର୍ଗା ।
ଘଂ ଘଂ ଘଂ ଘଣ୍ଟା ଘୋର ଘର୍ଘର ଘନର୍ଘା ॥

×           ×           ×

ଜଂ ଜଂ ଜଂ ଜଗନ୍ନାଥ ଜସ୍ତ ଯଜ୍ଞଧ୍ୱଜା ।
ଝଂ ଝଂ ଝଂ ଝମକ ଝୁଣ୍ଟିଆ ରଣଝମ୍ପା ॥
ଟଂ ଟଂ ଟଂ ଟଙ୍କାର ଟଙ୍କିତ ମଦୋତ୍କଟ ।
ଠଂ ଠଂ ଠଂ ଜଗନ୍ନାଥ ନାମେ ରକ୍ତଓଷ୍ଠ ॥"

କବି ଜଗନ୍ନାଥ ଶ୍ରୀରାଧାକୃଷ୍ଣ ପ୍ରେମଲୀଳାମୂଳକ କେତୋଟି 'ଚୌପଦୀ' ରଚନା କରି ଚୌପଦୀ ରତ୍ନାବଳୀରେ ସଂଯୋଜନ କରିଛନ୍ତି । ତନ୍ମଧ୍ୟରେ କେତୋଟି ଯମକ, ଚକ୍ରଶୃଙ୍ଖଳା, ସିଂହାବଲୋକନ, ବିରୋଧାଭାସ, ଗୋମୂତ୍ରଛନ୍ଦ, ଶ୍ଳେଷ ଆଦି ଅଳଙ୍କାରରେ ଅଳଙ୍କୃତ ହୋଇଛନ୍ତି । ଏଠାରେ ପ୍ରତ୍ୟେକ ଅଳଙ୍କାରରୁ ଗୋଟିଏ ଲେଖାଏଁ ଉଦାହରଣ ପ୍ରଦତ୍ତ ହେଲା ।

**ଯମକ—**

ଶ୍ୟାମବନ୍ଧୁ ଠାରେ ମାନ ଥିଲି ଆଜ ଛୁଟିଲା ।
ଯାଇ ସ୍ନାନଘାଟ ଯମୁନା ନିକଟ—
ତଟ ବଂଶୀବଟ ଦେଖିଲି ସେ ନଟ ।
ବ୍ରଜ ନନ୍ଦ ସୁତ କରି ମୋତେ ହଠ,
କେତେ ଭଙ୍ଗୀରେ ସେ ଆସି ଭେଟିଲା ॥
ମୟୂର ମୁକୁଟ କଟୀ ପୀତ ତଟ,
ଲଗାଇ କପାଟ ଯୋଡ଼ି କର ପୁଟ ॥
କହିଲି ନିପଟ ହେଲି ହତପାଟ,
ଏ ବିକଳ୍ପେ ମୋ ମନ ଫିଟିଲା ॥

×           ×           ×

ଯେଉଁ ଘୃଷ୍ଟପୃଷ୍ଠ ଭଞ୍ଜିଲେ ସେ ଝୀଟ
କେଉଁ ପ୍ରିୟ ଆଣ୍ଠୁ ଧରିବା କପଟ ।
ଛାଡ଼ି ମାନ ଆଣ୍ଠୁ ଦେଲା ତାଙ୍କୁ କଣ୍ଠ
ଜଗନ୍ନାଥ ଏ ରସେ ରଚିଲା ॥"

## ଚନ୍ଦ୍ରଶୃଙ୍ଖଳା—

ହେ ବରଜବର, ବରବରଣୀ ରାଧାର କରାଧାର ବର ହେ ।
ବରଚ ରଚ ଈଶ୍ୱର ଶରଘାତୁ ରାମାବର,
ବରଗି ରଙ୍ଗିଣୀ ଦେଖି ଦେଉଛୁ ଖବର ।

× × ×

ବରନ୍ଧ୍ର ଚନ୍ଦ୍ର ଶୃଙ୍ଖଳା ଛନ୍ଦ ଅନୁଭବର ।
ବରଭାଷେ ଭାଷେ ଜଗନ୍ନାଥ କବିବର ॥"

## ସିଂହାବଲୋକନ-ବରୋଧାଭାସ—

ଦରହାସେ ବରଜବନ୍ଧୁ ସୁନ୍ଦର ।
ଦରଶନ ଦେଇଯା ନ ଯା ଛନ୍ଦର ॥
ଦର କଣନେଲ କଣି ବଂଶୀନାଦର ।
ଦରପ-କରେ ଦେଇ କଲ ଅନାଦର ॥"

× × ×

## ଗୋମୂତ୍ର ଛନ୍ଦ—

"ବୃଷଭାନୁ ଜେମା ରାଧା ମଦନ କାତରେ ।
କୃଶ ତନୁ ରାମା ସୁଧା ବଦନ କାନ୍ତରେ ॥
ସଖୀ କର ଧରି କହେ ବନସ୍ଥ ଉତ୍ତର ।
ଆଖି ନୀର ଝରି ବହେ ସ୍ତନର ଉପର ॥

× × ×

ହେଲେ ରଗ ଏଥର ବନ୍ଧମୁ ଉଚ୍ଛନ୍ନରେ ।
ବୋଲେ ଜଗନ୍ନାଥ କବି ଗୋମୂତ୍ର ଛନ୍ଦରେ ॥

## ଶ୍ଳେଷ—

ଅହେ ଶ୍ୟାମଘନ,
କେଶୀ ନାଶକର ଭସ୍ମ ପରିତ୍ରାଣ ॥
ରାସ ରସନଧି ଚନ୍ଦ୍ର, ସେନାପତି,
ମଦନ ସମରେ ସାଧନ କେଲତି ॥

× × ×

କୁବଲୟଦଳନେ ତ୍ରାସ ମୋହରେ ।
ନବନାଗରୀ କୁଞ୍ଜରେ ଯେ ବିହରେ ॥
ଜଗନ୍ନାଥ ତାଙ୍କ ଦ୍ୱିବିଧ ଶ୍ଳେଷରେ ଭାବେ ରାଧାକୃଷ୍ଣ ନାମ ॥"

କବି ଶ୍ରୀ ରାଧାକୃଷ୍ଣଙ୍କ ଲୀଳା ସମ୍ବନ୍ଧୀୟ ଆଉ କେତୋଟି ଭାବଗର୍ଭିତ ଚୌପଦୀ ପ୍ରସ୍ତୁତ କବିତାବଳୀରେ ସଂଗ୍ରହ କରିଛନ୍ତି । ଅଭିସାରିକା ଶ୍ରୀରାଧା କୁଞ୍ଜରେ ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କଠାରେ ଆଶ ଲଗାଇ ବସିଥିଲେ । କିନ୍ତୁ କଣ୍ଠଦେଇ ହଟନାଗର ଅନ୍ୟ ନାଗରୀର ମୋହନ ପାଶରେ ବନ୍ଦୀହୋଇ ରାତି ବିତାଇଦେଲେ । କିନ୍ତୁ ଅଭିମାନିନୀ ଶ୍ରୀମତୀ ଅରୁଣ ଉଦୟ ପର୍ଯ୍ୟନ୍ତ ଅନାଇଁ ବସିଥିଲେ । ହଠାତ୍ ନଟବର ନାଗର ଅନ୍ୟ ନାୟିକାର ସୁରତ ଚିହ୍ନ ଅଙ୍ଗରେ ବହି ଆସି ଶ୍ରୀମତୀଙ୍କଠାରେ ପ୍ରବେଶ ହେଲେ । କିନ୍ତୁ ମାନିନୀ ସବୁ କିଛି ସହିପାରେ, ନିଜ ପ୍ରିୟତମର ଅଙ୍ଗରେ ଅନ୍ୟ ନାୟିକାର ସୁରତଚିହ୍ନ ଦେଖିଲେ କେବେହେଲେ ସହ୍ୟ କରିପାରେନାହିଁ । ତେଣୁ ଶ୍ରୀମତୀ ଅଭିମାନିନୀ ହୋଇ କହୁଛନ୍ତି—

"ଆହେ ଶ୍ୟାମବନ୍ଧୁ !
ଆଉ ନ କହିବ ରାଧା ପ୍ରାଣବନ୍ଧୁ ॥
ବଦନ ଅଧରୁ ମଧୁର ମଧୁକୁ ।
ଆଦରସେ ଇଚ୍ଛା କଲି ସଂଗ୍ରହକୁ ॥
ବଧୂ ଲୁବ୍ଧ ହୋଇ କେ ଗ୍ରାସିଲା ଦମ୍ଭେ ଶ୍ରୀମୁଖ ଚକୋର ବନ୍ଧୁ ॥
× × ×
ଶ୍ୟାମ କଳାଭୃଙ୍ଗ କାହାର ନୁହନ୍ତି ।
କଞ୍ଜଗୁଚ୍ଛ ପଦ୍ମେ କୁଟଜ ଚୁମ୍ବନ୍ତି ॥
ସଙ୍କେତ କୁଞ୍ଜରେ ସେପରି ପାଇଲି ମୋ ଜୀବନମଣି ବନ୍ଧୁ ॥
× × ×
ପୁନରୁକ୍ତି ପଦେ ସ୍ୱୟଂ ଦୂତୀ କହେ କବିବର ଜଗଦ୍‌ବନ୍ଧୁ ॥"

ଅନ୍ୟ ଗୋଟିଏ କବିତାରେ କବି ଜଗନ୍ନାଥ ପାଣି ଦୂତୀ ମୁଖରେ ଶ୍ରୀରାଧାଙ୍କ ପଞ୍ଚବିଧ ମାନ ଓ ଶ୍ରୀକୃଷ୍ଣଙ୍କ ଉତ୍ତର ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ପ୍ରତ୍ୟେକ ମାନରେ ଶ୍ରୀରାଧାଙ୍କ ମନୋବିକାର ଉଲ୍ଲେଖ କରି ଦୂତୀ କହନ୍ତେ, ନଟନାଗର ସେ ପ୍ରକାର ବିକାର ଶ୍ରୀରାଧାଙ୍କଠାରେ ଅନ୍ୟ କାରଣରୁ ଜାତ ହୋଇଥିବାର ଦୃଷ୍ଟାନ୍ତ ଉପସ୍ଥାପିତ କରିଛନ୍ତି ।

ଦୂତୀ—"ଅଶନ ବସନ ବେଶଭୂଷଣ ।
ତେଜି ରାଜିବମୁଖୀ ଅନୁକ୍ଷଣ ॥
କୁଚ କନ୍ଦରେ ଚନ୍ଦ୍ରମୁଖ ଦେଇ ।
ବସି ବିଷାଦେ ଅଭିସାରୀ ହୋଇ ॥

କରକରେ ମଣ୍ଡ,
ଚତୁର୍ଥମାନେ ମାଜନା କରଇ ॥
ଶ୍ରୀକୃଷ୍ଣ—ମୋ ରୂପ ଚନ୍ଦ୍ରପଟେ ଲେଖି ବାଳା ।
ଚୁମ୍ବ ଦେବି ମୁଖେ ଲଗିଲା କଳା ॥
କନିଷ୍ଠ ଅଙ୍ଗୁଳି-କରଜ ମୂନେ ।
ମଣ୍ଡାକ ଚରେ କାଳୀ ଘରଷଣେ ॥
ମୋହ ଜାଣିବାର ।
ସେଦନ ନଖେ ଲେଖିଅଛୁ ଗାର ॥"

କଂସରାଜା କୂଟକର ଶ୍ରୀକୃଷ୍ଣଙ୍କୁ ମଥୁରା ନେଇ ଯିବା ଲଗି ଅକ୍ରୂରକୁ ପଠାଇଛୁ । ଅକ୍ରୂର ଆସି ଗୋପରେ ଉପସ୍ଥିତ ହୋଇଗଲେଣି । ଶ୍ରୀକୃଷ୍ଣ ମଧ୍ୟ ମଥୁରା ଯିବା ଲଗି ପ୍ରସ୍ତୁତ ହୋଇଗଲେଣି । କିନ୍ତୁ ଶ୍ରୀରାଧା ଏ ଖବର ପାଇନାହାନ୍ତି । ସେ ମନମୋହନ କୃଷ୍ଣଙ୍କ ଲଗି ନାନାପ୍ରକାର ବେଶଭୂଷଣରେ ସଜ୍ଜିତା ହେଉଛନ୍ତି । ଏହି ସମୟରେ ଜଣେ ଗୋପୀ ଏ ଖବର ଶ୍ରୀରାଧାଙ୍କୁ ଦେବା ଲଗି ଧାଇଁଆସି, ଶ୍ରୀରାଧାଙ୍କ ସୁବେଶ ଦେଖି ବସ୍ମିତା ହୋଇଯାଇଛି ଏବଂ ଶ୍ରୀରାଧାଙ୍କ ବେଶଭୂଷାର ନିଃସାରତା ବୁଝାଇ ଖେଦୋକ୍ତି ପ୍ରକାଶ କରିଛି । କବି ଜଗନ୍ନାଥ ପାଣି ସେହି ବିଷାଦଗର୍ଭିତ ଉକ୍ତିକୁ ଅତି ଚମତ୍କାର ଭାବରେ ରଚନା କରିଛନ୍ତି ।

"କାଲି ଯିବେ ବଂଶୀଧାରୀ ବୃନ୍ଦାବନ ଶୂନ୍ୟକରି ।
କାହାଲଗି ଏ ସୁବେଶ ହେଉ ଲୋ ରାଧା କିଶୋରୀ ॥
ଯା ସ୍ନେହେ ଗୁନ୍ଥିଛୁ ହାର ତାହାକୁ ନେବ ଅକ୍ରୂର ।
ଆହା କରିବାକୁ ତୋର ସାହା କେହି ନାହିଁ ଗୋରୀ ॥

× × ×

କାମସିନ୍ଧୁ ଲଗି ତୁରି ଶ୍ୟାମ ନାବ ଥିଲୁ କରି ।
ବାମ ହୋଇ ଗିରିଧାରୀ ବୁଡ଼ାଇଲେ ବ୍ରଜନାରୀ ॥
ଆସ ଏବେ ଯମୁନାରେ ଝାସଦେବା ତା' ନାମରେ ।
ଭାଷେ ଜଗନ୍ନାଥ ଏତେ ଦାରୁଣ କୁଞ୍ଜବିହାରୀ ॥"

ଶ୍ରୀ ରାଧାକୃଷ୍ଣଙ୍କ ଲୀଳା ବ୍ୟତୀତ କବି ଜଗନ୍ନାଥ ଆଉ କେତୋଟି ଆଦରସାତ୍ମକ ଚୌପଦୀ ପ୍ରସ୍ତୁତ ପୁସ୍ତକରେ ଉଲ୍ଲେଖ କରିଛନ୍ତି । ସେଗୁଡ଼ିକ ମଧ୍ୟରେ ଚନ୍ଦ୍ରୋଦୟ, ବସନ୍ତ ଅନୁଚନ୍ଦ୍ରା, ପ୍ରୀତି ଲକ୍ଷଣ, ବାକ୍ ଚାତୁରୀ, ସ୍ନେହାନୁଚନ୍ଦ୍ରା ଆଦି କବି ଜଗନ୍ନାଥଙ୍କ ବର୍ଣ୍ଣନାରେ ବିଶେଷ ରସାନୁକୂଳ ତଥା ଆକର୍ଷକ ହୋଇଛି । ଉକ୍ତୋକ୍ତ ଚୌପଦୀରୁ କିଛି ଅଂଶ ଏଠାରେ ପ୍ରଦତ୍ତହେଲା ।

**ଚନ୍ଦ୍ରଗ୍ରହଣ—**

"ଚନ୍ଦ୍ରଗ୍ରହଣ ଗୀତ ଶୁଣ ସୁଜନେ ।
ଶୁକ୍ଳପକ୍ଷେ ଚନ୍ଦ୍ର ଥାଇ ଯେ ସ୍ଥାନେ ॥
ସ୍ତ୍ରୀଙ୍କ ଦକ୍ଷିଣ ପୁରୁଷ ବାମେ ।
ବେନି ପକ୍ଷେ ଫେର ରହଇ ବାମେ ।
କୃଷ୍ଣ ପ୍ରଥପରେ ଯେ ।
ଚନ୍ଦ୍ର ରହୁଥାଏ ସ୍ତ୍ରୀଙ୍କ ଶିରରେ ଯେ ।

× × ×

ଦ୍ୱାଦଶେ ନିତମ୍ବ ଜାନୁ ଏକାଦଶେ ।
ଚତୁର୍ଦ୍ଦଶୀରେ ପାଦେ ପରକାଶେ ॥
ଅମାବାସ୍ୟାରେ ଥାଏ ବୃଦ୍ଧାଙ୍ଗୁଳେ ।
ଷୋଳ କଳାରେ ସ୍ତ୍ରୀ ଅଙ୍ଗରେ ଚଳେ ॥
କହେ ଜଗନ୍ନାଥ ଯେ ।
ଶୃଙ୍ଗାର ତଳକ ଚନ୍ଦ୍ରଗ୍ରହଣ ଯେ ॥"

**ବସନ୍ତ ଅନୁଚକ୍ର (ସ୍ତ୍ରୀ)**

"କହୁରୁ ବସନ୍ତ ଯାଇ ପ୍ରାଣବନ୍ଧୁଙ୍କୁ ବୁଝାଇ ।
ବସନ୍ତ ଅଇଲା ସେହୁ ନ ଆସିଲେ କାହିଁପାଇଁ ॥"

× × ×

କୁହୁ କୁହୁ ପିକରବ ହୁ ହୁ ହୁ ହୁ କଲେ ହୃଦ ।
ମୁହୁର୍ମୁହୁଃ ହୁଏ ଖେଦ ଦ୍ୱିଜ ଜଗନ୍ନାଥ କହୁ ॥

**ବସନ୍ତ ଅନୁଚକ୍ର (ପୁରୁଷ)**

"ମାଧବୀ ମଧୁପ ମେଳ ବାନ୍ଧବୀ ଦେଖି ବାତୁଳ ।
ମାଧବୀ ମଦନେ ଖେଳ ହେଉଥିବ ଟଳ ଟଳ ॥

× × ×

ବାସକ ଶୟ୍ୟାରେ ରହୁ ବାସ କୁସୁମକୁ ଗୁନ୍ଥି ।
ବାସରେ ଯୁଗତେ ସେହୁ ମଣୁଥିବ କାଳ କାଳ ॥
ପାଶେ ବସି ଅନୁବ୍ରତେ ହାସେ ସଖୀଙ୍କ ସଙ୍ଗତେ ।
ଭଣେ ଜଗନ୍ନାଥ ଗୀତେ ପତ୍ର ମଣ୍ଡଳ ତଳ ॥"

## ପ୍ରୀତି ଲକ୍ଷଣ—

ନବନ୍ତରୁଣ,
ଶୁଣ ପ୍ରୀତ ଚିନ୍ତାମଣି ଲକ୍ଷଣ ॥
କବିଙ୍କ ପୀରତ ଅତ ଧୀରମତ ନୃପତ ପୀରତ ପାଷାଣ ।
ରସିକ ପୀରତ ଶଶୀକର ଜ୍ୟୋତ ପ୍ରବାସୀ ପୀରତ କଠିଣ ॥
ନାଗର ପୀରତ ନାଗସର୍ପଜାତ ଦଂଶିଲେ ନଥଇ ପରାଣ ।
x x x
ନିଜ ପତ ପ୍ରୀତ ବାସବ ସମ୍ପତ୍ତି ପରପ୍ରୀତ ଅତ ଦୂଷଣ ।
ବିପ୍ରଙ୍କ ପୀରତ ଅତ ଅପକୀର୍ତ୍ତି କ୍ଷତ୍ରିସ୍ଥ ପୀରତ ଖଣ୍ଡନ ॥
x x x
ସାଧବ ପୀରତ ସୁଧାପାନ ମତ କରଣ ପୀରତ ବାରଣ ।
ଜଗବନ୍ଧୁ ପ୍ରୀତ ଯୁବାଜନ ମତ ମୋହନ ହୃଦସ୍ଥ ମଣ୍ଡନ ॥"

## ନାୟକ ଓ ନାୟିକା ବାକ୍‌ଚାତୁରୀ

### ନାୟକ—

"ଆରେ ଉନ୍ମାଦନୀ ତୁହି କୁମୁଦନୀ ହଠ ମୋ ହୃଦ ଆକାଶେ ।
ମୁହିଁ ଚନ୍ଦ୍ର ତଳେ ପଡ଼ ପ୍ରେମ ଜଳେ ଖେଳେ ବିପରୀତ ରସେ ॥
ରେ ସଖି !
ହସେ ତୋ ଖଞ୍ଜନ ଆଖି !

### ନାୟିକା—

କାହିଁ କଥା ନେଇ କାହିଁରେ ଲଗାଇ କୁହ ବନ୍ଧୁ ଏଁ କି ରୀତି ।
ଅବଳା ସ୍ୱଭାବେ କାହୁଁ ବା କଣବେ ପୁରୁଷଙ୍କ ପ୍ରାୟେ ରତି ॥
ହେ ନାହା !
କାଲେ ଦେଖା ନାହିଁ ଯାହା !

### ନାୟକ—

ଦେଖରେ ବାନ୍ଧବୀ ଏ ନବ ମାଧବୀ ଶେଯେ ମଉଳନ୍ତି ମୁହିଁ
ତୁ ପଦ୍ମିନୀ ପଦ୍ମଲତାକରେ ବାନ୍ଧ ପ୍ରେମ ଆଲିଙ୍ଗନ ଦେଇ
ରେ ସହି !
କଥାକୁରେ ଚିର ଦେହି ॥

## ନାୟିକା—

ଇନ୍ଦୁମୁଖୀ କହେ ବନ୍ଧୁ ଏ କି ଦୋଷେ ସିନ୍ଧୁକୁ ବିନ୍ଦୁ ହୋଇବ ।
ଗଗନର ଚନ୍ଦ ପବନର ଫାନ୍ଦ ବଳେ କି ତଳେ ପଡ଼ିବ ॥
ହେ ନାଥ !
ସ୍ୱପ୍ନ କଥା କାହିଁ ସତ !"

## ସ୍ନେହାନୁଚିନ୍ତା

"ବନ୍ଧୁ ପ୍ରଭୃତି ମନ କେ ଜାଣିବ ମୋହନ !
ଜୀବର ଜୀବନ କରିଥାନ୍ତି ଧନ ନମିତେ ଅନ୍ତର ନକର ॥
ମୁଁ ଚୁପି ବସିଲେ ଆଶ୍ୱାସନ୍ତି ଭଲେ ଉରଜ ଓଷ୍ଠକୁ ଧରି ।
ବଉଳ ମାଳୀଙ୍କି ରଙ୍ଗେ ନଆଳୀ ରଙ୍ଗେ ସାଜନ୍ତି କବରୀ ॥
ବାଛି ବାଛି ଶାଢ଼ୀ ସୁନାଜରି ଧଡ଼ି ପିନ୍ଧାନ୍ତି କୁଞ୍ଚି କନାରୀ ।

× × ×

ଦେଖ ଏ ଦାରୁଣ ଦଇବ କପଣ ଏକାଳେ ହେଲା ବିସ୍ମରି ।
ବୋଲେ ଜଗନ୍ନାଥ ଯୁବାକାଳେ କାନ୍ତ ଗଳାରେ ଦେଲେ କି ଛୁରୀ ॥"

ଏତଦ୍‌ବ୍ୟତୀତ କବି ଜଗନ୍ନାଥ ପାଣି ପ୍ରସ୍ତୁତ ଚୌପଦୀ ସଂଗ୍ରହରେ ମାନଭଙ୍ଗ, ବିଦେଶ ଗମନ ଚିହ୍ନ, ଜାନୁବର୍ଣ୍ଣନା, କଟୀ ବର୍ଣ୍ଣନା, କୁଚ ବର୍ଣ୍ଣନା, ରୂପସରି ଆଦି ଅଳଙ୍କାର ବର୍ଣ୍ଣନା, ବାହୁ ବର୍ଣ୍ଣନା, ଦନ୍ତ ବର୍ଣ୍ଣନା, ନାସା ବର୍ଣ୍ଣନା, ନେତ୍ର ବର୍ଣ୍ଣନା, କର୍ଣ୍ଣ ବର୍ଣ୍ଣନା, ଭ୍ରୂଲତା ବର୍ଣ୍ଣନା, କେଶ ବର୍ଣ୍ଣନା ଆଦି ସମ୍ବନ୍ଧରେ ଗୋଟିଏ ଗୋଟିଏ ଚୌପଦୀ ରଚନା କରି ରସିକ ପାଠକମାନଙ୍କ ଅନ୍ତରରେ ଆନନ୍ଦର ହିଲ୍ଲୋଳ ସୃଷ୍ଟି କରିଛନ୍ତି । ଏ ପ୍ରକାର ଚୌପଦୀ ଗୁଡ଼ିକରେ ଆଦିରସର ପରିବେଷଣ ଅଧିକ ମାତ୍ରାରେ ହୋଇଥିଲେହେଁ, ତତ୍‌ଯୁଗୀୟ କବିତାର ଅନୁକୂଳ ତଥା ସୁରସିକ ପାଠକଙ୍କ ଆମୋଦଜନକ ଗୀତିରୂପେ ଏହା ଜନସମାଜରେ ଆଦୃତ ହୁଏ । କବି ଜଗନ୍ନାଥ ଜଣେ ଚତୁର ଶିଳ୍ପୀ ରୂପେ ଚୌପଦୀ ଗୁଡ଼ିକର ରଚନା କରିଛନ୍ତି । ପ୍ରୋକ୍ତ ଚୌପଦୀ ଶୀର୍ଷକ କବିତାଗୁଡ଼ିକ ଲୋକ ସମାଜରେ ବିଶେଷ ଆଦୃତ ହୋଇଥିଲା ।

## ଜାନୁ ବର୍ଣ୍ଣନା

ଅନୁମାନ କଲି ସେ ବାଳା ଯାନୁ ଯୁଗଳକୁ ।
ଅନୁବ୍ରତେ ସେଜ ବାସବ ରହିଛି ଡ଼ରେ ଯାହା ପ୍ରବାଳକୁ ॥

ବୃଣାଳ ରସାଳ ଏ ରମ୍ଭାଯୁଗଳ ଓଲଟିଛି ମଙ୍ଗଳକୁ ।
ଖେଳା ଖଞ୍ଜନାକ୍ଷି ଭେଳା କି ବାନ୍ଧିଛୁ କାମସିନ୍ଧୁ ଅତଳକୁ ॥
× × ×
ବୋଲେ ଜଗନ୍ନାଥ ଏଥୁ ଜାନୁରଥ ମନମଥ ପ୍ରଚଳକୁ ।
× × ×

## ଗୃପାଦୀ ଅଳଙ୍କାର ବର୍ଣ୍ଣନା

ଝୁମ୍ପା ବାଜାଉଳା ଗୃପଦକେଳେ, ନାହାନ୍ତି କେହି ଏହା ମାପ ସଖିଙ୍କ ଲୋ ।
କରଙ୍ଗେ ରଜମୋଡ଼ି ଝୁଣ୍ଟିଛି ପନ୍ତ ପନ୍ତ,
ହଂସ ପଦକଙ୍କର କାପସଙ୍ଗଳେ, କାମ୍ବୁ କଣ୍ଠୀ ଚନ୍ଦ୍ରରେଖା ଅମ୍ବୁ ଝରଙ୍କ ଲୋ ।
ଯେହ୍ନ ସୁନାଗର ସୁନା ପଞ୍ଚ ପଟକ,
ବସନ୍ତ ପିକବାଣି, ଭୂଷି ରମଣୀମଣି, ନଅଇ କଣି ବଳେ ଅପସରଙ୍କ ଲୋ ॥
× × ×
ଜଗନ୍ନାଥ କହଇ ବୀଣାଷ୍ଟୀର ପାଇଁ ।
ନେଜବ ଭୂଷା କଣା ପାପ ପଟେକ ଲୋ ॥
× × ×

## ବାହୁ ବର୍ଣ୍ଣନା

ସୁନ୍ଦର ବାହୁ କି ହୃଦର କର ବନ୍ଧୁ ନିର୍ମାଣିଛୁ କାହିଁରେ
କି କୁନ୍ଦ କନକସ୍ତମ୍ଭ, କୁନ୍ଦେ ହୋଇ ପଶରମ୍ଭ
ଆଜାନୁଲମ୍ବିତ ଜାନୁ ଉରୁଯାନୁ ବୃଦ୍ଧିଁରେ ।
କଳିତ ମୃଣାଳ ଲତା, କୁମ୍ଭାଲ ସେ ହୋଇ ମତା
ଭୁଜ ଭୁଜଙ୍ଗମ ପ୍ରେମଫାଶ ଖୋଲୁ ଦାଉରେ ।
× × ×
କଙ୍କଣ ଝଙ୍କାର ଧ୍ୱଂସା ବାଜେ ବଜେ ରସାଳସା
ବୋଲେ ଜଗନ୍ନାଥ ଏ କି ତାଡ଼କା ସୁବାହୁରେ ॥

## ନାସା ବର୍ଣ୍ଣନା

କି ସୁନ୍ଦର ନାସା ଟେକରେ ସଙ୍ଗାତ କି ସୁନ୍ଦର ନାକ ଟେକ ।
ତିଳକେ ତିଳକେ ବଶ କରୁଅଛୁ ବସଣୀ ଛବ ଛଟକ ॥

ଦର୍ଶି ଗୁଣା ମର୍ଶି ହୋଇଛୁ ତ୍ରିଦଣ୍ଡୀ କାମୀ କାମର ଉଦ୍‌ଘାଟନ ।
ଗରୁଡ଼ କାଣ୍ଡ ଆରୂଢ଼ ହୋଇ ନାଥ ଚନ୍ଦ୍ରଧର ସନ୍ତ୍ରାଟନ ॥
କସ୍ତୁରୀ କଳିକା ବନ୍ଧୁ ଇନ୍ଦୁରେଖା ମାର ବରଗିଛୁ କଣ୍ଟକ ।
ତିଳଫୁଲେ ଜାଳ ଭୁଜଙ୍ଗମେଖଳା ନାସା ଜାଳମଣି ଝଟକ ॥

x x x

ଜଗନ୍ନାଥ କହେ କିଂଶୁକ କଳିଏ ଶୁକଚଂଚୁ ବସାଟକ ।

x x x

## ନେତ୍ର ବର୍ଣ୍ଣନା

ତରଙ୍ଗେ ଘୂର୍ଣ୍ଣିଲା ଅପାଙ୍ଗ ନୟନେ ମୋର ମନକୁ ଏ ମୋହିଲା ।
କିବା ଏ ନେତ୍ର କୁରଙ୍ଗ ସଙ୍ଗ ଭଙ୍ଗ ହୋଇଲା ।
କାମ କାଣ୍ଡେ ଝାମ ଯାଇ ଚମକି କି ରହିଲା ॥

x x x

ଶ୍ରବଣ ବିଶାଖା ତାରା ତୃଷା ପରା ଉଇଁଲା ।
ମୀନ ରାଜୀବକୁ ନେଇ ଜଳରେ ବୁଡ଼ାଇଲା ॥

x x x

ସ୍ତମ୍ଭନ ମୋହନ ବଶ୍ୟ ଉଚ୍ଚାଟନ ପାଇଲା ।
ବୋଲେ ଜଗନ୍ନାଥ ଏଥୁ ପ୍ରେମାସ୍ତ୍ରଜା ଅଇଲା ।

## ଭ୍ରୂଲତା ବର୍ଣ୍ଣନା

ଏ ଭ୍ରୂଲତା ମୃଦୁଲତା ଉର୍ଦ୍ଧ୍ୱରେଖା ହୃତଚେତା
କି ଦର୍ପକ ଇନ୍ଦ୍ରଧନୁ ଉଦେ ପ୍ରାଣ ସଙ୍ଗୀ ।
ବାଣୀ ପଦ୍ମତୋଳା ବାଣ କର୍ଣ୍ଣ ବିଲରୁ ବାହାର
ବିଲସନ୍ତି ବିଲେଶୟ ଏ ବାଳ ଭୁଜଙ୍ଗୀ ॥

x x x

ଖଲ ଚନ୍ଦ୍ର ନେତ୍ର ଦ୍ୱନ୍ଦ୍ୱ ସୀମାବାର ଲୀଳା ବନ୍ଧ
ବୋଲେ ଜଗନ୍ନାଥ କାମ କଟାକ୍ଷ ଭୁଜଙ୍ଗୀ ।

x x x

## କେଶ ବର୍ଣ୍ଣନା

ହେବ ନାହିଁ ହେବ ନାହିଁ ହେବ ନାହିଁ ବନଜାକ୍ଷୀ କେଶ ଶୋଭାକୁ
ଥିବ ନାହିଁ ଥିବ ନାହିଁ ତ୍ରିଭୁବନେ ଉପମା ଆଉ ଦେବାକୁ

ଏ ଜଣୋସ୍ଥା ।
କେଶ କେଶ ମେଘ ଧଣ,
ସୃଷ୍ଟି କବା ପ୍ରଳୟ କଣବ ବରଷି ଫବନ୍ତି ବାର,
ବଜ ଭଉଁଣଆ ଚଜ ଭଉଁଣଆ ଶଙ୍ଖଧନୁ ଉଦଆରେ
ମଞ୍ଜୁର ବଧୂ ନମଜ୍ଜନ କଙ୍କିଣୀ ଅବଳମ୍ବ ବନ୍ଦୁମାରେ ।

× × ×

ବୋଲେ ଜଗନ୍ନାଥ ମୁ ଭକେଶୀ ଏ ତ ମର୍କଟମଣି ରୂପକ ସେ' ॥ ଇତ୍ୟାଦ

କବ ଜଗନ୍ନାଥ ପାଣି ଏହ୍ପରି ଭାବରେ ବିଭିନ୍ନ ପ୍ରକାରର ଅଠର୍ଶ୍ଳଣଟି ଚଉପଦୀ ରଚନା କରି ସେଗୁଡ଼ିକୁ 'ଚୌପଦୀ ରତ୍ନାବଳୀ' ଶୀର୍ଷକ ପୁସ୍ତକରେ ସଂଗ୍ରହ କରିଛନ୍ତି । ଶୁଣାଯାଏ 'ଚୌପଦୀ ରତ୍ନାବଳୀ' ଶୀର୍ଷକ ପୁସ୍ତକଟି ଊନବିଂଶ ଶତାବ୍ଦୀର ଶେଷ ଦଶକରେ ପ୍ରକାଶ ପାଇଥିଲା । କିନ୍ତୁ ଆଜିକାଲି ପୁସ୍ତକଟି କୌଣସି ସୂତ୍ରରୁ ଉପଲବ୍ଧ ହୁଏନାହିଁ ।

ପ୍ରସ୍ତୁତ ପୁସ୍ତକରେ ଆଲୋଚିତ ପୁସ୍ତକଗୁଡ଼ିକ ବ୍ୟତୀତ କବି ଜଗନ୍ନାଥଙ୍କ ନାମରେ ଭଣିତ 'ଗଙ୍ଗା ମାହାତ୍ମ୍ୟ' ଓ କେତେକ ଭଜନ ଥିବାର ଦେଖାଯାଏ । ସେଗୁଡ଼ିକ ଅତିବଡ଼ି ଜଗନ୍ନାଥ ଦାସଙ୍କ ରଚନା ବୋଲି ଭାଷା ଓ ରଚନାଶୈଳୀ ଦୃଷ୍ଟିରୁ ମନେହୁଏନାହିଁ । ତଥାପି ସେଗୁଡ଼ିକରେ ସ୍ପଷ୍ଟ ଭାବରେ ଜଗନ୍ନାଥ ପାଣିଙ୍କ ନାମ ଉଲ୍ଲେଖ ନାହିଁ । ତେଣୁ ସେ ସମ୍ବନ୍ଧରେ ଅଧିକ ଉପାଦାନ ହସ୍ତଗତ ନ ହେବା ପର୍ଯ୍ୟନ୍ତ ପୁସ୍ତକ ଓ ଭଜନ ଗୁଡ଼ିକ ଜଗନ୍ନାଥ ପାଣିଙ୍କ ରଚନା ବୋଲି କହିହେବ ନାହିଁ ।

ବହୁମୁଖୀ ପ୍ରତିଭାରେ ସମ୍ପନ୍ନ କବି ଜଗନ୍ନାଥ ପାଣି ଊଣା ଅଧିକେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଉପରେ ପୁସ୍ତକମାନ ରଚନା କରିଛନ୍ତି । ବିଶେଷତଃ ତାଙ୍କ ରଚିତ ଗୀତାଭିନୟ ଗୁଡ଼ିକ ଅତ୍ୟନ୍ତ ଉନ୍ନତ କୋଟିର ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରାଚୀନ କାଳରେ ରଚିତ ଲୀଳା ଗୁଡ଼ିକ ପରେ କବି ଜଗନ୍ନାଥଙ୍କ ଗୀତାଭିନୟ ଗୁଡ଼ିକ ଉପାଦେୟ ଦୃଶ୍ୟକାବ୍ୟ । ସେହି ପୁସ୍ତକଗୁଡ଼ିକୁ ଶ୍ରବ୍ୟ କାବ୍ୟ ରୂପେ ମଧ୍ୟ ଗ୍ରହଣ କରାଯାଇପାରେ ।

କବିଙ୍କ ରଚନା ମଧ୍ୟରେ 'ପ୍ରମୋଦ ଚନ୍ଦ୍ରମଣି' ହେଉଛି ଖଣ୍ଡିଏ ଉତ୍କୃଷ୍ଟ ରଚନା । କବି ନିଜର ସମସ୍ତ କାବ୍ୟିକ ପ୍ରତିଭା ତଥା ଶାସ୍ତ୍ରୀୟ ଜ୍ଞାନରାଶି ଅଜାଡ଼ି ଦେଇ ପୁସ୍ତକଟିର ପ୍ରଣୟନ କରିଛନ୍ତି । ପୁସ୍ତକଟି 'ମହାଭାରତ' ଉପରେ ଆଧାରିତ

ହୋଇ ଲେଖା ହୋଇଥିଲେହେଁ, ରୀତିଯୁଗୀୟ ସମସ୍ତ ପ୍ରକାର ଅଲଙ୍କାରରେ ବିଭୂଷିତ ହୋଇପାରିଛି ।

କବି ଜଗନ୍ନାଥ ପାଣିଙ୍କ ରଚିତ ଆହୁରି କେତେଖଣ୍ଡି ପୁସ୍ତକ ଅଦ୍ୟାପି ମୋର ହସ୍ତଗତ ହୋଇନାହିଁ । ଶୁଣାଯାଏ, କବି ଜଗନ୍ନାଥ ପାଣି କପଟପଶା, ଚଣ୍ଡିଯୁଦ୍ଧ, ନଳ ଦମୟନ୍ତୀ, ସମୁଦ୍ର ମନ୍ଥନ, ଲକ୍ଷ୍ମଣ ଶକ୍ତିଭେଦ, ମାନଭଞ୍ଜନ, ରୁକ୍ମିଣୀ ହରଣ, ବଳି ବାମନ, ଋଣଜିତ୍ ରାଜା ଉପାଖ୍ୟାନ, ନବକୁଶ ଯୁଦ୍ଧ, ଭୂତକେଳି ପ୍ରଭୃତି ଆହୁରି କେତେଖଣ୍ଡି ଉପାଦେୟ ଗୀତାଭିନୟ ରଚନା କରିଥିଲେ । ଶୁଣାଯାଏ କବିଙ୍କ ବଂଶଧରଙ୍କଠାରେ ତନ୍ମଧ୍ୟରୁ କେତେଖଣ୍ଡି ଗୀତାଭିନୟ ରହିଛି । ଅନ୍ୟ ଗୀତାଭିନୟ ଗୁଡ଼ିକ ମଧ୍ୟରୁ 'ବଳି ବାମନ' ଗଞ୍ଜାମ ଭଞ୍ଜକ ଅଞ୍ଚଳର ପାଲାଗାୟକ ସ୍ୱର୍ଗତ ରାଧାଶ୍ୟାମ ପତିଙ୍କଠାରେ ସଂରକ୍ଷିତ ହୋଇଥିବାର ଲେଖକ ଜନୈକ ଗାୟକ ପଣ୍ଡାଙ୍କଠାରୁ ଶୁଣିଛି ।

ଏହା ବ୍ୟତୀତ କବି ଜଗନ୍ନାଥ ପାଣି ରାଧାକୃଷ୍ଣ କୌତୁକ, ଗୋପାଳ ଗୋପାଳୁଣୀ, ବାବୁ ବାବୁଆଣୀ, ମାଳି ମାଳୁଣୀ, ଧୋବା ଧୋବଣୀ, କେଳା କେଳୁଣୀ, ବୈଦ୍ୟ ରୋଗୀ, ମୋଗଲ-ଗଉଡ଼ୁଣୀ ପ୍ରଭୃତି କେତେଖଣ୍ଡି ହାସ୍ୟରସାତ୍ମକ ପ୍ରହସନ ରଚନା କରିଥିଲେ ।

ଆହୁରି ମଧ୍ୟ କବିଙ୍କ ଲେଖନୀରୁ ଜଗନ୍ମୋହନ, ନବଘନ ଚଉତିଶା, ଗାୟକ-ପ୍ରଶ୍ନୋତ୍ତର, କୈବର୍ତ୍ତ ଗୀତାବଳୀ, କାମ କାଠୁରିଆ, ପାଲା ଓ ସଂସ୍କୃତରେ ରଚିତ ବିବାହ ପଦ୍ୟାବଳୀ ପ୍ରଭୃତି କେତେଖଣ୍ଡି ପୁସ୍ତକ ନିଃସୃତ ହୋଇଥିଲା ।

ଦୁଃଖର କଥା, ଏତେ ବଡ଼ ପ୍ରତିଭାଶାଳୀ କବିଙ୍କ ନାମ ଅଦ୍ୟାପି ଓଡ଼ିଆ ସାହିତ୍ୟର ଇତିହାସରେ ସ୍ଥାନ ଅଧିକାର କରିନାହିଁ କିମ୍ବା କବି ଜଗନ୍ନାଥ ପାଣିଙ୍କ ସ୍ମୃତି ରକ୍ଷା କରିବା ଉଦ୍ଦେଶ୍ୟରେ କୌଣସି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରାଯାଇ ନାହିଁ ।

---

# ପରିଶିଷ୍ଟ—କ

କବି ଜଗନ୍ନାଥ ପାଣିଙ୍କ ରଚିତ କାବ୍ୟ, ଖଣ୍ଡକାବ୍ୟ ଓ ଗୀତାଭିନୟ ମଧ୍ୟରୁ କେତେଖଣ୍ଡି ଓଡ଼ିଶା ରାଜ୍ୟ ସଂଗ୍ରହାଳୟଦ୍ୱାରା ସଂଗୃହୀତ ହୋଇଥିଲା । ପ୍ରସ୍ତୁତ ଆଲୋଚନା କରିବାବେଳେ କେବଳ ସେହି ପୁସ୍ତକଗୁଡ଼ିକର ବିଶଦ ବିବରଣୀ ପୁସ୍ତକରେ ପ୍ରଦତ୍ତ ହୋଇଛି । ପ୍ରସ୍ତୁତ ପୁସ୍ତକଟିର ମୁଦ୍ରଣ ଚାଲିଥିବା ସମୟରେ ପାଣିକବିଙ୍କର ଆଉ କେତେଖଣ୍ଡି ରଚନା ମୋର ହସ୍ତଗତ ହେଲା । ତେଣୁ ସେହି ରଚନାଗୁଡ଼ିକର ସଂକ୍ଷିପ୍ତ ଆଲୋଚନା ଏଠାରେ ପ୍ରଦତ୍ତହେଲା ।

## ମାନଭଞ୍ଜନ—

କଥିତ ଅଛି କବିଙ୍କ ମାନଭଞ୍ଜନ ଗୀତାଭିନୟ ଖଣ୍ଡିଏ ଉପାଦେୟ ଗୀତିନାଟ୍ୟ । ଗୀତାଭିନୟଟି ଛବିଶଟି ଗୀତରେ ସମାପ୍ତ ହୋଇଛି । ରାସରସିକ ଶ୍ରୀକୃଷ୍ଣଙ୍କ କପଟପୂର୍ଣ୍ଣ ବ୍ୟବହାରରେ କ୍ଷୁବ୍ଧ ହୋଇ ବ୍ରଜେଶ୍ୱରୀ ରାଧିକା କଠୋର ମାନ କରି ବସିଥିଲେ । ଶ୍ରୀକୃଷ୍ଣଙ୍କର କୌଣସି କାକୁତି ମିନତି ରାଧାଙ୍କଦ୍ୱାରା ଗୃହୀତ ହେଲା ନାହିଁ । ଅଭିମାନିନୀ ରାଧା ଶାଶୁ ନଣନ୍ଦ ଗଞ୍ଜଣାକୁ ଏଡ଼ାଇଦେଇ ଯାହାଙ୍କ ପାଦପଦ୍ମରେ ମନପ୍ରାଣ ଅର୍ପଣ କରିଥିଲେ ସେ ତାଙ୍କୁ ଦଗା ଦେଇଥିବାରୁ ତାଙ୍କ ମନରେ ଯେଉଁ କ୍ଷୋଭ ଜାତ ହୋଇଥିଲା, ତାହାହିଁ ଥିଲା ମାନର ଉଦ୍ଦୀପନ ବିଭାବ । ଶ୍ରୀକୃଷ୍ଣ ବହୁ ପ୍ରୟାସ କରି ପରିଶେଷରେ ଯୋଗୀନ୍ଦ୍ର ବେଶରେ ରାଧାଙ୍କ ନିକଟରେ ପ୍ରବେଶ କଲେ । ସେ ବେଶ ଦେଖିବା ପରେ ଶ୍ରୀରାଧାଙ୍କ ମାନ ପାଣି ଫୋଟକା ପରି ମିଳାଇଗଲା ।

"କୃଷ୍ଣ କାମକେଳି କଳ୍ପଲତା ଶୁଣ ଜନେ ।
ବ୍ରଜମନୋହର କାବ୍ୟ ନାଟକ ବିଧାନେ ॥
ଶ୍ୟାମ-ପ୍ରେମ-ଉନ୍ମାଦ-ମଦନ ମନୋରଥ ।
ଶ୍ରୀରାଧା ଗାନ୍ଧର୍ବୀ ମାନଭଞ୍ଜନ ଚରିତ ॥

× × ×

ମାଗୁଅଛି ମାନ ଭିକ୍ଷା ଦିଅ ରାସେଶ୍ୱରୀ !
ଆସିଅଛି ଆଶାକରି ମୁଁ ପ୍ରେମ ଭିକାରୀ ।
ରାଧା ଶୁଣିଣ,
ବୋଲେ ଜଗନ୍ନାଥ ତେଜିଲେ ମାନ ॥

## ମହୀରାବଣ ବଧ—

'ମହୀରାବଣବଧ' ଜଗମୋହନ ରାମାୟଣର ଅବଲମ୍ବନରେ ରଚିତ ନାଟ୍ୟକାର ଜଗନ୍ନାଥ ପାଣିଙ୍କ ଅନ୍ୟ ଏକ କରୁଣରସଭରିତ ବୀରରସପୂର୍ଣ୍ଣ ସୁନ୍ଦର ଗୀତାଭିନୟ । ଇନ୍ଦ୍ରଜିତ ବଧ ପରେ ରାବଣ ବିଳାପ କରୁଥିବା ସମୟରେ, ମହୀରାବଣ ଉପସ୍ଥିତ ହୋଇ ରାକ୍ଷସେନ୍ଦ୍ରଙ୍କ ତା'ର କୁକୃତ୍ୟ ଲାଗି ନିନ୍ଦା କରିବା ସଙ୍ଗେ ସଙ୍ଗେ ନିଜର ତନ୍ତ୍ରବିଦ୍ୟା ବଳରେ ରାମଚନ୍ଦ୍ରଙ୍କ ହରଣ କରିନେଲା । ମହାବୀର ହନୁମାନ ନିଜର ବୁଦ୍ଧି ବଳରେ ରାମଲକ୍ଷ୍ମଣଙ୍କୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ମହୀରାବଣ ଓ ତା'ର ସଦ୍ୟଜାତ ପୁତ୍ର ଅହିରାବଣକୁ ବଧ କଲେ ।

"ଚନ୍ଦ୍ରଶାଳାପୁରେ ବୀର-ଚନ୍ଦ୍ର ଲଙ୍କସାଇଁ ।
ମନ୍ଦଦଶା ଦେଖି ମନ୍ଦୋଦରୀକି କହଇ ॥
ଗୋ ପ୍ରାଣସଖି,
କହ କି ଉପାୟ ଏବେ କରିବଇଁ ମୁହିଁ ॥
× × ×
ସବଙ୍କ ସୁଧୀର ରାମ ସଙ୍ଗେ ମୋର ହାଣ୍ଟ ।
ଜିତିଲେ ଲଭିବି ସୀତା ମଲେ ବଇକୁଣ୍ଠ ॥
ଗୋ ପ୍ରାଣସଖି,
ଜଗନ୍ନାଥ ବୋଲେ ଚିନ୍ତା କରୁ କାହିଁପାଇଁ ॥
× × ×
ମହୀରାବଣର ବଧ ମହିଲା ଶୁଣିଣ ।
ହନୁମାନ ସଙ୍ଗେ ଯାଇ କଲା ମହାରଣ ॥
× × ×
ବେଣୀକରେ ଜଠାଇ ଧରଣୀ କମ୍ପାଇଲା ।
ମହୀସୁତ ଅହିରାବଣ ମହୀରେ ମଲା ॥
ବଡ଼ଜ ମାରୁତ ଦେଖି ଶ୍ରୀରାମ ହରଷ ।
ବୋଲେ ଜଗନ୍ନାଥ ହନୁମାନ କଲା ଯଶ ॥

## ଲକ୍ଷ୍ମଣ ଶକ୍ତିଭେଦ—

ରାମାୟଣ ଆଖ୍ୟାନର ଅବଲମ୍ବନରେ କବି ଜଗନ୍ନାଥଙ୍କ ରଚିତ ଅନ୍ୟ ଏକ ଗୀତାଭିନୟ ହେଉଛି—ଲକ୍ଷ୍ମଣ ଶକ୍ତିଭେଦ । କବି ସମୁଦାୟ ତେଇଶଟି ଗୀତରେ ଗୀତାଭିନୟଟି ରଚନା କରିଛନ୍ତି ।

"ଶ୍ରୀରାମଲକ୍ଷ୍ମଣ ଧନୁର୍ଗୁଣ ଘୋଷ ଶୁଣି ।
ଲଙ୍କପତି ବରଷ ହରଷ ରଘୁମଣି ॥

ସେ ସୀତା ଶ୍ରୀରାମ ସଉମିତ୍ରି ପାଦ ଧ୍ୟାୟି ।
ଦ୍ୱିଜବର ଜଗନ୍ନାଥ ପ୍ରବନ୍ଧ ଲେଖଇ ।”

## ରୁକ୍ମଣୀ ପରିଣୟ—

ହରିବଂଶର ମନୋଜ୍ଞ ଉପାଦାନ ମଧ୍ୟରେ ରୁକ୍ମଣୀ ପରିଣୟ ଅନ୍ୟତମ । କବି ଜଗନ୍ନାଥ ପାଣି ବିଭିନ୍ନ ରାଗରାଗିଣୀର ପ୍ରୟୋଗରେ ତଦିଗ ଛାନ୍ଦ ବିଶିଷ୍ଟ ଏହି ଗୀତାଭିନୟଟି ଉତ୍କଳର ଅଗଣିତ ପାଠକ ତଥା ଦର୍ଶକଙ୍କ ସମ୍ମୁଖରେ ଉପସ୍ଥାପନା କରିଛନ୍ତି ।

“ରୁକ୍ମଣୀର ବଚନଟି ଶୁଣି ଚକ୍ରପାଣି ।
ଦୟା କରି ନାଗପାଶ ସମ୍ବରିଲେ ପୁଣି ॥
ରଣ ଜୟ କରି ହରି ଶଙ୍ଖ ବଜାଇଲେ ।
ରୁକ୍ମଣୀକି ଘେନି ପ୍ରଭୁ ଦ୍ୱାରକାକୁ ଗଲେ ॥
× × ×
ବଳରାମ ଉଗ୍ରସେନ ଘେନି ଗଲେ ସୈନ୍ୟ ।
ବୋଲେ ଜଗନ୍ନାଥ ହେଲେ ଦ୍ୱାରକା ଭୁବନ ॥”

## ଭୂତକେଳି—

ଶ୍ରୀରାଧାକୃଷ୍ଣଙ୍କ ପ୍ରଣୟକୁ ନେଇ ଯେତେ ପ୍ରକାର କାଳ୍ପନିକ ଉପାଖ୍ୟାନ ସୃଷ୍ଟି ହୋଇଛି, ତନ୍ମଧ୍ୟରେ ଭୂତକେଳି ଏକ କୌତୂହଳୋଦ୍ଦୀପକ କାହାଣୀ ଶ୍ରୀରାଧାଙ୍କ ସହିତ ଶ୍ରୀକୃଷ୍ଣଙ୍କ ଗୁପ୍ତ ପ୍ରଣୟ ଧରାପଡ଼ିବା ପରେ, ଶ୍ରୀକୃଷ୍ଣ ଏକ ଭୟଙ୍କର ଭୂତ ରୂପରେ ଆବିର୍ଭୂତ ହୋଇ ଗୋପବାସୀଙ୍କୁ ଭୟ ତଥା ବିସ୍ମୟାଭିଭୂତ କରାଇ-ଦେଲେ । ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର କବି ଧନକୃଷ୍ଣ ଦାସଙ୍କ ଭୂତକେଳି କାବ୍ୟର ଅବଲମ୍ବନରେ ଜଗନ୍ନାଥ ପାଣି ପ୍ରସ୍ତୁତ ଗୀତାଭିନୟଟି ରଚନା କରିଛନ୍ତି । ଗୀତାଭିନୟର ମୋଟ ଗୀତ ସଂଖ୍ୟା କୋଡ଼ିଏ ।

“ବୃନ୍ଦାବନ ଚନ୍ଦ୍ର ପ୍ରଭୁ ଘେନି ରାଧାରାଣୀ ।
ଭୂତଲୀଳା ଶେଷ କଲେ ସେହି ନିଶି ଜାଣି ॥
ରାଧାକୃଷ୍ଣ ମିଳନ ବିମାନ କନ୍ଧେ ବହି ।
କଦମ୍ବ ମୂଳେ ଗୋପାଳେ ରଖିଦେଲେ ନେଇ ॥
× × ×
ରାଧାକୃଷ୍ଣ ଘେନି ନନ୍ଦ ସଦନକୁ ଗଲେ ।
ଆନନ୍ଦରେ ଜଗନ୍ନାଥ ଛାନ୍ଦ ପୂର୍ଣ୍ଣ କଲେ ॥

## ମୀରା ଚରିତ—

ଐତିହାସିକ ଉପାଦାନ ଉପରେ ଆଧାରିତ ଗୀତାଭିନୟ ରୂପେ ମୀରା ଚରିତ ବା ରଣଜିତ ରାଜାଙ୍କ ଉପାଖ୍ୟାନ କବି ଜଗନ୍ନାଥ ପାଣିଙ୍କର ଅନ୍ୟତମ ଉପାଦେୟ ରଚନା । କୌଣସି ଏକ ରାଜା (ଜନଶ୍ରୁତିରୁ ଜଣାଯାଏ, କେନ୍ଦୁଝରର ରାଜା)ଙ୍କ ଦଣ୍ଡ ଭୟରେ କାତର ନ ହୋଇ କବି ନିର୍ଭୀକ ଭାବରେ ଗୋଟିଏ ଦିନରେ ଚରିଶଟି ଗୀତ ରଚନା କରି ମୀରା ଚରିତ ଅଭିନୟ ଦ୍ୱାରା ଉପସ୍ଥିତ ଜନତାକୁ ବିମୁଗ୍ଧ କରାଇଥିଲେ ।

"ସୁଧାନିଧି ରସନିଧି ସାଧୁଜନେ ଶୁଣ,
ରାଜା ରଣଜିତ ରାଜଧାମର ବିଧାନ ।
× × ×
ଅନ୍ତର୍ଯାମୀ ନାଥ ଜାଣି ମୀରା ହୃତଜ୍ଞାନ ।
ଅଗାଧ ଜଳରୁ ଆଣି ଦେଲେ ଜୀବଦାନ ॥
ସୁଧା ସିଞ୍ଚନେ,
ସୁଧାଂଶୁବଦନା ଉଠି ତକ୍ଷଣେ ।
ହରି ହର କହି ହରିଣାକ୍ଷୀ ହରଷରେ,
ପ୍ରବେଶ ହୋଇଲା ଯାଇ ରାଣୀହଂସପୁରେ,
ରାଜ ସମାଜ,
ବୋଲେ ଜଗନ୍ନାଥ ଦେଖି ଆଶ୍ଚର୍ଯ୍ୟ ॥

## କପଟପଶା—

ମହାଭାରତର ସଭାପର୍ବରେ ବର୍ଣ୍ଣିତ ଦ୍ରୌପଦୀଙ୍କ ବସ୍ତ୍ରହରଣ ପ୍ରସଙ୍ଗ କରୁଣ ରସାପ୍ଲୁତ ଏକ ମନୋରମ ଆଖ୍ୟାୟିକା । ଶକୁନିଙ୍କଦ୍ୱାରା ଅଯୋଜିତ କପଟ ପଶାରେ ହାରି ପାଣ୍ଡବମାନେ ନିରୁପାୟ ହୋଇଯାଆନ୍ତି । ଦୁଃଶାସନ ହସ୍ତିନାର ରାଜସଭା ମଧ୍ୟରେ ଦ୍ରୌପଦୀଙ୍କୁ ଉଲଗ୍ନ କରୁଥିବାବେଳେ ଆର୍ତ୍ତତ୍ରାଣ ଶ୍ରୀକୃଷ୍ଣ କୋଟିବସ୍ତ୍ର ଦାନ କରି ନାରୀର ମର୍ଯ୍ୟାଦା ରକ୍ଷା କରିଥିଲେ । ସେହି ଉପାଖ୍ୟାନ କବିଚନ୍ଦ୍ର ଜଗନ୍ନାଥ ପାଣିଙ୍କ ଦ୍ୱାରା ଗୀତାଭିନୟରେ ପରିଣତ ହୋଇଛି । କବି ଚଉଦଶଟି ଛାନ୍ଦରେ ଗୀତାଭିନୟଟି ସମାପ୍ତ କରିଛନ୍ତି ।

ରାଜଦଣ୍ଡ ସିଂହାସନ ରଥ ଅଶ୍ୱ ଗଜ,
ପଶା ଖେଳେ ଯାହା ହାରିଛନ୍ତି ଧର୍ମରାଜ ।
ଦାସତ୍ୱପଣ,
ଦୋଷ କ୍ଷମା କରି କର ମୋଚନ ॥

ପ୍ରାଣଭୟେ ଧୃତରାଷ୍ଟ୍ର ରାଜା ଦେଲେ ବର ।
ପଶାରେ ଯେତେକ ହାରିଥିଲେ ଯୁଧିଷ୍ଠିର ।
ଅତି ସନ୍ତୋଷେ,
ବୋଲେ କବି ଦେବୀ ନେଲେ ହରଷେ ॥

କବି ଜଗନ୍ନାଥ ପାଣିଙ୍କ ରଚନାରେ ଶଶୀକଳ ବିଭା ବା ନାମ କାଠୁଁଆ ପାଲା ଶୀର୍ଷକ ଖଣ୍ଡିଏ ପାଲା ପୁସ୍ତକ ରହିଛି । ପୁସ୍ତକଟି ଆଠଗୋଟି ଅଧ୍ୟାୟରେ ବିଭକ୍ତ । କର୍ଣ୍ଣାଟ ଦେଶର ରାଜା କାମଜିତ ସତ୍ୟନାରାୟଣଙ୍କ ପ୍ରସାଦରୁ ଶଶୀକଳ ନାମକ ପୁତ୍ର ଲାଭ କରିଥିଲେ । ସତ୍ୟନାରାୟଣଙ୍କ ପ୍ରସାଦରୁ ରାଜକୁମାର ପକ୍ଷୀରାଜ ଘୋଡ଼ା ଲାଭକରି କାଉଁରି ଦେଶର ରାଜକନ୍ୟା କାମମୋହିନୀ ନାମ୍ନୀ ଅଲୋକ-ସାମାନ୍ୟା ସୁନ୍ଦରୀଙ୍କୁ ବିବାହ କରିଥିଲେ ।

ଏଥି ଅନନ୍ତରେ ଶୁଣ ରସିକ ସୁଜନ ।
କର୍ଣ୍ଣାଟେ ବସଇ ରାଜା କାମଜିତ ନାମ ॥
× × ×
ଏଡ଼େ ବଡ଼ ବିଭୂତି ରାଜାର ନାହିଁ ପୁତ୍ର ।
ପୁତ୍ରର ଅଭାବେ ରାଜା ଝୁରେ ଦିବା ରାତ୍ର ॥
× × ×
ରାଜାର ବଚନ ଶୁଣି ଭୁବନ ଈଶ୍ୱର ।
ବୋଲନ୍ତି ବସତି ଦ୍ୱାରାବତୀ ମନ୍ଦିରର ॥
ରାମ ବ୍ରାହ୍ମଣ ବେଦ ଧର୍ମ ପରିସର ।
ନାମ ସତ୍ୟନାରାୟଣ ଶୁଣ ନୃପବର ॥
× × ×
ଜଗନ୍ନାଥ ବୋଲେ ଦେଖ ପ୍ରଭୁର ମହିମା ।
କାହିଁ ରାଜସୁତ କାହିଁ ପାରିବାର ସୀମା ॥
× × ×
ଶରଣ ପୋଦର ହରି ଅରୁଣ ଚରଣେ ।
ନରବଧି ଧାଇଁ ମାରବଣୀ ତେଣୁ ଭଣେ ॥

ତାଙ୍କ ରଚନାରେ ଆଉ ଯେତେଖଣ୍ଡି କାବ୍ୟ ଗ୍ରନ୍ଥ ରହିଛି, ତନ୍ମଧ୍ୟରେ 'ବ୍ରଜମନୋହର'ର ସ୍ଥାନ ସ୍ୱତନ୍ତ୍ର । କବି ସନ ୧୨୭୫ ସାଲ ମକର ମାସ ୯ ଦିନ ଅର୍ଥାତ୍ ୧୮୬୮ ମସିହା ମାଘ ମାସରେ ପୁସ୍ତକର ରଚନା ସମାପ୍ତ କରିଥିଲେ । ପୁସ୍ତକଟି ଭାଗବତର ଦଶମ ସ୍କନ୍ଧ ଗୋପଲୀଳାର ଅବଲମ୍ବନରେ ଲିଖିତ । କବି ପାର୍ଶ୍ୱି ମଙ୍ଗଳଗୁର୍ଜ୍ଜରୀ, ଘଣ୍ଟାରବ, ଶୋକ କାମୋଦୀ, ବଙ୍ଗଳାଶ୍ରୀ, ବରାଡ଼ୀ, କାମୋଦୀ,

ଚନ୍ଦ୍ରାଭୈରବ, ବସନ୍ତବରାଡ଼ୀ, କଲହଂସକେଦାର, ଶଙ୍କରାଭରଣ, ଦେଶାକ୍ଷୀ, ମାଳବ, ରାମକେରୀ ପ୍ରଭୃତି ରାଗରାଗିଣୀରେ ସମନ୍ୱିତ କରି ପୁସ୍ତକଟିକୁ ଏକତରଫା ଛାନ୍ଦରେ ସମ୍ପୂର୍ଣ୍ଣ କରିଛନ୍ତି । କବି ବ୍ରଜମନୋହରରେ ସମସ୍ତ ପ୍ରକାର କାବ୍ୟାଳଙ୍କାର ପୂର୍ଣ୍ଣ ସନ୍ନିବେଶିତ କରି କାବ୍ୟଟିକୁ ମନୋରମ କରିଛନ୍ତି ।

"ରସିକେ ରସେ ରସ ରସିକା ରାସରସ
ସେହନରି କୃଷ୍ଣଭାନୁ କେମା ।
ବସି ବଲ୍ଲଭୀ ପାଶେ ନବବୟସୀ ଘୋଷେ
ଶ୍ୟାମସୁନ୍ଦରେ ହୋଇ ଭ୍ରମା ।
ସେ ପ୍ରେମୋନ୍ମାଦୀ,
କୁସୁମ ଶରେ ହୋଇ ଛନ୍ନ, ଦୁଷମ ଶମ୍ବର ମନାକ ।
ଭାଷଇ ଆନ ଆନ ଆସଇ ଜୃମ୍ଭାସନ-
ଘନ କମ୍ପାଇ ଅପଘନ ସେ ।"

କବି ପୁସ୍ତକ ଶେଷରେ ନିଜର ପରିଚୟ ଦେବାକୁ ଯାଇ ଲେଖିଛନ୍ତି—

ବାମନଜନକଙ୍କ ଗୋତ୍ରେ ପାଣି ବଂଶେ ଜନ୍ମ ।
ଯଜୁର୍ବେଦ ଧାୟୀ ବନମାଳୀ ଯାର ନାମ ॥
ତାହାଙ୍କ ନନ୍ଦନ ଜାତ ନବୀନ କିଶୋର ।
ପଦ୍ମନ ବୋଲିଣ ଜାତ ତାହାଙ୍କ କୁମର ॥
ମହାଭାଗ୍ୟବନ୍ତ ତାଙ୍କ ସୁତ ଭାଗବତ ।
ନଳାଙ୍ଗ ନିଳୟ ଯାର ସଦା ବଲସିତ ॥
ତାହାଙ୍କ ନନ୍ଦନ ବଶିଷ୍ଟରେ ଶ୍ରେଷ୍ଠ ମୁର୍ଦ୍ଧି ।
ଜଗନ୍ନାଥ ବୋଲି ନାମ ବଶେ ପ୍ରକାଶଇ ॥
ସାରଦା ପ୍ରସନ୍ନ ଫଳେ ପ୍ରସରିଲା ବୁଦ୍ଧି ।
ବିରଚିଲି ପ୍ରବନ୍ଧ କବିତ୍ୱ ହେଉ ସିଦ୍ଧି ॥
ବ୍ରଜମନୋହର ବୋଲି ସ୍ନେହ ଗାଢ଼ ନାମ ।
ଗୋପାଙ୍ଗନା ଭକ୍ତ ରାମରସ ପ୍ରେମଧାମ ॥
ଘନଶ୍ୟାମ ପ୍ରିୟ ମିତ୍ର ସ୍ନେହାନୁବସରେ ।
କହେ ଦ୍ୱିଜ ଜଗନ୍ନାଥ ଛାନ୍ଦ ବନ୍ଧରେ ॥

× × ×

# ପରିଶିଷ୍ଟ—ଖ

ଓଡ଼ିଶାର ପ୍ରଥମ ଗୀତିନାଟ୍ୟକାର ଶ୍ରୀଜଗନ୍ନାଥ ପାଣି ଗୋଟିଏ ଯାତ୍ରାଦଳ ଭଦ୍ରକ ଅନ୍ତର୍ଗତ 'ନଲାଙ୍ଗ' ଗ୍ରାମରେ ଗଠନ କରିଥିଲେ । ସେହି ଯାତ୍ରା ଦଳରେ ଆଖପାଖର ଲୋକମାନେ ଭାଗନେଇଥିଲେ ଏବଂ ଯାତ୍ରାଦଳଟି ଓଡ଼ିଶାର ବିଭିନ୍ନ ସ୍ଥାନରେ ଅଭିନୟ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଓଡ଼ିଶା ବାହାରେ ଯାତ୍ରା ସଙ୍ଗଠନ କରୁଥିଲା । ଏ ସମ୍ବନ୍ଧରେ ଜଗନ୍ନାଥ ପାଣି ଓରଫ୍ ଜଗବନ୍ଧୁ ପାଣି ଯାତ୍ରାଦଳରେ ଭାଗନେଉଥିବା ବିଭିନ୍ନ ଲୋକମାନଙ୍କ ମଧ୍ୟରେ ପ୍ରତିଶ୍ରୁତିପତ୍ର ବା ଏକରାର୍‌ନାମା ହେଉଥିଲା । ଏଭଳି ଏକରାର୍‌ନାମା କେତେଖଣ୍ଡି ଜଗନ୍ନାଥ ପାଣିଙ୍କ ବଂଶଧରମାନଙ୍କଠାରୁ ସଂଗୃହୀତ ହୋଇ ଓଡ଼ିଶା ରାଜ୍ୟ ଅଭିଲେଖାଗାରରେ ସଂରକ୍ଷିତ ହୋଇଛି । ଉକ୍ତ ଅଭିଲେଖ ଗୁଡ଼ିକ ୧୬୭୩ ସାଲରୁ ୧୬୯୦ ସାଲ ମଧ୍ୟରେ ପ୍ରସ୍ତୁତ ହୋଇଛି । ସେଥିରୁ ଜଣାଯାଏ, ଜଗନ୍ନାଥ ପାଣିଙ୍କ ଯାତ୍ରା ଦଳରେ ଯୋଗ ଦେଇଥିବା ଲୋକମାନେ ନାଟ୍ୟକାର ଜଗନ୍ନାଥ ପାଣି ଓ ତାଙ୍କ ଦଳପ୍ରତି ଅନୁଗତ ରହିବା ଉଦ୍ଦେଶ୍ୟରେ ଏକରାରନାମା ଲେଖିଦେଉଥିଲେ ଏବଂ ଯାତ୍ରା ଦଳ ସହିତ ଯେକୌଣସି ସ୍ଥାନକୁ, ଏପରିକି ବିଦେଶକୁ ଯିବାଲାଗି ମଧ୍ୟ ଏକରାର୍‌ନାମା ଜରିଆରେ ପ୍ରତିଶ୍ରୁତିବଦ୍ଧ ହେଉଥିଲେ । ସେ ସମୟରେ ବିଦେଶ ଯାତ୍ରାର ଅର୍ଥ ଥିଲା—ଓଡ଼ିଶା ବାହାରକୁ ଯିବା । ଓଡ଼ିଶା ବାହାରେ କଲିକତା, ହାଟନଗର, ଖଡ଼ଗପୁର, ମେଦିନୀପୁର, ଝାଡ଼ଗ୍ରାମ, ଚକ୍ରଧରପୁର, ବସ୍ତର ପ୍ରଭୃତି ଅଞ୍ଚଳକୁ ଜଗନ୍ନାଥ ପାଣିଙ୍କ ଯାତ୍ରାଦଳ ଅଭିନୟ କରିବାକୁ ଯାଉଥିଲେ । ପ୍ରମାଣସ୍ୱରୂପ ଜଗନ୍ନାଥ ପାଣି ଓରଫ୍ ଜଗବନ୍ଧୁ ପାଣିଙ୍କ ଦ୍ୱାରା ପ୍ରସ୍ତୁତ କେତୋଟି ଏକରାର୍‌ନାମାର ନକଲ ଏଠାରେ ପ୍ରଦତ୍ତ ହେଲା ।

(କ)—"ଶ୍ରୀ ଜଗବନ୍ଧୁ ପାଣିଙ୍କୁ ଗଦାଧରପାଣି ପୁତ୍ର ଦାମ ପାଣି ଓ ବନମାଳି ପାଣିଗ୍ରାହୀ ପୁତ୍ର ଗୋବିନ୍ଦ ପାଣିଗ୍ରାହୀ ସା: ନଲାଙ୍ଗ, ପ୍ରଗଣା ରାହଥା ଓରଗଡ଼ାଙ୍କ ଏନାମନ୍ତେ ଲେଖିଦେଲୁକି ଆମ୍ଭେ ଓ ଆମ୍ଭ ପିତାମାତାଙ୍କ ସ୍ୱରାଜିରେ ତୁମ୍ଭ ଅଖଡ଼ାରେ ଯାତ୍ରା ଶିକ୍ଷା କରିବୁ । ଶିକ୍ଷାରେ କ୍ଷମତାପନ୍ନ ହେଲେ ତୁମ୍ଭ ଅନୁମତିରେ ଯେ ସ୍ଥଳକୁ ଯାତ୍ରା କରିଯିବା ହେବ ତେବେ ସେ ସ୍ଥଳକୁ ଆମ୍ଭେ ଯିବୁ । ଦେଶ କିମ୍ବା ବିଦେଶକୁ ତୁମ୍ଭେ ଗଲେ ଆମ୍ଭେ ଯିବୁ । କେଉଣସି ହରକତ ନ କରିବୁ । ଯେବେ ତୁମ୍ଭ ଯାତ୍ରା ଯିବା ସମୟରେ ଆମ୍ଭପର କର୍ମ ସଂଯୋଗ ହୁଏ ତେବେ ସେ କର୍ମ ଗ୍ରହ ତୁମ୍ଭ ଯାତ୍ରା ଡାଇଫାରେ ଯିବୁ ଓ ନିତ୍ୟରେ ତୁମ୍ଭଠାରେ ହାଜର ହୋଇ କର୍ମଶିକ୍ଷା କରୁଥିବୁ । ଏ ବାବଦ କେଉଣସି ଆଖଡ଼ାକୁ ନ ଯିବୁ । ଯେବେ ଏ କର୍ମରେ ହରକତ କରିବୁ ତେବେ ସରକାର ଦ୍ୱାରା ଏ ଯେତେ ଖରଚ୍ଚ ଆସିବ ସେ ଖରଚ୍ଚରେ ଆମ୍ଭେ ଆସିବୁ ଏ ପ୍ରମାଣ ।

ସ୍ ୧୨୮୧ ଭୁଲମାସ ଦ ୧୪ ନ । ଲିଖିତଂ ଜଗନ୍ନାଥ ନାସ୍କେନ । ସା :— କୋଠପଦା ।

( ଯାହାରେ ଯୋଗଦେଇଥିବା ଲୋକମାନେ )

ସଦେଇ ବରାଳ ସା:- ନଲାଙ୍ଗ

ହୃଦ ଢଆଡ଼ୀ ସା:- ନଲାଙ୍ଗ

କହ୍ନେଇ ଢହାଡ଼ୀ ସା:- ନଲାଙ୍ଗ ଶାସନ

( ଭଦ୍ରକ କୋର୍ଟର ଟ ୦-୧୨ ଷ୍ଟାମ୍ପ କାଗଜରେ ଅଚ୍ୟୁତ ନନ୍ଦ ଭେଣ୍ଡରଙ୍କଠାରୁ କ୍ରୀତ । )

(ଖ)—"ସନ ୧୨୭୩ ସାଲ କନ୍ୟା ମାସ ଦ୩ନ ମଉଜା ନଲାଙ୍ଗସ୍ଥିତ ଶ୍ରୀ ଜଗବନ୍ଧୁ ପାଣିଙ୍କି ଏହୁ ଯାତ୍ରା ଆଖଡ଼ାରେ ଥାଇ ସରଦାର ବଇଦ ପାଣି ଓଗେର ସନ୍ୟାସୀ ଦଇତାରି ପାଣି ଆଦ ପାଣିଗ୍ରାହୀ, ଗଣେଶ ପଣ୍ଡା, ସିଧନାଥ ପାଣିଗ୍ରାହୀ, ଖଗନ ପାଣିଗ୍ରାହୀ, ଜଗବନ୍ଧୁ ପାଣି, ଏକାଦଶୀ ପାଣି, ଲୋକନାଥ ସାହୁ, ମହାଦେବ ସାହୁ ଏତେକ ଆସାମିମାନଙ୍କର ଦେଲୁ ଏକରାର ନାମା ଲେଖି ।

ଏ ନିମନ୍ତେ ଏକରାରନାମ ଲେଖିଦେଲୁ କି ଆମ୍ଭେମାନେ ଓ ଆମ୍ଭ ସ୍ୱରାଜରେ ଲୀଳା ଯାତ୍ରା ସର୍ବଦା ତୟାର କରି ଶିକ୍ଷା କରୁଅଛୁ । ନିତ୍ୟରେ ରାତ୍ରି ହୋଇ ଗ୍ରହ ଘଂଣ୍ଟା ଠାରୁ ପାଞ୍ଚ ଘଣ୍ଟା ପର୍ଯ୍ୟନ୍ତ ଜଗି ରହି ଗୀତ ଓ ତାମସା ଶିକ୍ଷା କରୁଥିବୁ । ଯେବେ କୌଣସିଠାରେ ଯାତ୍ରା ଉପଯୋଗ ହେବ ତେବେ ସେଠାକୁ ସର୍ବସାଧାରଣରେ ଯାଇ ଯାତ୍ରା କର୍ମ ଇଂଜାମ କରାଇଦେବୁ । ଏ ଯାତ୍ରା ଭଗ୍ନ କରି କେଉଁସି ସ୍ଥାନକୁ ଆପଣା କାର୍ଯ୍ୟ ନିମନ୍ତେ ଯାଇନପାରିବୁ । ଯେବେ ଦେହରେ କିଛି ଅଶୁସାର ହେବ ତେବେ ଘରଠାରେ ରହିବୁ । ବିନା ଅଜାଣରେ ଯାତ୍ରା ହରକତ କଲେ ଉକ୍ତ ଯାତ୍ରାର ପ୍ରାପ୍ତ ଖରଚ୍ଚ ଅଦାଲତ ମକଦମା ଅନୁସାରେ ବୁଝିଦେବୁ ଏ ପ୍ରମାଣ ।

ଗୋବିନ୍ଦ ଢଆଡ଼ୀ ସା- ନଲାଙ୍ଗ ଶାସନ

କହ୍ନେଇ ଢଆଡ଼ୀ ସା- ନଲାଙ୍ଗ

ଜନାର୍ଦ୍ଦନ ମିଶ୍ର ସା- ଗଡ଼ଦପୁର

( ୨୦-୫-୧୮୮୭ ମସିହାରେ ଭଦ୍ରକ କୋର୍ଟରେ ରେଜେଷ୍ଟ୍ରୀ ହୋଇଥିବା ରେକର୍ଡ଼ । )

( ଅନ୍ୟ ଦୁଇଟି ଏକରାର୍‌ନାମାର ବିଷୟବସ୍ତୁ ପ୍ରାୟ ଏକପ୍ରକାର, ତେଣୁ ଉଦାହରଣ ସ୍ୱରୂପ ଏଠାରେ କେବଳ ଦୁଇଟି ଏକରାର୍‌ନାମା ପ୍ରଦତ୍ତ ହେଲା । )

---